# ଜୀବନ ବିଦ୍ୟାଳୟ

ଅଧ୍ୟାପକ ଚିତ୍ତରଞ୍ଜନ ଦାସ

ପ୍ରଥମ ସଂସ୍କରଣ

୧୯୭୦

ପ୍ରକାଶକ :

ଶ୍ରୀ ଅଭିରାମ ମହାପାତ୍ର, ବି. ଏ.

ଗ୍ରନ୍ଥ ମନ୍ଦିର

କଟକ—୨ : ବ୍ରହ୍ମପୁର

—ମୂଲ୍ୟ—

ଅବନ୍ଧା ଟ ୪. ୫୦ ବନ୍ଧେଇ ଟ ୫. ୨୫

# ମୂଳ କଥା

ଡେନମାର୍କରେ ଅଧ୍ୟୟନ କରୁଥିବା ସମୟରେ ଅବସର ଅନୁସାରେ ମୁଁ ସେହି ଦେଶର ଲୋକ-ବିଦ୍ୟାଳୟ (**Folkehoejskole**) ମାନ ବୁଲି ଦେଖୁଥିଲି । ୧୯୫୨ ମସିହାର ଶୀତକାଳରେ କୋପେନହେଗେନ ସହରର ଅନତିଦୂରରେ ମାଓଲେସ (**Magleaas**) ଗଣବିଦ୍ୟାଳୟରେ ସେହିପରି କେତୋଟି ଦିନ କଟାଇବାର ସୁଯୋଗ ମୋତେ ମିଳିଥିଲା । ବିଦ୍ୟାଳୟର ପ୍ରଧାନ ଶ୍ରୀଯୁକ୍ତ ନଓରପ୍ (**Novrup**) ପ୍ରତ୍ୟେକ ଦିନ ସକାଳ-ପ୍ରାର୍ଥନା ପରେ ଛାତ୍ରଛାତ୍ରୀମାନଙ୍କୁ ଘରୁ ଲେଖି ଆଣିଥିବା ଏକ ଲିଖିତାଂଶ ପଢ଼ି ଶୁଣାଉଥିଲେ । ସେହି ଲିଖିତାଂଶର ବିଷୟବସ୍ତୁ ଉପରେ କୌଣସି ପ୍ରକାର ଚର୍ଚ୍ଚା ହେଉ ନ ଥିଲି । ଏଇଟି ପାଠ କରି ସାରିବା ପରେ ସମସ୍ତେ ନୀରବରେ ଆପଣା ଆପଣାର ଆସନ ଛାଡ଼ି ଯାଉଥିଲେ ଏବଂ ବିଦ୍ୟାଳୟର ନାନା କାର୍ଯ୍ୟକ୍ରମରେ ଭାଗ ନେଉଥିଲେ । ପ୍ରତିଦିନର ଏହି କ୍ଷୁଦ୍ର ଲିଖିତାଂଶ ଛାତ୍ରଛାତ୍ରୀମାନଙ୍କ ମନରେ ଅନେକ ପ୍ରଭାବ ପକାଉଥିଲା । ଆପଣା ଜୀବନର ମୂଲ୍ୟ ଅନ୍ୱେଷଣ କରିବାରେ ସେମାନେ ଏଥିରୁ ଅନେକ ପ୍ରେରଣା ପାଉଥିଲେ । ସ୍ୱତନ୍ତ୍ର ଚିନ୍ତନର ଉଦ୍ରେକ କରିବା ଲାଗି ଏହା ଯଥେଷ୍ଟ ଖାଦ୍ୟ ଯୋଗାଉଥିଲା । ଅଧିକାଂଶ ଛାତ୍ରଛାତ୍ରୀ ବିଦ୍ୟାଳୟର ସାଧାରଣ ପାଠପଢ଼ା ଏବଂ ଅନ୍ୟାନ୍ୟ ନାନା କାର୍ଯ୍ୟକ୍ରମ ଅପେକ୍ଷା ସକାଳର ଏହି ପ୍ରବଚନକୁ ଅଧିକ ମୂଲ୍ୟବାନ ମନେ କରୁଥିଲେ ।

ଶିକ୍ଷକ-ଜୀବନରେ ମୋର ଅନୁଭୂତି ଓ ଅଭିଜ୍ଞତା ଯେତିକି ଯେତିକି ବଢ଼ୁଚି, ମାଓଲେସ ବିଦ୍ୟାଳୟର ଏହି ପଦ୍ଧତିଟିର ମହତ୍ତ୍ୱ ମୁଁ ସେତିକି ସେତିକି ଅଧିକ ଅନୁଭବ କରିଚି । ଶିକ୍ଷକର ବ୍ୟକ୍ତିଗତ ଅନୁଭୂତି ତାର ନିଜସ୍ୱ ସମ୍ପତ୍ତି ନୁହେଁ; ଶିକ୍ଷାର୍ଥୀର ମଧ୍ୟ ସେଥିରେ · ମୂଲ୍ୟବାନ ଭାଗ ନିଶ୍ଚୟ ରହିବା ଉଚିତ । ଯେଉଁ ଶିକ୍ଷକ ତା'ର ପ୍ରତ୍ୟେକ ଦିନର ଶ୍ରେଷ୍ଠ ଭାବନାକୁ ଶିକ୍ଷାର୍ଥୀସମାଜ

ଆଗରେ ସୁଯୋଗ୍ୟରୂପେ ବାଢ଼ିଦେଇ ଜାଣେ, ତଦ୍ଦ୍ୱାରା ସେ ଶିକ୍ଷାର୍ଥୀଙ୍କ ଧ୍ୟାନମଗ୍ନ ଜୀବନକୁ ଅନେକ ପ୍ରେରଣା ଯୋଗାଏ; ତା'ର ଅନୁଭବ କରିବାର ଶକ୍ତିକୁ ସେ ଅଧିକ ଗଭୀର କରେ । ଘଟଣା ଓ ଭାବନାବଳୀର ଉଦ୍ବେଳିତ ତରଙ୍ଗରେ ଭାସି ନ ଯାଇ ଶିକ୍ଷାର୍ଥୀ ତରଙ୍ଗତଳର ଅବିଚଳିତ ଓ ସ୍ଥାୟୀମୂଲ୍ୟକୁ ଆପଣାର କରି ଶିଖେ ।

ପ୍ରାୟ ଦୁଇବର୍ଷରୁ ଅଧିକ ହେବ, ଏହି ପଦ୍ଧତିଟିକୁ ମୁଁ ଆମର କ୍ଷୁଦ୍ର ବିଦ୍ୟାଳୟରେ ଆରମ୍ଭ କରିଛି । ମୋର ମନର କୌଣସି ବିଶେଷ ଭାବନାକୁ ମୁଁ ଲେଖିରଖି ପିଲାମାନଙ୍କୁ ପ୍ରତିଦିନ ତାହା ଶୁଣାଇବି ଏହି ବାସନା ମୋର ଦିନକୁଦିନ ବଢ଼ିବାରେ ଲାଗିଛି । ବିଦ୍ୟାଳୟ ସଂକ୍ରାନ୍ତ ନାନା ଜଞ୍ଜାଳ ଜାଲରେ ଛନ୍ଦିହୋଇ ରହି ଲେଖିବାର ଅବସର ଅବଶ୍ୟ ଅନେକ ଦିନ ମୋତେ ମିଳେ ନାହିଁ । ତଥାପି ଯେଉଁ ଦିନ କିଞ୍ଚିତ୍ ସମୟ ପାଇଛି, ସେ ଦିନ କିଛି ଲେଖି ପିଲାଙ୍କୁ ପଢ଼ି ଶୁଣାଇବାର ଅଭ୍ୟାସ ମୁଁ ଏପର୍ଯ୍ୟନ୍ତ ରଖିଆସିଛି । ଏ ଉଦ୍ୟମରେ ପିଲାମାନେହିଁ ମୋତେ ସବୁଠାରୁ ଅଧିକ ଉତ୍ସାହ ଦେଇଛନ୍ତି ବୋଲି ମୁଁ କହିବି । ଏହିଉଦ୍ୟମଟିକକ ଜରିଆରେ ମୁଁ ସେମାନଙ୍କର ଅଧିକ ନିକଟକୁ ଆସିପାରିଛି; ସେମାନଙ୍କର ଅଧିକ ଆପଣାର ହୋଇପାରିଛି । ଅନେକ ପ୍ରକାର ପରମ୍ପରାଗତ ବ୍ୟବଧାନକୁ ଲଙ୍ଘନକରି ସେମାନଙ୍କର ସେବାରେ ନିଜକୁ ସମର୍ପଣ କରିଦେବା ଲାଗି ମୁଁ ଅନେକ ପ୍ରେରଣା ପାଇଛି । ଆମର ବିଦ୍ୟାଳୟକୁ ଏକ ପରିବାରର ପରିବେଶ ଦେବାରେ ଏ ଲେଖା ଅନେକ ସାହାଯ୍ୟ କରିଛି ।

ଏମିତି ଲେଖି ଲେଖି କେତେ ଦିନ ପରେ ପିଲାଏ ଏହାର ଗୋଟାଏ କିଛି ନାଆଁ ଦେବାକୁ କହିଲେ । କେତେକ ପିଲା ଏଗୁଡ଼ିକୁ କେବଳ 'ଲେଖା' ବୋଲି କହିଲେ । ଆଉ କେତେକଙ୍କର ମୁଣ୍ଡରେ କି ଖିଆଲ ଆସି ପଶିଲା କେଜାଣି, ସେମାନେ ଏହାକୁ 'ଖୋଇ' କହିବାକୁ ଆରମ୍ଭ କରିଦେଲେ । ସେମାନେ ଠିକ୍ ଅନୁମାନ କରିନେଲେ ଯେ ଏପରି ଲେଖିବା କ୍ରମେ ମୋର ଗୋଟାଏ ଖୋଇ ହୋଇଗଲାଣି । ଯେଉଁ ଦିନ ସ୍ଥିର ହୋଇ ଏତିକି ଲେଖିବାଲାଗି ଦି'ପହରେ ଘଣ୍ଟାଏ ସମୟ ପାଏ, ସେଦିନ ମୋତେ ଭାରି ଉଲ୍ଲାସ

ଲାଗେ; ଆଉ ଯେଉଁ ଦିନ ଏତିକ କରି ନ ପାରେ, ସେ ଦିନ ମନଭିତରେ ଖାଲି ଅସନ୍ତୋଷ ରହିଯାଏ; ଆପଣାର ଦିନକର କର୍ତ୍ତବ୍ୟ ଅସମ୍ପୂର୍ଣ୍ଣ ରହିଗଲା ପରି ବୋଧହୁଏ ।

ଅଳ୍ପଦିନ ଗଲେ ଆମ ବିଦ୍ୟାଳୟର ତିନି ବର୍ଷ ପୂରି ହୋଇଯିବ; କିନ୍ତୁ ଏପର୍ଯ୍ୟନ୍ତ ଏହାର କୌଣସି ନାମକରଣ ହୋଇପାରିନାହିଁ । ଯେଉଁସବୁ ସ୍ୱତନ୍ତ୍ର ବାସନା ଓ ବ୍ୟତିକ୍ରମକୁ ମନରେ ରଖି ବିଦ୍ୟାଳୟଟିର ଆରମ୍ଭ ହୋଇଚି, ସେ ସବୁର ବ୍ୟଞ୍ଜନା ସୂଚିତ କରୁଥିବା ଗୋଟିଏ ନାମ ଆମେ ସମସ୍ତେ ଖୋଜି-ବୁଲିଚୁ । ସରକାରଙ୍କ ଖାତାରେ ଆମକୁ Post Basic School ବା 'ଉତ୍ତର ମୌଳିକ ବିଦ୍ୟାଳୟ' ବୋଲି କୁହାଯାଉଚି; କିନ୍ତୁ ଓଡ଼ିଶାରେ ଏପରି ଅଭିଧାର ଅନ୍ୟ କୌଣସି ବିଦ୍ୟାଳୟ ନ ଥିବାରୁ ଅନେକେ ଆମକୁ ନେଇ ଟିକିଏ ଧନ୍ଦାରେ ପଡ଼ିଯାଉଚନ୍ତି । କେହି କେହି ଆମକୁ ପଚାରୁଚନ୍ତି, 'ତୁମର ଏଇଟା ମାଟ୍ରିକ୍‌ଠାରୁ କମ ନା ବେଶୀ ?' କେତେ ଦିନ ତଳେ କେହି ଜଣେ ଭାଇ ଇଂରାଜୀରେ ଚିଠି ଖଣ୍ଡେ ଲେଖିବାକୁ ଯାଇ ବିଦ୍ୟାଳୟର ନାମଟିକୁ ସିଧା ଅନୁବାଦ କରି North Elementary Training Institute ବୋଲି ଲେଖିପକାଇଥିଲେ । ଆମ ପିଲାଏ ଏହାର ନାମ 'ବନବିଦ୍ୟାଳୟ' ଦେଇଚନ୍ତି । ତଥାପି ଏହି ନାମଟିରେ ବିଦ୍ୟାଳୟର ସମସ୍ତ ସ୍ୱାତନ୍ତ୍ର୍ୟ ଧରାପଡ଼ୁନାହିଁ ।

ଶହେ ବର୍ଷ ତଳେ ବିଶପ ଗ୍ରୁନ୍ଡ୍‌ଭିଗ (Grundtvig) ଯେତେବେଳେ ଡେନମାର୍କର ଶିକ୍ଷା-ବିଚାର ଓ ଶିକ୍ଷା-ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାକୁ ବାହାରିଲେ, ତାଙ୍କର ଲେଖା ଓ ବକ୍ତୃତାମାନଙ୍କରେ ସେ ସେତେ-ବେଳର ପ୍ରଚଳିତ ବିଦ୍ୟାଳୟମାନଙ୍କୁ 'ମରଣ-ବିଦ୍ୟାଳୟ' ବୋଲି କହୁଥିଲେ । ଦେଶର ସଂସ୍କୃତି, ଲୋକ ମନର ଆବଶ୍ୟକତା ତଥା ସମସ୍ତ ମାନବିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧକୁ ଯେଉଁ ବିଦ୍ୟାଳୟ ଅସ୍ୱୀକାର କରେ, ତାକୁ ଶିକ୍ଷାବିଧାନର ଭାଷାରେ 'ମରଣର ବିଦ୍ୟାଳୟ'ହିଁ କହିବାକୁ ହେବ । ଏହି 'ମରଣ ବିଦ୍ୟାଳୟ'ର ପରିବର୍ତ୍ତେ ଗ୍ରୁନ୍ଡ୍‌ଭିଗ ଜୀବନ-ବିଦ୍ୟାଳୟ

(Livetsskole)ର ପ୍ରବର୍ତ୍ତନ ଇଚ୍ଛା କରିଥିଲେ । ଜାତୀୟ ସଂସ୍କୃତି ଓ ମାନବିକ ଶ୍ରଦ୍ଧାର ଆଧାର ଉପରେ ଯେଉଁ ବିଦ୍ୟାଳୟରେ ଛାତ୍ର ଆପଣାର ଜୀବନ-ପଥ ଆବିଷ୍କାର କରିପାରିବ, ବିଶ୍ବର ଓ ବିଶ୍ବାସର ସହିତ ଯେଉଁଠି ଜୀବନର ମୂଲ୍ୟ-ନିରୂପଣ କରିବାର ଶକ୍ତି ସେ ଅର୍ଜନ କରିପାରିବ, ଅନ୍ବେଷଣଲବ୍ଧ ସକଳ ଜ୍ଞାନକୁ ଯେଉଁଠି ସେ ପ୍ରଧାନତଃ ଅଧିକ ଅନ୍ବେଷଣର ସାଧନରୂପେ ବ୍ୟବହାର କରି ଶିଖିବ, ଏହିପରି ଗୋଟିଏ ବିଦ୍ୟାଳୟର ସ୍ବପ୍ନ ଗ୍ରୁଣ୍ଡଭିଗ ଦେଖୁଥିଲେ । କୌଣସି ଏକ ନିର୍ଦ୍ଦିଷ୍ଟ ସଂସ୍କାର ବା ଶାସନର ଅନୁଗତ କରି ମଣିଷକୁ ତିଆରି କରିବାର ନିକୃଷ୍ଟ ପ୍ରୟାସକୁ ଶିକ୍ଷା କୁହାଯାଇ ପାରିବ ନାହିଁ । ସକଳ ସଂସ୍କାର ଓ ଶାସନକୁ ସାଧନରୂପେ ବ୍ୟବହାର କରି ନୂଆ ସୃଷ୍ଟି କରିପାରିବାର ଶକ୍ତିମାନ୍ ମଣିଷ ଗଢ଼ିବାରେହିଁ ଶିକ୍ଷାର ଗୌରବ । ଯେଉଁ ବିଦ୍ୟାଳୟ ଏହି ଗୌରବରୁ ବିଚ୍ୟୁତ ହୋଇଛି, ଯାବତୀୟ ଆଡ଼ମ୍ବର ସତ୍ତ୍ବେ ତାହାକୁ ବିନାଶ ବିଦ୍ୟାଳୟ ବା ମରଣ-ବିଦ୍ୟାଳୟ ବୋଲି କହିବା ଆଦୌ ଅସଙ୍ଗତ ହେବ ନାହିଁ । ଆମର କ୍ଷୁଦ୍ର ବିଦ୍ୟାଳୟରେ ଆମେ ସକଳପ୍ରକାର ବିନାଶ ଏବଂ ମରଣରୁ ବଞ୍ଚିବା ଲାଗି ଉଦ୍ୟମ ଆରମ୍ଭ କରିଛୁ; ମରଣୋନ୍ମୁଖୀ ଏକ ସମାଜ ଓ ସଂସ୍କାରର ଉପଯୋଗୀ ସୁନାପୁଅ ହୋଇ ଗଢ଼ାହେବାକୁ ଆମେ ଅସ୍ବୀକାର କରିଦେଇଛୁ । ଅଧିକ ଆଲୋକ ଏବଂ ଅଧିକ ଜୀବନକୁ ଆମେ କାମ୍ୟ କରି ଧରିଛୁ । ଆମ ବିଦ୍ୟାଳୟକୁ ଜୀବନ-ବିଦ୍ୟାଳୟର ପର୍ଯ୍ୟାୟକୁ ନେଇଯିବା ପାଇଁ ଉଦ୍ୟମ ନିୟୋଜିତ କରିବାରେହିଁ ଆମର ଗୌରବ ନିହିତ ହୋଇ ରହିଛି ।

ପ୍ରସ୍ତୁତ ପୁସ୍ତକର ଅଂଶଗୁଡ଼ିକ ଆମର ବିଦ୍ୟାଳୟରେ ଅଧିକ ହାର୍ଦ୍ଦିକତା ଏବଂ ଅଧିକ ଜୀବନ ଭରିଦେବାର ଅଭିଳାଷ ରଖି ଲେଖା ହୋଇଥିଲା । ତେଣୁ ପୁସ୍ତକଟିର ନାମ 'ଜୀବନ-ବିଦ୍ୟାଳୟ' ରଖିବା ମୁଁ ସବୁଠାରୁ ଅଧିକ ଉଚିତ ମନେ କରୁଛି ।

**ଚିତ୍ତରଞ୍ଜନ ଦାସ**

ତା ୨୫।୭।୫୭

# ପୁନଶ୍ଚ

ପ୍ରାୟ ସାଢ଼େ ତିନବର୍ଷ ତଳେ 'ଜୀବନ-ବିଦ୍ୟାଳୟ' ପାଇଁ ମୁଁ ଗୋଟିଏ ଭୂମିକା ଲେଖି ଦେଇଥିଲି । ସାଢ଼େ ତିନି ବରଷ କାଳ ପରେ ବର୍ତ୍ତମାନ ଯେତେବେଳେ 'ଜୀବନ-ବିଦ୍ୟାଳୟ'ର ମୁଦ୍ରିତ ରୂପ ଆତ୍ମପ୍ରକାଶ କରିବାକୁ ଯାଉଛି, ସେତେବେଳେ ନୂତନ କରି ଆଉ ଗୋଟିଏ ଭୂମିକା ଲେଖି ଦେବାକୁ ହେବବୋଲି ପ୍ରକାଶକ-ବନ୍ଧୁ ଶ୍ରୀଯୁକ୍ତ ଶ୍ରୀଧର ବାବୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ସାଢ଼େ ତିନିବରଷ ଭିତରେ 'ଜୀବନ-ବିଦ୍ୟାଳୟ'ର ଜୀବନରେ ଅନେକ ପରିବର୍ତ୍ତନ ଘଟିଛି । ଚମ୍ପାତିମୁଣ୍ଡିର ଅରଣ୍ୟ ଛାଡ଼ି ମୁଁ ମଧ୍ୟ ଆଗ୍ରାର ଉପକଣ୍ଠ ଏହି ବିଚ୍ପୁରିରେ ଆସି ପହଞ୍ଚିଛି । ତେଣୁ ମୂଳ ଭୂମିକା ସହିତ ଗଣ୍ଠାଇ ପଢ଼ିବାକୁ ଆଉ ଗୋଟିଏ ନୂତନ ଭୂମିକା ଲେଖି ଦେବାର ଆବଶ୍ୟକତା ଅବଶ୍ୟ ରହିଛି । ମୁଁ ଶ୍ରୀଧର ବାବୁଙ୍କର ନିର୍ଦ୍ଦେଶକୁ ମାନି ନେଉଛି ।

ଚମ୍ପାତିମୁଣ୍ଡିରେ ବର୍ତ୍ତମାନ ମଧ୍ୟ ବିଦ୍ୟାଳୟ ରହିଛି । ଏହାର ଆକାର ବୃଦ୍ଧି ପାଇଛି ଏବଂ ସେଠାରେ ଥିବା ବିଦ୍ୟାଳୟର ପିଲାମାନେ ବର୍ତ୍ତମାନ ସମ୍ପୂର୍ଣ୍ଣ ସମର୍ପଣରେ ମାଧ୍ୟମିକ ଶିକ୍ଷାବୋର୍ଡ଼ର ମାଟ୍ରିକ୍ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଛନ୍ତି । ସ୍ୱାଧୀନତା ପରେ ଇଂରେଜ ଅମଳରୁ ସରକାରୀ ଶିକ୍ଷାବିଭାଗକୁ ପହରି ଦେଇ ଚଳାଉଥିବା ପୁରୁଣା ସିପାହୀମାନେ ପୁରାତନ ଶିକ୍ଷା ଓ ମୌଳିକ ଶିକ୍ଷାକୁ ଏକାଠି ମିଶାଇ, ନ ମିଶୁଥିବା ଅଂଶଗୁଡ଼ାକୁ ଦୁହିଁ ବାହାର କରିଦେଇ ଦେଶଟାଯାକ ଯେଉଁ ଗୋବର-ଗଣେଶ ଗଢ଼ି ଥୋଇବାର ଅସାଧୁ ଚତୁରକର୍ମ କରୁଛନ୍ତି, ଚମ୍ପାତିମୁଣ୍ଡିର ଜୀବନ-ବିଦ୍ୟାଳୟକୁ ତାହାର ପ୍ରାଦୁର୍ଭାବ ସହିବାକୁ ହୋଇଛି । ଆପେ ଯେ କୌଣସି ମତେ ବଞ୍ଚିରହିବା ଲାଗି ସରକାରୀ କାରଖାନାର ବିରାଦମଟେ ଆପଣାକୁ ଖାପ ଖୁଆଇବାର ଆକୁଳତାରେ ଏହା ବର୍ତ୍ତମାନ ଆପଣାକୁ ସଜାଡ଼ିବାରେ ବ୍ୟସ୍ତ ଅଛି । କିନ୍ତୁ ଗୋପବନ୍ଧୁଙ୍କର

ସତ୍ୟବାଦୀ ବକୁଳବନ ସତ୍ୟବାଦୀ ହାଇସ୍କୁଲରେ ରୂପାନ୍ତରିତ ହେବାଲାଗି ଆପଣାକୁ ସଜାଡ଼ିବାର ବ୍ୟସ୍ତତାରେ ପଡ଼ି କ'ଣ ପାଇଚି ବା କ'ଣ ହରାଇଚି, ତାହାର ପୃଷ୍ଠଭୂମି ଉପରେ ଚମ୍ପତିମୁଣ୍ଡାରେ ଥିବା 'ଜୀବନ-ବିଦ୍ୟାଳୟ'ର ଚମ୍ପତିମୁଣ୍ଡା ହାଇସ୍କୁଲ ନାମକ ଏକ ନୂତନ କଳେବର ଧାରଣ କରିବା ପ୍ରସ୍ତାବଟିର ବିଚାର କରାଯାଇ ପାରିବ ।

'ଜୀବନ ବିଦ୍ୟାଳୟ'ର ପିଲା ଆଗେ ମାଟ୍ରିକ୍ ପରୀକ୍ଷାଲାଗି ପ୍ରସ୍ତୁତ ହେଉ ନଥିଲେ । କୌଣସି ଯୁଗର ଉପଯୋଗୀ ସୁନାପୁଅ ହେବାକୁ ହୁଏତ ସେମାନେ ପ୍ରସ୍ତୁତ ହେଉ ନ ଥିଲେ । ସେମାନେ ଜୀବନର ନାନା କ୍ଷେତ୍ରରେ ଶିକ୍ଷକ ସହିତ ଏକତ୍ର ହୋଇ ଆପଣା ଆପଣା ଜୀବନର ସ୍ୱକୀୟ ପଥ ଆବିଷ୍କାର କରିବା ପାଇଁ ପ୍ରବୃତ୍ତ ହେଉଥିଲେ । ଏହି ପ୍ରବୃତ୍ତ ହେବାରେ କୌଣସି ପ୍ରମତ୍ତତା ନ ଥିଲା ବା ଭୟର ଲେଶମାତ୍ର ନ ଥିଲା । ଗୋଡ଼ ହାତ ଓ ବିଗ୍ରହକୁ ବାନ୍ଧି ପକାଇବା ପାଇଁ କୌଣସି ବାହ୍ୟ ଶୃଙ୍ଖଳାର ଶୃଙ୍ଖଳ ମଧ୍ୟ ନ ଥିଲା । ପୁରୁଣା ଶିକ୍ଷାବିପଣୀର ଅବଧାନମାନେ ଯାହାକୁ ପାଠ ବୋଲି କହନ୍ତି, ସେହି ପାଠରେ ମଧ୍ୟ ଜୀବନ-ବିଦ୍ୟାଳୟର ଛାତ୍ରଛାତ୍ରୀମାନେ କିପରି ବ୍ୟୁତ୍ପତ୍ତି ଦେଖାଉଥିଲେ, ଓଡ଼ିଶାର ଏକାଧିକ ଅଧ୍ୟାପକ, ପଣ୍ଡିତ ଓ ଗୁଣୀଜନ ସେକଥା ଭଲକରି ଜାଣିଚନ୍ତି । ତଥାପି ସରକାର ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । ସରକାରୀ କଳଘରର ବିରହ ମୁହେଁ ମୁହେଁ ଫତୁଆ ଶୁଣାଇଦେଲେ ଯେ ପିଲାମାନେ କୋଟ୍‌ପ୍ୟାଣ୍ଟ୍ ପିନ୍ଧି ଆସନ୍ତୁ ବା ପାଞ୍ଚହାତି ଖଦଡ଼ଲୁଗା ପିନ୍ଧି ଆସନ୍ତୁ, ତାଙ୍କର ସେଥିରେ କୌଣସି ଆପତ୍ତି ନାହିଁ । କିନ୍ତୁ ସେମାନଙ୍କୁ ମାଟ୍ରିକ୍ ପରୀକ୍ଷାରେ ବସିବାକୁ ହିଁ ହେବ । ତା' ନ ହେଲେ ସେମାନେ କେତେ ଦୂର ଯୋଗ୍ୟ ହେଲେ ବୋଲି କିପରି କୁହାଯାଇ ପାରିବ ? ସେମାନଙ୍କୁ ମାପିବାର ମାପକାଠି କ'ଣ ରହିବ ? ମାପକାଠି ବିଷୟକ ଏହି ଫତୁଆ ମୁଁ ୧୯୫୭ ମସିହା ଏପ୍ରିଲ ମାସରେ ଶୁଣିଥିଲି । ତା'ପରେ ତଥାପି ବର୍ଷେକାଳ ଆପଣା ରୀତିରେ ବଞ୍ଚିରହିବା ଲାଗି ଆମକୁ ସଂଗ୍ରାମ କରିବାକୁ ପଡ଼ିଥିଲା । ଶେଷକୁ ନିରସ୍ତ ହୋଇ ୧୯୫୮ ମଇ ମାସରେ ମୁଁ ଚମ୍ପତିମୁଣ୍ଡା ଛାଡ଼ି ଆସିଲି । ମୋର ଦୃଶ୍ ବରଷର କର୍ମ-ପ୍ରବାହରେ ଆପାତତଃ ଏକ ବ୍ୟବଚ୍ଛେଦ ପଡ଼ିଗଲା ।

ନ୍ତି ଆପାତତଃ । ସଦ୍‌ବାଞ୍ଛା ଓ ସଦିଚ୍ଛା ନେଇ ମଣିଷ ଯେଉଁ ଉଦ୍ୟମ ଆରମ୍ଭ କରିଥାଏ, ତାହାର କଦାପି ସମ୍ପୂର୍ଣ୍ଣ ଇତି ହୋଇ ଯାଏ ନାହିଁ । କାରଣ ଏହି ଉଦ୍ୟମର ପଛରେ ଦେବତାର ଆଶୀର୍ବାଦ ରହିଥାଏ । ହଁ, ବେଳେବେଳେ ଉଦ୍ୟମ ମାନ୍ଦା ପଡ଼ିଯାଏ, ବେଳେବେଳେ ଅପସରି ଗଲାପରି ମନେହୁଏ । କିନ୍ତୁ ବେଳେବେଳେ ଅପସରି ଯିବାକୁ ଶ୍ରୀଯୁକ୍ତ ଆର୍‌ନୋଲ୍‌ଡ୍‌ ଟଏନ୍‌ବି ଏକ ଐତିହାସିକ ଆବଶ୍ୟକତା ବୋଲି କହିଚନ୍ତି । ଅପସାରଣ ହେଉଚି ପୁନଃ ପ୍ରତ୍ୟାବର୍ତ୍ତନର ଅନୁପୂରକ ଅଙ୍ଗ । ଆଜି ଯେଉଁ ଉଦ୍ୟମ ଅପସରି ଯାଉଚି, କାଲି ପ୍ରତ୍ୟାବର୍ତ୍ତନ କରିବାଲାଗି ହୁଏତ ସେ ଆଜି ପ୍ରସ୍ତୁତ ହେଉଚି । ସେ ମରିଯାଉ ନାହିଁ । ଠିକ୍ ସେହିପରି କୌଣସି ସତ୍ୟ ମରିଯାଏ ନାହିଁ,-କେବଳ ପୁନର୍ପ୍ରତ୍ୟାବର୍ତ୍ତନ ଲାଗି ପ୍ରସ୍ତୁତ ହେବାକୁ ଆପାତ କାଳପାଇଁ ଅପସରିଯାଏ ମାତ୍ର ।

ମଣିଷକୁ ସୁଯୋଗ୍ୟ ଓ ସୁସମ୍ପନ୍ନ ରୂପେ ବିକଶିତ ହେବାଲାଗି ଯେଉଁସବୁ ସାଧନ ଓ ଯେଉଁସବୁ ଜ୍ଞାନ ଦରକାର, ବର୍ତ୍ତମାନ ସେହିସବୁ ସାଧନ ଓ ଜ୍ଞାନ ଅନେକ ବୃଦ୍ଧି ପାଇଲାଣି । କିନ୍ତୁ ମାନବିକ ବିକାଶଲାଗି ଯେଉଁ ସହିଷ୍ଣୁ ଓ ଭୟମୁକ୍ତ ବାତାବରଣ ଦରକାର, ତାହା ଦିନକୁଦିନ ଅଧିକ ବିରଳ ହେବାରେ ଲାଗିଚି । ଆମ ଦେଶରେ ଖାସ୍ ସ୍ୱାଧୀନତାପରେ ଏହି ବିରଳତା ଅତ୍ୟଧିକ ପରିମାଣରେ ଅନୁଭୂତ ହେଉଚି । ସମସ୍ତେ ଆପଣାର ମତ ଅନୁସାରେ ସଂସାରର ସବୁ ମଣିଷଙ୍କୁ ସାଉଁଟି ନେଇ ଗୋଟାଏ ମୁଣିରେ ଭର୍ତ୍ତି କରିବାଲାଗି ବଡ଼ ବ୍ୟଗ୍ର ହୋଇ ପଡ଼ିଚନ୍ତି । ଏ ଦେଶରେ କେହି କାହାରିକୁ ବଞ୍ଚିବାକୁ ଦେବାଲାଗି ତିଆରି ନୁହେଁ; କାରଣ କେହି ବଞ୍ଚିବାକୁ ମଧ୍ୟ ତିଆରି ନୁହେଁ । ଗଡ଼ କଣିବାର ଜ୍ୱର ଆଜି ସମସ୍ତଙ୍କୁ ଗ୍ରାସ କରି ବସିଚି । ତଥାପି ଆଶା ରଖିବାକୁ ହେବ । କାରଣ ଏହି ଦୁର୍ଦ୍ଦଶା କଦାପି ଚିରସ୍ଥାୟୀ ହୋଇ ରହିବନାହିଁ । ତେଣୁ ଅପେକ୍ଷା କରିବାକୁ ହେବ; ଅଧିକ ଅନୁକୂଳ ଅବସର ଲାଗି ଅପେକ୍ଷା କରିବାକୁ ହେବ । ସମୟକୁ ଅଧିକ ଅନୁକୂଳ କରିବାଲାଗି ଆପଣାଭିତରେ ଯୋଗ୍ୟତା ଅଛି ବୋଲି ଅନୁଭବ କରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ଏବଂ ସେପର୍ଯ୍ୟନ୍ତ ଆପଣାକୁ ଅଧିକ ଯୋଗ୍ୟ କରି ପ୍ରସ୍ତୁତ କରିବାକୁ ପଡ଼ିଥିବ ।

ଆପଣାର ଅନ୍ତର୍ଗତ ଜୀବନରେ ଆପଣାକୁ ନିରନ୍ତର କଳନା କରିବାକୁ ହେବ । ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ଏପିକିଉରସ୍‌ଙ୍କର ଭାଷାରେ, ସେପର୍ଯ୍ୟନ୍ତ ଆପଣାକୁ 'ଲୁଚାଇ ରଖିବାକୁ' ହେବ ।

ପଛକୁ ଚାହିଁ ଆଜି 'ଜୀବନ-ବିଦ୍ୟାଳୟ'ର ସେହି ଦିନଗୁଡ଼ିକ ଉପରେ ଦୃଷ୍ଟିପାତ କରୁକରୁ ଆଜି ଦିଓଟି କଥା ମୋର ମନକୁ ଆସୁଚି । ଧର୍ମକାମ କହିଲେ ସାଧାରଣତଃ ଆମଦେଶରେ ଲୋକେ ଯାହା ବୁଝନ୍ତି, ବିଦ୍ୟାଳୟ ବସାଇବା ବା ବିଦ୍ୟାଳୟ ଚଳାଇବା ଆଦୌ ସେପରି ଏକ ଧର୍ମକାମ ନୁହେଁ । ବରଷଯାକ ଅଧର୍ମ କରି ମଣିଷ ଯାହା ରୋଜଗାର କରେ, ସେଇଥିରୁ କିଛି ଦାନ କରି ସେ ଧର୍ମଶାଳା ଗଢ଼ିଦିଏ, ଠାକୁର ମନ୍ଦିରରେ ପାହାଚ ବସାଇଦିଏ, କୂଅ ଖୋଳିଦିଏ ବା ସାଧୁ ସନ୍ନ୍ୟାସୀଙ୍କ ପାଇଁ ସଦାବ୍ରତ ଖଞ୍ଜିଦିଏ । କିନ୍ତୁ ଶିକ୍ଷାରେ ଆଗ୍ରହ ରଖିଥିବା ଶିକ୍ଷକ ପାଇଁ ଏତିକି ଧର୍ମକାମ ଯଥେଷ୍ଟ ନୁହେଁ । କାରଣ ଶିକ୍ଷକ ହେବାକୁ ହେଲେ ତାକୁ ଜୀବନ-ଧର୍ମରେ ଅଟଳ ବିଶ୍ୱାସ ରଖିବାକୁ ହେବ, ଅର୍ଥାତ୍ ପ୍ରତ୍ୟେକକୁ ତାର ଆପଣା ମାର୍ଗ ଆବିଷ୍କାର କରି ସେହି ମାର୍ଗରେ ତାକୁ ଚାଲିବାକୁ ଦେବାଲାଗି ଶିକ୍ଷକ ପାଖରେ ଧୈର୍ଯ୍ୟ ଥିବ, ସମୟ ଥିବ, ଶ୍ରଦ୍ଧା ଓ ବିଶ୍ୱାସ ମଧ୍ୟ ଥିବ । ଅନ୍ୟ କାହାରି ମୁକୁଳିତ ବୃକ୍ଷଶାଖା ଉପରକୁ ଯେପରି ତାର ଉଚ୍ଚ ଓ ଉଗ୍ର ଶାଖାର ଛାଇ କୌଣସିପ୍ରକାରେ ନ ମାଡ଼ିଯାଏ ସେଥିପ୍ରତି ତାକୁ ସତତ ସାବଧାନ ରହିବାକୁ ପଡ଼ିବ । ତା' ନ ହେଲେ ତାହାର ଆଳୟ ଚିଡ଼ିଆଳୟ, ଅନାଥାଳୟ, ବଚସାଳୟ, ସ୍ତବନାଳୟ ବା ଆଉ ଯେକୌଣସି ଆଳୟ ହେବପଛେ, ବିଦ୍ୟାଳୟ ହୋଇ-ପାରିବ ନାହିଁ । 'ଜୀବନ ବିଦ୍ୟାଳୟ' ହେବା ତ ଆହୁରି ଦୂରର କଥା ।

ଜଣେ ମଣିଷକୁ ଗଢ଼ିବା ଆଉ ଜଣେ ମଣିଷର ହାତର କଥା ନୁହେଁ । ମୋତେ ନିଜକୁ ଗଢ଼ିବା ହିଁ ମୋ ହାତର କଥା । ମୋତେ ନିଜକୁ ବିଗାଡ଼ିବା ମଧ୍ୟ ମୋ ହାତର କଥା । ସ୍ୱାଧୀନତାରେ ସବୁଠାରୁ ବଡ଼ ମଙ୍ଗଳ ନିହିତ ରହିଛି, ସବୁଠାରୁ ବଡ଼ ବିପଦ ମଧ୍ୟ ନିହିତ ରହିଛି । ତଥାପି ସ୍ୱାଧୀନତା ଦେବା ବ୍ୟତୀତ ଶିକ୍ଷାରେ ଅନ୍ୟ ପନ୍ଥା ନାହିଁ । କୃଷ୍ଣମୂର୍ତ୍ତିଙ୍କ ଭାଷାରେ କହିଲେ,

ଯେଉଁଠି ଶ୍ରଦ୍ଧା ନ ଥାଏ, ସେଇଠାରେ ହିଁ ଶୃଙ୍ଖଳା ରହିଥାଏ । ଯେଉଁଠି ଶ୍ରଦ୍ଧା ଥାଏ, ବ୍ୟକ୍ତିର ଶ୍ରଦ୍ଧା ନୁହେଁ, ମହାନ୍ ଅନିର୍ଦ୍ଦେଶ୍ୟ ଅଥଚ ସମ୍ଭବମାନ ଜୀବନର ଶ୍ରଦ୍ଧା ଥାଏ, ସେଇଠାରେ ହିଁ ସ୍ୱାଧୀନତା ଦେଇହୁଏ । ସେଇଠାରେ ହିଁ ସ୍ୱାଧୀନତା ସହ୍ୟ ହୁଏ । ତେଣୁ କୌଣସି ଆଦର୍ଶ ବା କୌଣସି ମତବାଦର ଲୁହାଗୁଣ୍ଡ ଭିତରେ ମଣିଷକୁ ପକାଇ ତାକୁ ତିଆରି କରିବାର ପ୍ରୟାସ ହେଉଚି ଶିକ୍ଷାକ୍ଷେତ୍ରରେ ସବୁଠାରୁ ବଡ଼ ପ୍ରମାଦ । ନାତ୍‌ସି ଜର୍ମାନୀରେ ହିଟ୍‌ଲର୍ ଏହି କଥା କରିବାର ଧୃଷ୍ଟତା ଦେଖାଇଥିଲା । ଆଜି ଆଧୁନିକ କେତେକ ଶାସନତନ୍ତ୍ରରେ ମଧ୍ୟ ଏହି ଧୃଷ୍ଟତାର ପ୍ରୟାସ ଚାଲିଚି,-କିନ୍ତୁ ତାହା ମଣିଷକୁ ଶିକ୍ଷିତ କରିବା ପରିବର୍ତ୍ତିରେ ଅଧିକ ବର୍ବର ଓ ଅଶିକ୍ଷିତ କରିବାରେ ହିଁ ସହାୟତା କରୁଚି । ଯେକୌଣସି ଆଦର୍ଶ ସୂତ୍ର ବା ନୀତିସାରଠାରୁ ମଣିଷ ଆହୁରି ବଡ଼, ଯେକୌଣସି କଳନାର ପରିସୀମିତ ଆୟତନଠାରୁ ମଣିଷ ଆହୁରି ଅକଳନୀୟ, ଯେକୌଣସି ଯୋଜନାର ସଂଯୋଜନଠାରୁ ମଣିଷର ସମ୍ଭାବନା ଯୋଜନ ଯୋଜନ ଅଧିକ ଦୂର । ତେଣୁ କରୁଣା, କାନୁନ୍ ବା କଡ଼ଲ୍ ଯେଉଁ ବାଟରେ ହେଉପଛକେ, ଏକତନ୍ତ୍ରୀ, ଗଣତନ୍ତ୍ରୀ ବା ଗୁଣତନ୍ତ୍ରୀ ଯେକୌଣସି କର୍ତ୍ତୃତ୍ୱର ଦୁଆ ଧରି ହେଉ ପଛକେ, ମଣିଷକୁ ଆପଣାର ଖିଆଲ ଅନୁସାରେ ଗଢ଼ିବାକୁ ବସିଲେ ଆମର କେଉଁ ଅହଙ୍କାର ହୁଏତ ତୃପ୍ତି ପାଇବ, କିନ୍ତୁ ଶିକ୍ଷାର ଉଦ୍ଦେଶ୍ୟ ହେବ ନାହିଁ । କାରଣ ଶ୍ରୀ ଏରିକ୍ ଫ୍ରମ୍‌ଙ୍କ ଭାଷାରେ କହିବାକୁ ଗଲେ **Man is not a thing.**—ମଣିଷ ଗୋଡ଼ି, ମାଟି ବା ପଥର କିଛି ନୁହେଁ,-କୁମ୍ଭାର-ଗୁଣ୍ଡୁକିନ ହାତର କଞ୍ଚା କାଦୁଅ ମଧ୍ୟ ନୁହେଁ ।

'ଜୀବନ-ବିଦ୍ୟାଳୟ'ରେ ଚାରିବର୍ଷ କ'ଣ ହେଉଥିଲା, ଏଠି ସେକଥା ବଖାଣି କହିବାର ଜାଗା ନୁହେଁ । ସେଠାରେ ଯେଉଁ ଭାଇ ଓ ଭଉଣୀଙ୍କ ମେଳରେ ମୋର ଚାରିବର୍ଷ କଟିଗଲା, ସେମାନଙ୍କ ଭିତରୁ କେହି ଯୋଗ୍ୟହୋଇ ସଂସାରକୁ ବାହାରିଲେ ହୁଏତ ତାରିଦ୍ୱାରା ଭଗବାନ ଜୀବନ-ବିଦ୍ୟାଳୟର କଥା କୁହା-ଇବେ; ହୁଏତ ତାରି କଲମରେ ଜୀବନ ବିଦ୍ୟାଳୟର ଇତିବୃତ୍ତ ଲେଖାହେବ । ସେହି ଲେଖା ମୋର ସମସ୍ତ କହିବାଠାରୁ ଯଥେଷ୍ଟ ଯୋଗ୍ୟତର ହେବ । ଅଜି

ଏହି ଭୂମିକା ଲେଖିଲେଖି ମୁଁ ମନୋନେତ୍ରରେ ସେହିମାନଙ୍କୁ ଦେଖିବାକୁ ପାଉଚି । ସେହିମାନଙ୍କୁ ମୋର ପ୍ରଣାମ ଜଣାଉଚି । କାହାର ପାଖରେ ମୋର କୌଣସି ଅଭିଯୋଗ ନାହିଁ । ମୋର ସଫଳ ହେବା ବା ବିଫଳ ହେବାରେ ଜ୍ୟେଷ୍ଠ ଓ କନିଷ୍ଠ ଯେତେ ଯାହାର ହାତ ରହିଚି, ମୁଁ ଆଜି ସମସ୍ତଙ୍କୁ ପ୍ରଣାମ ଜଣାଉଚି । ସେହିମାନେ ମୋତେ ଅନେକ ସୌଭାଗ୍ୟର ଅଧିକାରୀ କରାଇଚନ୍ତି, ଜଗତ ଓ ଜୀବନ ବିଷୟରେ ଅନେକ ଅନ୍ତର୍ଦୃଷ୍ଟି ଯୋଗାଇ ଦେଇଚନ୍ତି । ସେମାନେ ସମସ୍ତେ ମୋର ମିତ୍ର, ମୋର ଗୁରୁ, ମୋର ପଥପ୍ରଦର୍ଶକ ।

ବିଚିତ୍ରପୁରୀ, ଆଗ୍ରା — ଚିତ୍ତରଞ୍ଜନ ଦାସ

୭।୧୮।୧୨।୭୦

— ୧ —

୧୬।୧।୫୫

ପଶ୍ଚିମ ବଙ୍ଗଳାର ବାଙ୍କୁଡ଼ାଠାରେ ଶ୍ରୀ ବିନୋବାଙ୍କ ସହିତ ଦିନେ କଟାଇବାର ସୌଭାଗ୍ୟ ମିଳିଲା । ପ୍ରତ୍ୟେକ ଦିନର ସଞ୍ଚୟ ଜମାକରି ରଖି ମଣିଷ ତୀର୍ଥଯାତ୍ରା କରିଯାଏ । ତା ଭିତରେ ଅନେକ ଦିନରୁ ଜମା ହୋଇଥିବା ଅନେକ ପ୍ରକାରର ମଇଳା ସେଇ ତୀର୍ଥରେ ସେ ଧୋଇଦେଇ ଆସେ । ତୀର୍ଥରେ ସେ ଆପଣାକୁ ଶୁଦ୍ଧ କରିଦେଇ ଆସେ । ମହାତ୍ମାମାନଙ୍କର ଦର୍ଶନ-ଲାଭ ତୀର୍ଥ ଦେଖିବାର ଫଳ ଆମକୁ ଦିଏ । ମହାତ୍ମାର ସଙ୍ଗ ଲାଭ କରି ମଣିଷର ଜୀବନ ଶୁଦ୍ଧ ହୁଏ । ମହାତ୍ମାର ବଚନ ଶ୍ରବଣ କରି ମଣିଷର କଥା ଭିତରେ ଥିବା ଅନେକ ମଇଳା ଓ ଅନେକ ମିଥ୍ୟା ଅପସାରିତ ହୋଇଯାଏ । ପୃଥିବୀକୁ ଅଧିକ ଶୁଦ୍ଧ ଓ ଅଧିକ ପବିତ୍ର କରିବାକୁ ମହାତ୍ମାମାନେ ସଂସାରକୁ ଆସନ୍ତି । ସମାଜର ମଇଳାରୁ ମଣିଷର ମନକୁ କାଢ଼ିନେଇ ତାର ମୋହ ଭାଙ୍ଗିଦେଇ ସୁନ୍ଦର ଓ ଧାର୍ମିକ ଜୀବନ ଲାଗି ମଣିଷକୁ ପ୍ରସ୍ତୁତ କରିବା ଲାଗି ବୋଧହୁଏ ସଂସାରରେ ମହାପୁରୁଷମାନେ ଜନ୍ମଗ୍ରହଣ କରନ୍ତି ।

ଶଙ୍କରାଚାର୍ଯ୍ୟ ଦେହକୁ ଦେବାଳୟ ବୋଲି କହିଛନ୍ତି । କିନ୍ତୁ ସବୁ ମଣିଷଙ୍କର ଦେହକୁ ଆମେ ଦେବାଳୟ ବୋଲି କହିପାରିବା ନାହିଁ । ନାନା-ପ୍ରକାର ଅନ୍ଧ ଆସକ୍ତି ଓ ଖଣ୍ଡ ବିଶ୍ୱାସରେ ଆମେ ଆମ ଦେହ ଭିତରେ ଥିବା ଦେବତାର ଆସ୍ଥାନକୁ କଳୁଷିତ କରି ଦେଇଥାଉଁ । ସେଥି ଉପରେ ଦେବତାର ପ୍ରତିଷ୍ଠାନ ହୋଇପାରେ ନାହିଁ । ଦେବତା ଅପମାନ ପାଇ ପଳାଇଯାଏ । ତା' ଜାଗାରେ ଆମର ମୋହ ଆଉ ଗର୍ବୋନ୍ମତ୍ତତା ଆମ ଦେହରେ ଆସନ ମାଡ଼ିବସେ । ଯିଏ ମୋହକୁ ଆଉ ସକଳ ପ୍ରକାର ଉନ୍ମତ୍ତତାର ଲୋଭକୁ ଏଡ଼ି

ନିଜର ଜୀବନକୁ ଭଗବାନଙ୍କ କାର୍ଯ୍ୟ ଲାଗି ଅର୍ପଣ କରି ଦେଇଥାନ୍ତି, ସେଇମାନଙ୍କର ଦେହକୁ ଯଥାର୍ଥରେ ଦେବାଳୟ କୁହାଯାଇପାରିବ । ସେହିପରି ମହାତ୍ମାମାନଙ୍କୁ ଦେଖିଲେ ଅନ୍ତର ଭିତରେ ଭକ୍ତିର ସଞ୍ଚାର ହୁଏ, ତଳର ଧୂଳି ଓ ମଇଳା ଗୁଡ଼ିକ ମନ ଅନେକ ଊର୍ଦ୍ଧ୍ୱକୁ ଉଠିଯାଏ । କେଉଁ ଦେବତା ଦେଉଳର ପାବଚ୍ଛ ଉପରେ ଠିଆ ହୋଇଗଲା ପରି ଲାଗେ । ମହାତ୍ମାର ଦର୍ଶନ ମଣିଷକୁ ଆପଣାକୁ ଆବିଷ୍କାର କରି ଶିଖାଏ, ଆପଣାକୁ ଶୁଦ୍ଧ କରିଦିଏ । ଅନେକ ଦିନର ସ୍ୱାର୍ଥ ଓ ଅହଙ୍କାରର ଆବରଣ ଖୋଲିଯାଏ । ଶ୍ରୀ ବିନୋବାଜୀଙ୍କର ସାକ୍ଷାତ ଲାଭକରି ଠିକ୍ ଏହିପରି ଏକ ଦେବାଳୟର ସାନ୍ନିଧ୍ୟ ଅନୁଭବ କରିଆସିଲି ।

୧୭।୧।୫୪

ଶିକ୍ଷାକୁ ଯୁଗୋପଯୋଗୀ କରିବା ଦରକାର, ଏକଥା ଅନେକ ସମୟରେ ଶୁଣିବାକୁ ମିଳେ । ଯୁଗ ଯାହା ଗୁହୁଁଛି, ସେହି ଅନୁସାରେ ଅମୁକ ଶିକ୍ଷା ଆମର ପିଲାଙ୍କୁ ପ୍ରସ୍ତୁତ କରିପାରୁ ନାହିଁ—ଏହିପରି ଆପତ୍ତି ଅନେକ କରିଥାନ୍ତି ।

ଖାଲି ଯୁଗର ଉପଯୋଗୀ କରି ମଣିଷକୁ ତିଆରି କରିବାକୁ ଯେଉଁ ଶିକ୍ଷା ନିଜର ଏକମାତ୍ର ବା ପ୍ରଧାନ ଲକ୍ଷ୍ୟ ବୋଲି ଧରିନିଏ, ତାକୁ ଶିକ୍ଷା ବୋଲି କହିଲେ ଅନ୍ୟାୟ ହେବ । ପରିସ୍ଥିତି ଯାହା ଗୁହୁଁଛି, ସେଇଥିରେ ଖାପ ଖାଇ ରହିବାର ଜୀବନ ହେଉଚି ପଶୁର ଜୀବନ । ଯେ କୌଣସି ପରିସ୍ଥିତିରେ ଆପଣାକୁ ଖାପ ଖୁଆଇ ବଞ୍ଚିରହିବାର ପ୍ରବୃତ୍ତି ହେଉଛି ପଶୁର ପ୍ରବୃତ୍ତି । କେବଳ ପେଟର ଭୋକ, ଶୋଷ ଶାନ୍ତ କରିବାକୁ ପଶୁ ଖାଦ୍ୟ ଖାଇ, ପାଣି ପିଏ । କେବଳ ଶୀତ, ଖରା, ବର୍ଷାରୁ ଆପଣାର ଶରୀରଟାକୁ ବଞ୍ଚାଇ ରଖିବାକୁ ପଶୁ କୌଣସି ଗଛତଳେ ବା ଗୁମ୍ଫା ଭିତରେ ଆଶ୍ରୟ ନିଏ । ପ୍ରକୃତି ବା ପରିସ୍ଥିତି ସହିତ ଖାପ ଖୁଆଇ ଆପଣାକୁ ଜୀଆଇରଖିବା—ଏହା ହେଉଛି ପଶୁର ଜୀବନ ।

ମଣିଷ କେବଳ ଖାଇ, ପିଇ, ଶୋଇ, ହସ ସନ୍ତୁଷ୍ଟ ହୋଇ ରହିପାରିବ ନାହିଁ । ସେଥିଲାଗି ମଣିଷର ଖାଇବା, ପିଇବା, ଶୋଇବା କେବଳ ଖାଇବା, ପିଇବା ଓ ଶୋଇବାରେ ସୀମାବଦ୍ଧ ହୋଇ ରହି ନାହିଁ । ଆପଣାର ସବୁ କାମ ଭିତରେ ମଣିଷ କେତେ ହସ, କାନ୍ଦ ଓ କରୁଣା ଭରି ଦେଇ ସବୁଟିକୁ ଏକ ବିଶିଷ୍ଟ ସମ୍ବନ୍ଧରେ ବାନ୍ଧିରଖି ପାରିଛି । ଏହି ବିଶିଷ୍ଟ ସମ୍ବନ୍ଧରୁ ମଣିଷର ସ୍ନେହ, ପ୍ରେମ, ଧର୍ମ ଓ ଅନୁରାଗର ସୃଷ୍ଟି ହୋଇଛି; ମଣିଷର ଜୀବନ ସରସ ହୋଇପାରିଛି ।

ମଣିଷ କେବଳ ପରିସ୍ଥିତି ସହିତ ଖାପ ଖୁଆଇ ଚାଲେ ନାହିଁ, ଆପଣାର ରୁଚି ଓ ଦୃଷ୍ଟି ଅନୁସାରେ ସେ ପରିସ୍ଥିତିକୁ ବଦଳାଇ ଦିଏ । ପୁରୁଣା ପରିସ୍ଥିତିକୁ ଭାଙ୍ଗି ସେ ନୂଆ ପରିସ୍ଥିତି ସୃଷ୍ଟି କରେ । ତେଣୁ ତାର ଶିକ୍ଷା ମଧ୍ୟ ସେଇପରି ସ୍ତରର ହେବା ଉଚିତ । ମଣିଷର ଦୃଷ୍ଟି, ମଣିଷର କଳ୍ପନା, ମଣିଷର କର୍ମପିପାସା ପ୍ରତ୍ୟେକ ମୁହୂର୍ତ୍ତରେ ତା'ର ଜୀବନକୁ ନୂଆ ନୂଆ ରଙ୍ଗ ଓ ନୂଆ ନୂଆ ଅର୍ଥ ଦେଇ ଚାଲିଛି । ଖାଲି ଯୁଗୋପଯୋଗୀ ହେବାକୁ ଆପଣାର ଲକ୍ଷ୍ୟ କରି ଧରିଲେ ମଣିଷର ଶିକ୍ଷାକୁ ସମୁଚିତ ଓ ସମ୍ପୂର୍ଣ୍ଣ କୁହାଯାଇ ପାରିବ ନାହିଁ । ଆମକୁ ଯୁଗସୃଷ୍ଟିକାରୀ ଶିକ୍ଷା ନେବାକୁ ହେବ । ପୁରୁଣା ଆବଦ୍ଧ ଜଳାଶୟର ବେଷ୍ଟନୀ ଭାଙ୍ଗି ଆମକୁ ନୂଆ ସୃଷ୍ଟିର ସ୍ରୋତ ବୁହାଇବାକୁ ହେବ । ଆମ ଜୀବନରେ, ଆମ ପ୍ରତ୍ୟେକଙ୍କର ଦୈନନ୍ଦିନ ଜୀବନ ଭିତରେ ପ୍ରତି ମୁହୂର୍ତ୍ତରେ ପୁରୁଣା ଭାଙ୍ଗୁଥିବ, ନୂଆ ଗଢ଼ା ହେଉଥିବ; ପୁରୁଣାର ବର୍ଜନ ଓ ନୂଆର ସୃଷ୍ଟି ଚାଲିଥିବ । ତେବେ ଯାଇ ଏଇଟି ଆମର ଶିକ୍ଷାକୁ ଆମେ ସାର୍ଥକ ଶିକ୍ଷା ବୋଲି କହିପାରିବା । ମୌଳିକ ହେଉ କି ବେମୌଳିକ ହେଉ, ଦେଶୀ ହେଉ କି ବିଦେଶୀ ହେଉ, ଶିକ୍ଷାର ଏଇ ମୂଳ ସାରଟିକୁ ଆମେ ସମସ୍ତେ ଶିକ୍ଷକ ଓ ଛାତ୍ର ଉଭୟେ ମନେ ରଖିବା । ଆମେ ଯୁଗର ଉପଯୋଗୀ ହେବା ନାହିଁ, ପଶୁ ପରି ଖାଲି ପରିସ୍ଥିତି ସହିତ ଖାପ ଖୁଆଇନେବାର ହୀନ ସାଧନା କରିବା ନାହିଁ । ଆମେ ଯୁଗ ସୃଷ୍ଟି କରିବା ।

୧୮।୧।୫୪

ଆମର ଭାବନା ଅନେକ ହୋଇପାରେ, କିନ୍ତୁ ବାସନା ଏକ ହେବା ଉଚିତ। ସେଦିନ ବାଙ୍କୁଡ଼ା କର୍ମୀ ସମ୍ମିଳନୀରେ ଶ୍ରୀ ବିନୋବା ଏଇ କଥା କହିଥିଲେ। ହଠାତ୍ ଏଇ କଥାଟିର ପୂରା ଅର୍ଥ ସହଜରେ ବୁଝିହୁଏ ନାହିଁ। ଟିକିଏ ଗଭୀର ଭାବରେ ଚିନ୍ତା କରିବାକୁ ପଡ଼ିବ। ତେବେ ଯାଇ ହୃଦୟ ଭିତରକୁ ଯାଇପାରିବା। ଆମେ ଦେଖିବା ଯେ କେବଳ ଭୂଦାନ-ଯଜ୍ଞ ବିପ୍ଳବର କର୍ମୀମାନଙ୍କର ଜୀବନରେ ନୁହେଁ, ସବୁ ମଣିଷଙ୍କର ଜୀବନରେ ମଧ୍ୟ ଏଇ କଥାଟିର ମହତ୍ତ୍ୱ ରହିଛି। ଆମର ଏଇ ଶ୍ରେଷ୍ଠ ସଂସାରଟିରେ— ଯେଉଁଠି ସବୁଦିନେ ଆମେ ପ୍ରତ୍ୟେକ ଏକ ସୁନ୍ଦର ଭବିଷ୍ୟତର ସ୍ୱପ୍ନ ଦେଖୁଛେଁ, ସେଥିଲାଗି ଆଗକୁ ବାଟ କାଟି କାଟି ଚାଲିଛେଁ—ଆମର ଏଠାରେ ମଧ୍ୟ ଏଇ କଥାଟିକୁ ବେଶ ଲାଗୁ କରାଯାଇପାରିବ।

ଆମେ କିପରି ବାସନା ନେଇ ଏଠିକି ଆସିଛୁ ? ଚାଲ ଘଣ୍ଟାଏ ନୀରବ ରହି ଆପଣାର ହୃଦୟ ଭିତରେ ଆମେ ଆପଣାକୁ ଏଇ ପ୍ରଶ୍ନ ପଚାରିବା। ଏଠିକାର ଚାରିପାଖର ଦୃଶ୍ୟ ଅତି ସୁନ୍ଦର। କିନ୍ତୁ ଖାଲି ସୁନ୍ଦର ଦୃଶ୍ୟ ଦେଖିବାକୁ କ'ଣ ଆମେ ଏଠିକି ଆସିଛୁ ? ଉତ୍ତର-ବୁନିଆଦି ପାସ୍ କରି-ସାରିବା ପରେ ଆମର ସମ୍ମାନ ସମାଜରେ ବଢ଼ିବ। ଆମ ପାଠର ଦାମ ବଢ଼ିବ। କିନ୍ତୁ ଖାଲି ପାଞ୍ଚଜଣଙ୍କର ଖାତିର ପାଇବାକୁ ବା ଭବିଷ୍ୟତରେ ଅଧିକ ପଇସା କମାଇବାର ଆଶା ରଖି କ'ଣ ଆମେ ଏଠିକି ଆସିଛୁ ? ପାଠ ପଢ଼ିବାର ଜୀବନ ବେଶ ମଜାର ଜୀବନ; ନିଶ୍ଚିନ୍ତ ହୋଇ ଭୋଗ କରିବାର ଜୀବନ; ସେଥିରେ ପୁଣି ସରକାର ଆମକୁ ମାସକୁ ମାସ ସାହାଯ୍ୟ ଦେବ। କିନ୍ତୁ ଉପୁରି ପଇସାରେ ଏଠି ଚାରିବର୍ଷ ବରଷ ଭୋଗ କରିଯିବାର ଲୋଭରେ ପଡ଼ି କ'ଣ ଆମେ ଏଠିକି ଆସିଛୁ ? ଆମ ପରିବାରର ଶିକ୍ଷକ ଓ ଛାତ୍ର, ବଡ଼ଭାଇ ଓ ସାନଭାଇ, ଚାଲ ଆମେ ସମସ୍ତେ ଆପଣା ଆପଣାକୁ ଏଇ ପ୍ରଶ୍ନ ପଚାରିବା।

କୌଣସି ଶିକ୍ଷାନୁଷ୍ଠାନକୁ ଶ୍ରମ କରିବାର ଓ ମଜୁରି ଦେବାର କାରଖାନା ସହିତ ତୁଳନା କରାଯାଇପାରିବ ନାହିଁ । ଏହା ଉପଭୋଗ କରିବାର ପ୍ରମୋଦ-ବାଟିକା କଦାପି ହୋଇପାରିବ ନାହିଁ । ତେବେ ଏ କ'ଣ ? ଯେଉଁମାନେ ଏଠାକୁ ଆସିବେ, କଭଳି ବାସନା ନେଇ ସେମାନେ ଏଠାକୁ ଆସିବେ ? ଯଦି ହୃଦୟ ଖୋଲିଦେଇ ମୋର ମନର କଥା ତୁମମାନଙ୍କୁ କହିଦେବାର ଅଧିକାର ତୁମେମାନେ ମୋତେ ଦିଅ, ତେବେ ମୁଁ କହିବି ଚାଲ ଆମେ ସମସ୍ତେ ମିଶି ଏଇଠି ଭଲ ମଣିଷ ହେବାର ସାଧନା କରିବା । ଭଲ ମଣିଷର ବାସନା ନେଇ ଆମେ ଏଠିକି ଆସିଛୁ । ଏଇ କଥା ଆମେ ପ୍ରତ୍ୟେକ ଦିନ ଆପଣା ଆପଣାକୁ ସ୍ମରଣ କରାଇଦେବା । ଆମର ପାଠ, ଆମର କାମ, ଆମର ଅଭ୍ୟାସ, ଆମର ଆଚରଣ, ସବୁ ପ୍ରଧାନତଃ ଆମକୁ ଭଲ ମଣିଷ ହେବାକୁ ସାହାଯ୍ୟ କରୁ । ଆମେ ସୁସ୍ଥ ଶରୀର ଓ ସୁସ୍ଥ ମନ ନେଇ ଏଠି ରହିବା । ଆମେ ସମସ୍ତେ ସରସ ହେବା; ଅନ୍ୟକୁ ସରସ ହେବାରେ ସାହାଯ୍ୟ କରିବା । ଯିଏ ଆଗକୁ ଚାଲିଯାଉଛି, ତା'ର ଶୁଭ କାମନା କରିବା । ଯିଏ ପଛରେ ପଡିଯାଉଛି, ହାତ ବଢ଼ାଇ ତାକୁ ଆମର ସମକକ୍ଷ କରିନେବା । ଆମେ ସମସ୍ତେ ଗୋଟିଏ ବାଟର ବାଟୋଇ, ପଥର ସାଥୀ—ହଁ, ଶିକ୍ଷକ ଓ ଛାତ୍ର ସମସ୍ତେ । କାରଣ ଭଲ ମଣିଷ ହେବାର ସାଧନା ଆମ କାହାରି ଶେଷ ହୋଇ ନାହିଁ ; ଶେଷ ହେବ ନାହିଁ । ଛାତ୍ରର ନୁହେଁ କି ଶିକ୍ଷକର ନୁହେଁ । ଯେଉଁ ବାସନା ଆମକୁ ଏଠି ଏକାଠି କରାଇଛି, ସେହି ବାସନା ଆମକୁ ଗୋଟିଏ ପଥର ସ୍ନେହଶୀଳ ଓ ସହିଷ୍ଣୁ ସାଥୀ କରି ରଖିଥାଉ ।

୨୭।୧।୫୪

କାଲି ଆମର ଗଣତନ୍ତ୍ର ଦିବସ ଗଲା । ଆମେ ସେଇ ଦିନଟିକୁ ଯଥାବିଧିରେ ପାଳନ କରିଥାନ୍ତୁ, ଆନନ୍ଦ ଉତ୍ସବ. ସଭାସମିତି କରିଥାନ୍ତୁ, ଏ କଥା ହୁଏତ ଆମ ଭିତରୁ ଅନେକ ଇଚ୍ଛା କରିଥିଲେ । ପତାକା ଉଡ଼ାଇଲେ କି ଜାତୀୟ ସଙ୍ଗୀତ ଗାଇଲେ ଗଣତନ୍ତ୍ର ଦିବସର ପାଳନ ହୁଏ ନାହିଁ । ଆମେ

ବର୍ତ୍ତମାନ ପାଠ ପଢ଼ୁଛେଁ । ଆମେ ବର୍ତ୍ତମାନ ପିଲା । ଦେଶରେ ଆମରି ପରି ଆହୁରି ଅନେକ ପିଲା ଅଛନ୍ତି । ଆମଠାରୁ ବୟସରେ ଶ୍ରେଷ୍ଠ ପିଲା ମଧ୍ୟ ଅଛନ୍ତି । ଏଇ ଦେଶର ଆକାଶ ତଳେ ଏପର୍ଯ୍ୟନ୍ତ ସେମାନଙ୍କ ସକାଶେ ଘର ଖଣ୍ଡେ ତିଆରି ହୋଇ ନାହିଁ । ଖାଇବା ପିନ୍ଧିବା ଏପର୍ଯ୍ୟନ୍ତ ଆମ ଦେଶର ଅନେକ ପିଲାଙ୍କର ଭାଗ୍ୟରେ ଜୁଟିନାହିଁ । ପାଠ ପଢ଼ିବା କଥା କିଏ ପଚାରୁଛି ? ଯେଉଁ ଦେଶର ପିଲା ପେଟର ଭୋକ ମେଣ୍ଟାଇବାକୁ ଜୋତା ପାଲିସ କରୁଛି, ରାସ୍ତା କଡ଼ରେ ଲଙ୍ଗଳା ହୋଇ ବୁଲି ଭିକ ମାଗୁଛି, କୁଲି ହୋଇ ଆମରି-ମାନଙ୍କର ବୋଝ ବୋହୁଛି, ସେହି ଦେଶରେ ପିଲାଏ ପାଠ ପଢ଼ିବେ ! ସବୁ ପିଲାଏ ଭଲ ପାଠ ପଢ଼ିବେ, ଏ କଥା ଲାଗି ଆହୁରି ଅନେକ ବର୍ଷ ସାଧନା କରିବାକୁ ପଡ଼ିବ ।

ଦେଶର ଗଣତନ୍ତ୍ର ପ୍ରକୃତ ଗଣତନ୍ତ୍ର ହୋଇଥିଲେ ଦେଶର ପ୍ରତ୍ୟେକ ମଣିଷ ତାହା ଅନୁଭବ କରିପାରୁଥାନ୍ତା । ତାକୁ ଆଉ ସରକାରୀ ନୋଟିସ ଦିଆଯାଇ ଗଣତନ୍ତ୍ର ଦିବସ ପାଳନ କରିବା ଲାଗି କହିବା ଦରକାର ପଡ଼ନ୍ତା ନାହିଁ । ଡେନ୍‌ମାର୍କ ବା ଆମେରିକାରେ ଏପରି ହୁଏ ନାହିଁ । ସେଠି ସମସ୍ତେ ସ୍ୱାଧୀନଭାବରେ ପରିଶ୍ରମ କରନ୍ତି; ସ୍ୱାଧୀନଭାବରେ ପାଠ ପଢ଼ନ୍ତି; ସ୍ୱାଧୀନ ଓ ସମାନ ଭାବରେ ମନର କଥା କହିପାରନ୍ତି । ସେଠି ମଣିଷକୁ ମଣିଷର ସମ୍ମାନ ଦିଆଯାଏ; ମଣିଷକୁ ଉପଯୁକ୍ତ ଶିକ୍ଷା ଦିଆଯାଏ । ସେଠି ପିଲାକୁ ସମସ୍ତେ ଆଦର କରନ୍ତି, ପିଲାକୁ ସାରା ଦେଶର ସମ୍ପତ୍ତି ଭାବି ତା'ର ଭବିଷ୍ୟତ ଗଢ଼ନ୍ତି । ଆମ ଦେଶରେ ସେଇ ସ୍ଥିତି ସମ୍ଭବ କରିବାକୁ ଆହୁରି ଅନେକ ବାଟ ବାକି ଅଛି ।

ରାଜନୈତିକ ସ୍ୱାଧୀନତା ପାଇବା ପୂର୍ବରୁ ମଧ୍ୟ ଜାନୁଆରୀ ୨୬ ତାରିଖକୁ ଆମେ ଜାତୀୟ ପର୍ବରୂପେ ପାଳନ କରୁଥିଲୁ । ସେଦିନ ଭାରତର ଲୋକେ ଦେଶକୁ ସ୍ୱାଧୀନ କରିବାର ଶପଥ ପତ୍ର ପଢ଼ୁଥିଲେ । ମଣିଷ ହିସାବରେ ସଂସାରରେ ସ୍ୱାଧୀନ ହୋଇ ବଞ୍ଚିବାର ଅଧିକାର ଆମର ଅଛି, ଆମେ ସ୍ୱାଧୀନ ହେବା ଲାଗି ସବୁ ସମର୍ପଣ କରିଦେବାକୁ ତିଆରି ହେବୁ, ଏଇପରି ଗୋଟାଏ

ସଂକଳ୍ପ ସେଦିନ ସମସ୍ତେ ନେଇଥିଲେ । ସ୍ୱାଧୀନତା ପରେ ଆମେ ସତ୍ୟ ଓ ଅହିଂସାର ମୂଳଦୁଆ ଉପରେ ଆମର ନୂଆ ସମାଜ ଓ ନୂଆ ବ୍ୟବସ୍ଥା ଗଢ଼ିବୁ, ଶପଥପତ୍ରରେ ଆମେ ଏଇକଥା କହି ଆସୁଥିଲୁ । ଅହିଂସାର ବାଟରୁ ଆମେ ଅନେକ ବାଟ ହଟିଆସିଛୁ । ଶପଥପତ୍ରଟିରୁ ଅହିଂସା ବିଷୟକ ସଂକଳ୍ପଟି ବର୍ତ୍ତମାନ ଉଠାଇ ଦିଆଯାଇଛି । ଜାନୁଆରୀ ୨୬ ତାରିଖ ପାଳନ କରିବା ପୂର୍ବରୁ ପ୍ରତ୍ୟେକ ଛାତ୍ରକୁ ଗମ୍ଭୀରଭାବରେ ସେଇ କଥା ଭାବିବାକୁ ହେବ ।

୨୯।୧୨।୫୫

ଆମେ କେତେ ଦିନ ହେଲା ବକ୍ତୃତାକଳା ବିଷୟରେ ସୋପାନ କରୁଛୁ । ଆମେ ସମସ୍ତେ କିପରି ଯେକୌଣସି ବିଷୟରେ ଭଲକରି ପାଞ୍ଚ ପଦ କଥା କହି ପାରିବା, ଏଥିଲାଗି ଆମେ ଏକ ନୂଆ ସୋପାନ ଆରମ୍ଭ କରିଛୁ । କଥା କହି-ଶିଖିବା ଗୋଟାଏ କଳା । ଏହାଲାଗି ଅନେକ ଉଦ୍ୟମ ଦରକାର, ଅନେକ ଅଧ୍ୟବସାୟ ଦରକାର । ଦୁଇ ହଜାର ବର୍ଷ ତଳେ ଗ୍ରୀସ୍ ଦେଶରେ ଡିମୋସ୍ଥିନିସ୍ ବୋଲି ଜଣେ ଲୋକ ଥିଲେ । ସେ ପିଲାଟିଦିନରୁ ଟନା, ଅଥଚ ଏଣେ ଭଲ ବକ୍ତୃତା ଦେବା ଲାଗି ତାଙ୍କର ଭାରି ମନ । ସବୁଦିନେ ସେ ଗୋଟାଏ ନିକାଞ୍ଚନ ଜାଗାକୁ ଯାନ୍ତି, ପାଟି ଭିତରେ ଗୋଡ଼ି ଭର୍ତ୍ତିକରି ଦୁଇ ଗାଲରେ ମୁଥ ମାରନ୍ତି । ଏହିପରି ସେ ସ୍ପଷ୍ଟ କଥା କହିଶିଖିଲେ; ବଡ଼ ହୋଇ ଗ୍ରୀସ୍ ଦେଶରେ ଜଣେ ସୁଖ୍ୟାତ ବକ୍ତା ହିସାବରେ ପରିଚିତ ହେଲେ । କଥା କହିବାର କଳା ହାସଲ କରିବାକୁ ଅନେକ ସାଧନା ଦରକାର ।

କଥା କହିବାର କଳା ହାସଲ କରିବା ସଙ୍ଗେ ସଙ୍ଗେ ଆମକୁ ନୀରବ ରହିବାର କଳା ମଧ୍ୟ ହାସଲ କରିବାକୁ ହେବ । ତା' ନ ହେଲେ ଆମ ଜୀବନରେ ଭାରସାମ୍ୟ ଆସିବ ନାହିଁ । କେତେବେଳେ ମୋର ମନର ଭାବ ସ୍ପଷ୍ଟ ଓ ସହଜ ଭାବରେ ମୁଁ କହିବି ଏହା ଜାଣିରଖିବା ଯେତିକି ଦରକାର,

କେତେବେଳେ ମୋର ଆପଣା ମନର ନୀଡ଼ ଭିତରେ ମୁଁ ନୀରବ ହୋଇ ବସିବି, ଏଇଟି ଜାଣିବା ମଧ୍ୟ ସେତକ ଦରକାର ।

ଯିଏ କଥା କହିବା ଦରକାର ଥିଲାବେଳେ ଚୁପ୍‌ହୋଇ ପଛକୁ ରହିଯାଏ, ଆମେ ତାକୁ ବୋକା ବୋଲି କହୁ । ତାହା ଠିକ୍ । ବିନା ସଙ୍କୋଚ ଓ ବିନା ଲଜ୍ଜାରେ ମୋତେ ମୋର ମନର କଥା ପାଞ୍ଚ ଜଣଙ୍କ ଆଗରେ କହିବାକୁ ହେବ । କିନ୍ତୁ କଥା କହିବା ଦରକାର ନ ଥିଲାବେଳେ ଯିଏ କଥା-କୁହା କଲାପରି ବକର ବକର ହେଉଥାଏ, ତାକୁ ମଧ୍ୟ ଆମେ ବୋକା କହିବା । ଜୀବନରେ ସିଏ ଅନେକ ହରାଏ । ତାର ଭିତରଟା କଥା କହି କହି ଫମ୍ପା ହୋଇ ପଡ଼ି ରହିଥାଏ । ସିଏ ସଂସାରରୁ କିଛି ଗ୍ରହଣ କରିପାରେ ନାହିଁ, ତେଣୁ ସଂସାରକୁ କିଛି ଦେଇପାରେ ନାହିଁ । ଗ୍ରୀଷ୍ମକାଳରେ ପାଣି ବାମ୍ପ ହୋଇ ଗଗନମଣ୍ଡଳରେ ଜମା ହୁଏ । ବର୍ଷାଦିନରେ ତାହା ମେଘ ହୋଇ ପାଣି ବର୍ଷା କରେ; ସାରା ସଂସାରକୁ ଜୀବନ ଓ ବେଗରେ ଭରପୂର କରି ଦିଏ । ଗ୍ରୀଷ୍ମ-କାଳର ନୀରବ ସଂଗ୍ରହର ସାଧନା ଆମେ ସମସ୍ତେ କରିବା । ତା'ହେଲେ ଆମେ ସଂସାରକୁ ଦେବାର ଯୋଗ୍ୟ ଅନେକ କିଛି ଦେଇପାରିବା, ନିଜର ଜୀବନକୁ ଧନ୍ୟ କରିବା ।

ଦିନମାନର କାର୍ଯ୍ୟକ୍ରମ ଭିତରେ ଆମକୁ ଏଇ ଦୁଇଟିଯାକ କଳାର ଏକତ୍ର ସାଧନା କରିବାକୁ ହେବ । ମୁଁ ନୀରବ ହେବି, ସଂଗ୍ରହ କରିବି, ଆପଣା ବାହାରେ ଠିଆହୋଇ ଆପଣାକୁ ନିରୀକ୍ଷଣ କରି ଶିଖିବି, ମୁଁ ଆତ୍ମ-ସମାଲୋଚନା କରିବି । ପୁଣି ମୁଁ କଥା କହିବି, କାମ କରିବି, ସଂସାରର ଷାଠିଏ ଜଣଙ୍କ ସହିତ ଏକତ୍ର ହୋଇ ଜୀବନର କର୍ମ ସାଧନ କରିବି, ଆତ୍ମନିବେଦନ କରିବି । ଜୀବନରେ ବାର ବାର ମୋର କବାଟ ବନ୍ଦ କରି ମୁଁ ଏକାନ୍ତରେ ମଧୁ ସଂଗ୍ରହ କରିବି, ପୁଣି ବାରବାର ମୋର ସମସ୍ତ କବାଟ ଖୋଲିଦେଇ ମୁଁ ସଂଗୃହୀତ ସମସ୍ତ ମଧୁ ବିତରଣ କରିଦେବି । ମୋର ତଥା ଅନ୍ୟ ସଭିଙ୍କ ଜୀବନକୁ ମଧୁମୟ କରିଦେବି ।

ସେ ଆଜକୁ ସାତ ବର୍ଷ ତଳର କଥା । ସାତ ବର୍ଷ ତଳେ ଗାନ୍ଧି ଏଇ ଦେଶରେ ଶରୀର ଧରି ରହିଥିଲା । ଏଇ ଦେଶର ଦୁଃଖ ଦୈନ୍ୟକୁ ସମ୍ଭାଳିବା ଲାଗି ସେ ଆଗ ହୋଇ ବାହାରି ପଡ଼ୁଥିଲା । ଏଇ ଦେଶର ପିତା ହିସାବରେ ଆଗକୁ ବାଟ କଢ଼ାଇ ନେଉଥିଲା । ସେତେବେଳେ ଦେଶର ପାଣି, ପବନ, ମଣିଷର ମନ ଓ ବସ୍ତିର ଭିତରେ ଗାନ୍ଧି ପୂରି ରହିଥିଲା । ଗାନ୍ଧି କହିଲେ ସାରା ଦେଶ କାନଡେରି ଶୁଣୁଥିଲା । ଗାନ୍ଧି ରୁଷିଲେ ସାରା ଦେଶ ପ୍ରମାଦ ଗଣୁଥିଲା । ଆଜି ସେସବୁ ପୁରୁଣା ହୋଇଗଲାଣି । ଆଉ ସେସବୁ କଥା ମନେ ପଡ଼ୁନାହିଁ । କେତେ ଗାଆଁରେ, ସହରରେ, ରାଜପଥରେ, ଉପବନରେ ଗାନ୍ଧିର ବହୁମୂଲ୍ୟ ମୂର୍ତ୍ତି ପ୍ରତିଷ୍ଠା କରାଯାଇଛି । ଗାନ୍ଧି ନାଆଁରେ ଲକ୍ଷ ଲକ୍ଷ ଟଙ୍କା ସଂଗ୍ରହ ହୋଇଛି । ଦେଶର ଦରିଦ୍ରଙ୍କ ଲାଗି କିଛି ହିତକର କାମ କରାଯିବାର ନାନା ବ୍ୟବସ୍ଥା ହେଉଛି । ଗାନ୍ଧି କହିଛି ବୋଲି ଦେଶର ସହାୟହୀନ ଦୁର୍ଭାଗ୍ୟ ଲୋକଙ୍କୁ ଦୟା ଦେଖାଇବା ଲାଗି ଆଜି କେତେ ବଡ଼ ଲୋକ ଆଗୁଆ ହୋଇ ବାହାରିଛନ୍ତି ।

ପୃଥିବୀର ବିଖ୍ୟାତ ବୈଜ୍ଞାନିକ ଓ ଦାର୍ଶନିକ ଆଇନ୍‌ଷ୍ଟାଇନ୍‌ଙ୍କ ନାଆଁ ଆମେ ସମସ୍ତେ ଶୁଣିଛୁ । ଗାନ୍ଧିଜୀଙ୍କର ତିରୋଧାନ ପରେ ସେ ତାଙ୍କ ବିଷୟରେ ଗୋଟିଏ ଭବିଷ୍ୟତବାଣୀ କରିଥିଲେ । ସେ କହିଥିଲେ, ଆଉ କେତେ ବର୍ଷ ଚାଲିଗଲେ ଆମେ ହୁଏତ ବିଶ୍ୱାସ କରିପାରିବା ନାହିଁ ଯେ ଚମ-ମାଂସ-ହାଡ଼ର ଦେହ ଧରି ଏପରି ଜଣେ ମହାପୁରୁଷ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲା; ପୃଥିବୀର ଦୁଃଖ ସୁଖରେ ଭାଗୀ ହୋଇଥିଲା । ପ୍ରେମ ବଳରେ ଜଗତକୁ ଆପଣାର କରିବାର କଳାକୁ ନିଜର ଶ୍ରେଷ୍ଠ ବଡ଼ ସବୁ କାମରେ ପ୍ରୟୋଗ କରୁଥିଲା ।

ତାଙ୍କର ଭବିଷ୍ୟତବାଣୀକୁ ଆମେସବୁ ଅଯୋଗ୍ୟ ମଣିଷ ସଫଳ କରି ଚାଲିଛୁ । ଗାନ୍ଧି ଦେଉଳ ଭିତରେ ଥାଉ, ଗାନ୍ଧିର ପୂଜା ବର୍ଷକୁ ବର୍ଷ ଅଧିକରୁ ଅଧିକ ଆଡ଼ମ୍ବରରେ ହେଉଥାଉ, ଗାନ୍ଧିର ମୂର୍ତ୍ତି ଗାଆଁ ଗାଆଁରେ

ତିଆରି ହେଉ, ସେଥିରେ ମୋଟେ ଆପତ୍ତି ନାହିଁ । ଏସବୁ ତ ମଲା ଗାନ୍ଧିର ଉପାସନା, ମଲା ଗାନ୍ଧିର ଆରାଧନା, ମଲା ଗାନ୍ଧିର ଭକ୍ତି । ଏ ଭକ୍ତିରେ କୌଣସି ଦାୟିତ୍ୱ ନାହିଁ । କିନ୍ତୁ ଜୀଅନ୍ତା ଗାନ୍ଧିର ପୂଜା କିଏ କରିବ ? ଗାନ୍ଧି ଯାହା କହୁଥିଲା, ଯାହା ପାଇଁ ଦେହଧରି ରହିଥିଲା ଓ ଯାହା ପାଇଁ ପୁଣି ଦେହ ଛାଡ଼ିଲା, ତାକୁଇ ଯିଏ ଜୀବନରେ ସବୁଠାରୁ ବେଶୀ ମୂଲ୍ୟ ଦେବ, ଆପଣାର ବ୍ୟକ୍ତିଗତ ଓ ସାମାଜିକ ଜୀବନାଚରଣର ଶ୍ରେଷ୍ଠ ବଡ଼ ସବୁ କାମରେ ଗାନ୍ଧିକୁ ଆଣି ବସାଇପାରିବ, ସେଇ ଜୀଅନ୍ତା ଗାନ୍ଧିର ପୂଜା କରିପାରିବ ।

ଗାନ୍ଧି ଯେତେବେଳେ ବଞ୍ଚିଥିଲା, ସେତେବେଳେ ତାର କଥା ଓ କାମ ଭିତରେ ଭଗବାନ କଥା କହୁଥିଲେ । ସାରା ଦେଶର ବିବେକ କଥା କହୁଥିଲା । ଗାନ୍ଧିର ଶରୀର ମରିଗଲା; ଏଥର ଆମରି ଜୀବନ ଭିତର ଦେଇ ଆମର ବିବେକ କଥା କହୁ । ଆମର କଥା ଭଗବାନଙ୍କର କଥା ହେଉ । ଆମର କାମ ଭଗବାନଙ୍କର କାମ ହେଉ । ଗାନ୍ଧିକୁ ଆମେ ପୂଜା କରିବାର ମୂର୍ଖତା କରିଛୁ, ଦୁର୍ବଳ କର୍ମହୀନ ଭକ୍ତି ଦେଖାଇଛୁ । ସେଥିଲାଗି ଜୀଅନ୍ତା ଗାନ୍ଧିର ସ୍ପର୍ଶ ଆମେ ପାଇଲୁ ନାହିଁ । ଆମ ଭକ୍ତି ଆଉ ଆରାଧନାର ରାସ୍ତା ଅଲଗା ପ୍ରକାରର ହେଉ । ଚାଲ, ଆମେ ସମସ୍ତେ, ଆମ ହୃଦୟ ଭିତରେ ଗାନ୍ଧିଙ୍କୁ କହିବା—ଆମେ ଯିବାକୁ ପ୍ରସ୍ତୁତ ଅଛୁ, ହେ ମହାନ୍ ପିତା, ତୁମେ ଆମର ହାତଧରି ପଥ କଢ଼ାଇ ନେଇଯାଅ । ଆମେ ପ୍ରସ୍ତୁତ ଅଛୁ, ତୁମେ ଆମକୁ ତୁମରି ପ୍ରିୟ କାମରେ ଉଦ୍ୟତ କରିନିଅ ।

୮।୨।୪୯

ଓଡ଼ିଶାର ଚାରିଆଡ଼ୁ ଆମେ ଗୋଟାଏ ଜାଗାରେ ଏକତ୍ର ହୋଇଚେ । ଆସିଲାବେଳେ କେତେ ସ୍ୱପ୍ନ, କେତେ ବାସନା ନେଇ ଆମେ ଏଠି କି ଆସିଛେ । ସମସ୍ତଙ୍କ ମନରେ ସେଇ ଗୋଟାଏ ଅଭିଳାଷ, ଛାତ୍ର ଓ ଶିକ୍ଷକଙ୍କ ମନରେ ସେଇ ଗୋଟାଏ କଳ୍ପନା ଯେ ଆମେ ଏକାଠି ମିଶି ଗୋଟାଏ ମନୋମତ ଶିକ୍ଷା-ଅନୁଷ୍ଠାନ ତିଆରି କରିବା ।

କିନ୍ତୁ ଆମର ଏ ଅନୁଷ୍ଠାନକୁ ଶିକ୍ଷା ଅନୁଷ୍ଠାନ ବୋଲି କହିବା ଲାଗି ଆମର କ'ଣ ଅଛି ? କେତେ ବଡ଼ ବଡ଼ କୋଠାରେ ଆମ ଦେଶର ସ୍କୁଲ୍, କଲେଜ ବସିଛି । ଖେଳ ପଡ଼ିଆ ଅଛି । ବିଜ୍ଞାନର ପ୍ରୟୋଗ ଲାଗି ବଡ଼ ବଡ଼ ପ୍ରୟୋଗଶାଳା ଅଛି । ସେଠି ଯିଏ ପାଠ ପଢ଼ୁଛି, ସେମାନଙ୍କର ଭେକ ସେମାନଙ୍କୁ ଅନ୍ୟମାନଙ୍କଠାରୁ ପାଠୁଆ ବୋଲି ଚହ୍ନା ପକେଇ ଦେଉଛି । ଯିଏ ଦେଖୁଛି, ତା'ର ଆଖି ପୂରିଯାଉଛି । ଯିଏ ସେ ବାଟେ ଯାଉଛି, ସିଏ ଆମ ଦେଶର ଶିକ୍ଷା ଅନୁଷ୍ଠାନକୁ ଚହ୍ନିପାରୁଛି । କିନ୍ତୁ ଆମର କ'ଣ ଅଛି ? ଭଲ ଘର ଖଣ୍ଡେ ନାହିଁ, ପାଠପଢ଼ାର ସରଞ୍ଜାମ ନାହିଁ, ସଫା ଲୁଗା ଖଣ୍ଡେ ଖଣ୍ଡେ ପିନ୍ଧିବାର ସାମଗ୍ରୀ ଆମ ପାଖରେ ନାହିଁ । ଆମର ଏଠି ଶିକ୍ଷକ ନାହାନ୍ତି, ନିୟମିତ କାର୍ଯ୍ୟକ୍ରମ ନାହିଁ, ମନୋମତ ପାଠ ପଢ଼ିବାର ଉପକରଣ ଆମର ନାହିଁ । କ'ଣ ଦେଖି ଆମର ଅନୁଷ୍ଠାନକୁ ଶିକ୍ଷା-ଅନୁଷ୍ଠାନ ବୋଲି କୁହାଯିବ ? ଆମର ଏଠିକା ଅଧିବାସୀଙ୍କଠାରେ କି ଲକ୍ଷଣ ଦେଖି ଲୋକେ ଆମକୁ ଶିକ୍ଷକ ଓ ଶିକ୍ଷାର୍ଥୀ ବୋଲି ଚହ୍ନିବେ ? ସେପରି ଯଦି କୌଣସି ଲକ୍ଷଣ ଆମ ପାଖରେ ନ ଥାଏ, ତେବେ ଆମର ଅନୁଷ୍ଠାନ ଗୋଟିଏ ଶିକ୍ଷା-ଅନୁଷ୍ଠାନ, ଏପରି ଦାବି କରିବାର କି ଅଧିକାର ଆମର ରହିବ ?

ଆମର ନମ୍ରତା, ଆମର ବିନୟ, ଆମର ସହନଶୀଳତା ହିଁ ଆମ ଅନୁଷ୍ଠାନର ପ୍ରଧାନ ଓ ପ୍ରଥମ ଲକ୍ଷଣ ହେଉ, ଆମ ଜୀବନର ସବୁଠାରୁ ମୂଲ୍ୟବାନ ସମ୍ପଦ ହେଉ । ଆମେ ନମ୍ର ହେବା, ଆପଣାର ଦୈନନ୍ଦିନ କାମରେ ନମ୍ର ହେବା, ସେବାରେ ନମ୍ର ହେବା, ସାମାଜିକ କାର୍ଯ୍ୟରେ ଆଉ ପନ୍ଦର ଜଣଙ୍କ ସମ୍ପର୍କରେ ଆସିଲାବେଳେ ଆମେ ନମ୍ର ହେବା । ଆମେ ସହିଷ୍ଣୁ ହେବା । ଉତ୍ତେଜନା ସବୁବେଳେ ଅଳ୍ପବୁଦ୍ଧି ଓ ଅଳ୍ପବିଦ୍ୟାର ସଙ୍କେତ ଦିଏ । ପାକସ୍ଥଳୀ ଯେତିକି ସହିପାରିବ, ତା'ଠାରୁ ଅଧିକ ଖାଇଲେ ମଣିଷର ବଦହଜମି ହୁଏ । ଜ୍ଞାନକୁ ଯିଏ ହଜମ କରିପାରେ, ସେ ସ୍ୱଭାବତଃ ସହିଷ୍ଣୁ ହୋଇଯାଏ । ନଚେତ୍ ଜ୍ଞାନର ବଦହଜମି ହୋଇ ବଦହଜମି ପେଟ ପରି ତାକୁ ସବୁବେଳେ ଉତ୍ୟକ୍ତ ଉତ୍ତେଜିତ ହୋଇ ରହିବାକୁ ପଡ଼େ ।

ଆମ ଶାସ୍ତ୍ରମାନଙ୍କରେ ଶିକ୍ଷାକୁ ବିନୟ ବୋଲି କୁହାଯାଇଛି । ସୁନା ରୁପା ଅଧିକରୁ ଅଧିକ ବାନ୍ଧିଲେ ଗଣ୍ଠି ବଡ଼ ହୁଏ । ଧାନ, ଚାଉଳ ଜମାକଲେ ଅମାର ବଡ଼ କରିବାକୁ ପଡ଼େ । କିନ୍ତୁ ଶିକ୍ଷାକୁ ଅର୍ଜନ ଓ ସଞ୍ଚୟ କରିବାର ରୀତି ସ୍ୱତନ୍ତ୍ର । ଯେ ଯେତିକି ଅଧିକ ଶିକ୍ଷା ପାଏ, ଯେତିକି ସିଏ ଶିକ୍ଷାକୁ ହଜମ କରି ଆତ୍ମଜ୍ଞାନ ଓ ଜୀବନ-ଜ୍ଞାନରେ ପରିଣତ କରେ, ସେ ସେତିକି ନମ୍ର, ସେତିକି ବିନୀତ, ସେତିକି ଶାନ୍ତ ହୋଇଯାଏ । ସ୍ୱାମୀ ବିବେକାନନ୍ଦ ଅଧା ମାଠିଆ ଓ ପୂରା ମାଠିଆ କଥା କହିଛନ୍ତି । ପାଣି ଭିତରେ ଖାଲି ମାଠିଆଟିକୁ ବୁଡ଼ାଇବାବେଳେ ମାଠିଆ ଘଡ଼ ଘଡ଼ ଶବ୍ଦ କରେ । କିନ୍ତୁ ଯେଉଁ ମୁହୂର୍ତ୍ତରେ ମାଠିଆ ପୂରିଯାଏ, ମାଠିଆ ନିଃଶବ୍ଦ ଓ ଶାନ୍ତ ହୋଇଯାଏ । ଶିକ୍ଷିତ ମଣିଷ ପୂର୍ଣ୍ଣ ହୋଇ ରହିଥିବା ମାଠିଆ ପରି । ସେ ନମ୍ର, ସେ ବିନୀତ, ସେ ସହିଷ୍ଣୁ, ସେ ଶାନ୍ତ ।

୧୩।୨।୫୫

ଅନେକ ସମୟରେ ମୁଁ ତୁମକୁ ଅବିଶ୍ୱାସ କରି ପକାଉଛି । ମନେ ମନେ ତୁମମାନଙ୍କ ଉପରେ ଭାରି ବିରକ୍ତ ହେଉଛି । ମୁଁ ଜାଣେ ଏପରି ଅବିଶ୍ୱାସ କରିବା ଓ ଏପରି ବିରକ୍ତ ହେବା ମୋର ମୂର୍ଖତା ମାତ୍ର । ମୋର ଦୁର୍ବଳତାକୁ ମୁଁ ମୋର ରାଗ ଓ ଆଖି ନାଲିର ଢାଙ୍କୁଣୀ ଦେଇ ଘୋଡ଼ାଇ ରଖିବାକୁ ଚାହୁଁଛି । ତୁମେ ସବୁ ଯଦି ଗୋଟିଏ ଗୋଟିଏ ଛେଳି ବା କାଉଁରିଆ ଡାଙ୍ଗ ହୋଇଥାନ୍ତ, ତେବେ ତୁମମାନଙ୍କୁ ମୁଁ ମୁଣ୍ଡରେ ଉଠାଇ ଯୋଉଠୁ ସେଠିକି ନେଇ ପାରୁଥାନ୍ତି, ଯୋଉଠୁ ଇଚ୍ଛା ନେବା ଆଣିବା କରନ୍ତି, ପକାଇ ରଖିପାରନ୍ତି । ପିଲାଏ ନିର୍ଜୀବ ହେଲେ ଶିକ୍ଷକର କାମ ଅତି ସହଜ ହୋଇଯାଏ । ପିଲାଏ ଜଡ଼, ଶିଥିଳ ହୋଇଗଲେ ଶିକ୍ଷକ ଲମ୍ବା ଶିକ୍ଷଣ ବାଟକୁ ଗୋଟାଏ ଡିଆଁରେ ପାରି ହୋଇ-ଯାଇପାରେ; କିନ୍ତୁ ଏଇଆକୁ କ'ଣ ଶିକ୍ଷା କହନ୍ତି ?

ଅନେକ ସମୟରେ ତୁମେମାନେ ମୋତେ ଅବିଶ୍ୱାସ କରୁଛ । ମୋର ମର୍ଜି ମୁତାବକ କାମକୁ ତୁଲାଇ ନ ପାରିଲେ ତୁମେ ଭୟ କରୁଛ । ମୁଁ

ଥିଲାବେଳେ ତୁମେ ଇଚ୍ଛାନୁସାରେ କଥା କହିବାକୁ କି କାମ କରିବାକୁ ସଙ୍କୋଚ ବୋଧ କରୁଛ । ମନେ ମନେ ଭାବୁଛ, ଏଠି ପାଠ ପଢ଼ିବାକୁ ଆସି ଭୁଲ୍ ହେଲା । ଏଠିକାର ଶିକ୍ଷକ ଆମର ଆଶା ପୂରଣ କରିପାରିବେ ନାହିଁ, ଆମ ମନର କ୍ଷୁଧା ଓ ଅନ୍ତରର ପିପାସାକୁ ଖାଦ୍ୟ ପାନୀୟ ଯୋଗାଇ ପାରିବ ନାହିଁ । କିଏ ଭାବୁଛି, ଏଠି ଖାଲି କାମ କରାଇ ଆମକୁ ମୂଲିଆ କରି ଦିଆଯାଉଛି । କିଏ କହୁଛି ଆମକୁ ଭୂଦାନ-କର୍ମୀ ହେବାକୁ ବାଧ୍ୟ କରାଯାଉଛି । ପୁଣି କିଏ କହୁଛି, ଏଠି ଠିକ୍ ମୌଳିକ ଶିକ୍ଷା ଦିଆଯାଉ ନାହିଁ । ଏପରି ଯାବତୀୟ ବିଚାରରେ କେବଳ ମନର ଦୁର୍ବଳତାହିଁ ପ୍ରକାଶ ପାଉଛି ।

ଆମେ ଏଠି ଭୂଦାନ ଶିବିର ଖୋଲିବା ନାହିଁ । ମୌଳିକ ଶିକ୍ଷାର କୌଣସି କାଳ୍ପନିକ ଗ୍ରନ୍ଥରେ ଆମର ବହୁମୂଲ୍ୟ ଆକାଙ୍କ୍ଷା ଓ ବାସନାକୁ ଢାଳାଇ ଆମେ ଯାନ୍ତ୍ରିକ ଛାତ୍ର ଓ ଯାନ୍ତ୍ରିକ ମନ ତିଆରି କରିବା ନାହିଁ । ଆମେ ସମସ୍ତେ ଭଲ ମଣିଷ ହେବା । ଆମର ଶରୀର ସୁସ୍ଥ ସବଳ ରହିବ, ହୃଦୟ ସ୍ୱଚ୍ଛ ରହିବ, ମନରେ ତେଜସ୍ୱିତା ରହିବ, ଆଚରଣରେ ନମ୍ରତା ରହିବ । ସବୁଥିରୁ ଆମେ ଶିଖିବା । ଜୀବନର ଗ୍ରନ୍ଥ ଅଗାଧ ସମୁଦ୍ର ପରି । ଆମେ ସେଇ ସମୁଦ୍ରର ଉପକୂଳରେ ଏକାଠି ବାଟ ଚାଲିଯିବା । ଆମର ତେଜସ୍ୱୀ ମନଦ୍ୱାରା ଆମ ବାତାବରଣ ମଧ୍ୟ ତେଜସ୍ୱୀ ହୋଇଉଠିବ । ଆମର ସଂସ୍ପର୍ଶରେ ଯିଏ ଆସିବ, ସିଏ ଆମର ତେଜସ୍ୱିତା ଓ ନମ୍ରତାର ସ୍ପର୍ଶ ପାଇ ଯିବ ।

ଡେନ୍‌ମାର୍କରେ ଶହେ ବର୍ଷ ତଳେ ଜଣେ ଯୁବକ ଲୁଡ୍‌ୱିଗ୍ ସ୍କ୍ରୋଏଡର (Ludwig Schroeder) ଆପଣାର ଗୋଟିଏ ବିଦ୍ୟାଳୟ ଆରମ୍ଭ କରିଥିଲେ । ସେ କହିଛନ୍ତି, ଯେଉଁଠି ଶିକ୍ଷକର ଦେବାର ଇଚ୍ଛା ଓ ଶିକ୍ଷାର୍ଥୀର ଗ୍ରହଣ କରିବାର ଇଚ୍ଛାର ସ୍ୱାଭାବିକ ମିଳନ ହୁଏ, ସେଇଠି ଆଦର୍ଶ ଓ ସଫଳ ଶିକ୍ଷାନୁଷ୍ଠାନ ଗଢ଼ି ଉଠେ । ସ୍କ୍ରୋଏଡର ଆଜି ଡେନମାର୍କର ସବୁ ଶିକ୍ଷକଙ୍କର ଆଦର୍ଶ ହୋଇ ରହିଛନ୍ତି । ଲୋକ-ବିଦ୍ୟାଳୟର ମୂଳଦୁଆ ସେ ଦେଶରେ ସେ ପକାଇଛନ୍ତି ।

୧୪।୨।୫୪

ଏଥର ଜଣେ ଭାଇଙ୍କର ଡାଏରୀ ପଢୁ ପଢୁ କାନ୍ଦି ପକାଉଥିଲି। କାନ୍ଦିବାଟା ସବୁବେଳେ ଦୁର୍ବଳତାର ପରିଚୟ ଦିଏ ନାହିଁ। କେତେକ ମଣିଷ ଯେତେବେଳେ ଅତି ଆତ୍ମୀୟ ଓ ଆପଣାର କରି ପାଏ, ସେତେବେଳେ ତା'ର ଅନ୍ତରର ଶ୍ରଦ୍ଧା ଆଖିର ଲୁହ ହୋଇ ବାହାରିଆସେ। କାଲି ସେ ଡାଏରୀଟି ପଢି ମୋର ଏପରି ମନେହେଲା। ତୁମେମାନେ ମୋର ଅତି ଆତ୍ମୀୟ, ଅତି ଆପଣାର, ଏଇ କଥା ଅନୁଭବ କଲାବେଳେ ମୁଁ ଭାରି ବଳ ପାଏ। ସେତେବେଳେ ତୁମମାନଙ୍କର ଦୁଷ୍ଟାମି ମୁଁ ଭୁଲିଯାଏ, ମୋ ଭିତରେ ପୂରି ରହିଥିବା ଅଜସ୍ର ଦୁର୍ବଳତା ମୁଁ ପାସୋରିଯାଏ। ଆପଣାର ବିଶ୍ୱାସ ଶତଗୁଣ ହୋଇଯାଏ। ମୁଁ ଭାବେ ସବୁ ହୋଇପାରିବ। ଚମ୍ପତମୁଣ୍ଡା ଆଜି କଣ୍ଟାବଣ ହୋଇ ପଡ଼ିଛି। କିନ୍ତୁ ଆମେ ସେଠି କିଛିହେଲେ ସବୁ ସମ୍ଭବ କରାଇପାରିବା। ସେଠି ଆମେ ଏକାଠି ପଢ଼ିବା, ପରସ୍ପରଠାରୁ ଶିଖିବା, ପରସ୍ପରକୁ ଶିଖାଇବା। ସେଇ ଅନୁଷ୍ଠାନର ଆଶ୍ରୟତଳେ ଆମେ ଏକାଠି ସ୍ୱପ୍ନ ଦେଖିବା, ଏକାଠି ସଂସାରକୁ ଅଧିକ ଭଲ ପାଇ ଶିଖିବା। ସେଠି ଆମେ ପରସ୍ପରର ଆତ୍ମୀୟ ହୋଇଯିବା। ଆମ ଛୋଟିଆ ପରିବାରରେ ଆମେ ଏହି ଆତ୍ମୀୟ ଭାବ ରଖିପାରିଲେ ସାରା ସଂସାରକୁ ମଧ୍ୟ ଆତ୍ମୀୟ କରି ନେଇପାରିବା। ଯିଏ ଛୋଟରୁ ଆରମ୍ଭ କରେ, ତା' ଜୀବନରେ ବଡ଼ କଥା ମଧ୍ୟ ଦିନେ ନା ଦିନେ ସମ୍ଭବ ହୋଇଯାଏ। କିନ୍ତୁ ଯିଏ ବଡ଼ ବଡ଼ କଥାରେ ବାକ୍‌ବାଣ ମାରି ବଡେଇ କରେ, ମୟୂରପକ୍ଷୀ ପରକୁ ନେଇ ଅପଣାର ଡେଣାରେ ଗୁଞ୍ଜିଥିବା କାଉ ପରି ତା'ର ଜୀବନଟାଯାକ ଶୂନ୍ୟ ଓ ବ୍ୟର୍ଥ ହୋଇ ପଡ଼ିରହେ।

ମୁଁ ଦେଶରେ ଓ ଦେଶ ବାହାରେ ଯେଉଁ ସବୁ ପାଠ ମୁଖସ୍ଥ କରି-ଆସିଛି, ସେଇଗୁଡ଼ାକ ପାଞ୍ଚଜଣଙ୍କ ଆଗରେ ଉଦ୍‌ଗାରି ପକାଇବାକୁ ମୁଁ କଦାପି ଶିକ୍ଷକ ହୋଇ ନ ଥାନ୍ତି। ଗୋଟାଏ ଭଲ ସ୍କୁଲ ବସାଇ ନାଆଁ କମେଇବାର ଉଚ୍ଚ-ଅଭିଳାଷ ମୋର ଆଦୌ ନାହିଁ। ପାଠ, ପାଣ୍ଡିତ୍ୟ, କାମ, କାରିଗରି, ଏସବୁ ଆମ ଅନୁଷ୍ଠାନର ପ୍ରଧାନ ସମ୍ବଳ ହୋଇ ରହିବ ନାହିଁ।

ଆମେ ଏଠାରେ ପାଠ ପଢ଼ିବା, ପାଣ୍ଡିତ୍ୟ ଅର୍ଜନ କରିବା, କାମ କରିବା, ଓ ନାନା ପ୍ରକାର କାରିଗରିରେ ଆମେ ନିପୁଣତା ଲାଭ କରିବା। କିନ୍ତୁ ଏସବୁ କେବଳ ସାଧନ ମାତ୍ର। ଆମର ଅସଲ ଆଦର୍ଶରେ ପହଞ୍ଚିବାକୁ ଏସବୁ ଆବଶ୍ୟକ ସାମଗ୍ରୀ ମାତ୍ର। କେଉଁ ଆଦର୍ଶ ରଖି ଆମେ ସବୁ ସାମଗ୍ରୀର ସଂଗ୍ରହ କରିବା ?

ଜର୍ମାନୀର ଶିକ୍ଷାବିତ୍ ଫ୍ରୋଏବେଲ୍ (Froebel)ଙ୍କ ନାଆଁ ଆମେ ସମସ୍ତେ ଶୁଣିଛନ୍ତି। ସଂସାରରେ ଶିଶୁ ଲାଗି ଆନନ୍ଦ ଓ ଶିକ୍ଷଣର ନନ୍ଦନ-କାନନ ଗଢ଼ିବାର ସ୍ୱପ୍ନ ଫ୍ରୋଏବେଲ୍ ଦେଖିଥିଲେ। ପୃଥିବୀର ସମାଜ-ନେତାମାନଙ୍କୁ ସମ୍ବୋଧନ କରି ଥରେ ସେ କହିଥିଲେ, "ଲୋକମାନଙ୍କୁ ଖାଦ୍ୟ, ବସନ ଓ ଆଶ୍ରୟ ଯୋଗାଇବାର କାମ ତୁମ୍ଭମାନଙ୍କର; କିନ୍ତୁ ସେମାନଙ୍କୁ ଆତ୍ମ-ପରିଚୟ କରାଇଦେବାର କାମ ମୋର।" ଆମେ ଏଠି ସମସ୍ତେ ଆପଣାର ମୂର୍ତ୍ତି ପରିଚୟ ପାଇବା, ଆମ ଭିତରର ଅସଲ ମଣିଷର ପିପାସା ମେଣ୍ଟାଇବାକୁ ଆମେ ରସ ଯୋଗାଇବା। ଏ ଦାୟିତ୍ୱ ଆମ ସମସ୍ତଙ୍କର। ଏହାହିଁ ଆମର ଆଦର୍ଶ। କାରଣ ଯିଏ ନିଜର ସତ୍ୟ-ପରିଚୟ ପାଏ, ସିଏ ସମସ୍ତ ଜଗତର ସତ୍ୟ-ପରିଚୟ ପାଏ। ସିଏ ଆପଣାକୁ ତଥା ସାରା ଜଗତକୁ ଭଲ ପାଇ ଶିଖେ।

୧୫।୬।୫୫

ସଂସାରରେ ଅନେକ ଦେଶରେ ଅନେକ ଲୋକ ମଦ ପିଅନ୍ତି, ଅଫିମ ଖାଆନ୍ତି, ଗଞ୍ଜାଇ ଟାଣନ୍ତି। ଜଣେ ଜଣେ ଲୋକ ଅଛନ୍ତି, ଯେଉଁମାନେ କିଛି ନ ଖାଇ ଦିନେ ଅଧେ ରହିପାରିବେ, ଅଥଚ ବିଡ଼ି ବା ସିଗାରେଟ୍ ବିନା ଦଣ୍ଡେ ହେଲେ ଚଳିପାରିବେ ନାହିଁ। ଇଉରୋପ ଓ ଆମେରିକାରେ ପ୍ରତିଦିନ ହଜାର ହଜାର ଲୋକ ସିନେମା, ସର୍କସ ଓ ଥିଏଟର ଦେଖି ଯାଆନ୍ତି। କିଏ କାରଖାନାରେ କାମ କରେ, କିଏ ଅଫିସ କଚେରୀରେ ମୂଲ ଲାଗେ, କାମରେ ବ୍ୟସ୍ତ ରହି ସମୟ କଟିଯାଏ। କିନ୍ତୁ କାମରୁ ଫେରିବା

ମାତ୍ରକେ ସମସ୍ୟା, ଗୋଟେ ବୋଝ ପରି ମାଡ଼ିବସେ । ଅବସର ସମସ୍ୟା କପରେ କଟିବ, ତାହାର କୌଣସି ବୁଝିବାଟ ଦେଖାଯାଏ ନାହିଁ । ଯେଉଁ ମଣିଷ ଏହିପରି ଅବସର ସମସ୍ୟାକୁ ଭୟକରେ, ସେ ସିନେମା, ସର୍କସ ବା ଥିଏଟର ଦେଖିଯାଏ, ସମସ୍ୟା ଓ ଅବସରର ବୋଝରୁ ସେ ନିସ୍ତାର ପାଇଗଲା ବୋଲି ଭାବେ । ଥିଏଟରରେ କେଉଁ ନାଟକ ଅଭିନୀତ ହେଉଛି, ସିନେମା ଘରେ କେଉଁ ଚିତ୍ର ପ୍ରଦର୍ଶିତ ହେଉଛି, ଏ କଥା ନ ଜାଣି ମଧ୍ୟ ଅନେକ ସିନେମା ଓ ଥିଏଟର ଘରେ ଟିକେଟ୍ କାଟି ପଶନ୍ତି । ଏପରି ଅନେକ ଅନେକ ଦୃଷ୍ଟାନ୍ତ ମୁଁ ଇଉରୋପରେ ଦେଖିଛି । ସିନେମା ଦେଖି ବା ଥିଏଟର ଦେଖି ପାଞ୍ଚ କଥା ଦେଖିବାର ବା ଶୁଣିବାର ମନ ଥିଲେ ସିନା ମଣିଷ ଥିଏଟରର ନାଟକ ବା ସିନେମାର ଚିତ୍ର ବିଷୟରେ କିଛି ଜାଣିବାକୁ ଇଚ୍ଛା କରୁଥାନ୍ତା ! କେତେ ଅଣା ପଇସା ଦେଇ ଗୋଟାଏ ନିବୁଜ ଘରେ ଦୁଇ ଘଣ୍ଟା ସବୁ ଜଞ୍ଜାଳ ଓ ଦାୟିତ୍ୱ ଭୁଲି ବସିପାରିବାର ସୁଯୋଗ ମିଳିଲି, ତା' ଲାଗି ଏଇ ଯଥେଷ୍ଟ । ରାତିରେ ମଧ୍ୟ ଅନେକଙ୍କୁ ନିଦ ହୁଏ ନାହିଁ । ଦିନଯାକ ହାଡ଼ଭଙ୍ଗା ପରିଶ୍ରମ କରି ମଧ୍ୟ ମଣିଷ ରାତିରେ ବିଛଣାରେ ପଡ଼ି ଛଟପଟ ହୁଏ । ତା' ମନରେ ଶାନ୍ତି ନ ଥାଏ, ଜୀବନର ନାନା ଅତୃପ୍ତି ଓ ଅସଫଳତା ତାକୁ ଛଟପଟ କରେ, ରାତିରେ ବିଛଣା ତାକୁ ନିଆଁ ଗଦା ପରି ଲାଗେ । ଇଉରୋପରେ ଏସବୁ ଲୋକଙ୍କୁ ଶାନ୍ତି ଦେବା ଲାଗି ରାତି କ୍ଲବର ବ୍ୟବସ୍ଥା ଅଛି । ପଇସା ଦେଇ ଟିକେଟ କର, ରାତିଯାକ ସବୁ ଭୁଲି ମଉଜ କରିପାରିବ; ମଦ ପିଇପାରିବ; ନାଚ ଦେଖିପାରିବ; ଗୀତ ଓ ବାଦ୍ୟରେ, ରୂପ ଓ କାମୁକତାରେ ମନ୍ତ୍ରମୁଗ୍ଧ ନାଗସାପ ପରି ରାତିଯାକ ଖେଳି ପାରିବ; ନିଦ ନ ହେବାର ଅଶାନ୍ତିରୁ ପରିତ୍ରାଣ ମିଳିବ ।

ଜୀବନରୁ ପଳାଇଯିବାର ଏହିପରି ଅନେକ ବାଟ ଅଛି । ଦାୟିତ୍ୱ ଓ ଜୀବନକୁ ଏଡ଼ିଯିବାର ଅନେକ ରାସ୍ତା ଚତୁର ମଣିଷର ମୁଣ୍ଡକୁ ଯୁଟୁଛି । ଅଶ୍ଳୀଳ ଭାଷା କହିବା, ଅଶ୍ଳୀଳ ଦୃଶ୍ୟ ଦେଖିବା ଓ ମନ ଭିତରେ ଅଶ୍ଳୀଳ ଭାବନା ପୋଷଣ କରିବାରେ ଅନେକଙ୍କର ଗୋଟାଏ ପ୍ରକାରର ଆଗ୍ରହ ଥାଏ । ସମାଜର ନାନା ଦାୟିତ୍ୱ ଓ ଶୃଙ୍ଖଳାରେ ବନ୍ଧାହୋଇ ଅନେକ ମଣିଷ-

ଆପଣାର ଅସଲ ଅତୃପ୍ତିଗୁଡ଼ିକ ପ୍ରକାଶ କରିପାରନ୍ତି ନାହିଁ । ଟିକିଏ ଆଢୁଆଳକୁ ଚାଲିଗଲେ, ଟିକିଏ ମଉକା ମିଳିଲେ ସେମାନଙ୍କର ମୁହଁ ଖୋଲିଯାଏ । କୌଣସି ପ୍ରକାର ଅବଗୁଣ୍ଠନର ଅପେକ୍ଷା ନ ରଖି ସେମାନେ ନାନାପ୍ରକାର ଅକଥ୍ୟ କଥା ଓ ଅଶୋଭନୀୟ ଆଚରଣରେ ଖୁବ୍ ଆନନ୍ଦ ପାଆନ୍ତି । ଘଣ୍ଟାଏ, ଦି'ଘଣ୍ଟା ନିଜ ଭିତରେ ଅତୃପ୍ତିକୁ ଭୁଲିଯାଆନ୍ତି, ଠିକ୍ ଅଫିମିଆ ଯେମିତି ଅଫିମ ଖାଇ ଜୀବନର ଦହଗଞ୍ଜ ଭୁଲିଯାଏ । ଯେ କୌଣସି ନିଶା ଖାଇବା ପରି ଏ ମଧ୍ୟ ଗୋଟାଏ ପଳାୟନର ବାଟ । ଏହିସବୁ ପଳାୟନ ବାଟର ଆଶ୍ରୟ ନେଇ ଯିଏ ଦଉଡ଼ି ପଳାଏ, ମୁହୂର୍ତ୍ତିକ ଲାଗି ସେ ଟିକିଏ ଆନନ୍ଦ ପାଏ ସତ, କିନ୍ତୁ ଜୀବନର ବ୍ୟାପକ ଦୃଷ୍ଟିରୁ ତାକୁ କେବଳ ଦୁଃଖୀ ବୋଲି କହିବାକୁ ହେବ । ଆମ ଭିତରେ କି ଦୁଃଖ ଅଛି । କି କି ଅତୃପ୍ତି ଓ ଅସଫଳତାର ଗ୍ଳାନି ଆମର ଅନ୍ତର ଭିତରର ମଞ୍ଜ କାମୁଡ଼ି ଧରିଛି, ଯାହା ଫଳରେ କି ଅଶ୍ଳୀଳ କଥାରେ, ଅଶ୍ଳୀଳ ଆଚରଣରେ ଆମେ ଦଣ୍ଡେକର ଖୁସି ହେବା ପଛରେ ଗୋଡ଼ାଉଛୁ ? ଆଜି ଆମେ ସମସ୍ତେ ନିଜକୁ ଏଇ କଥା ପଚାରିବା ।

୧୬।୨।୫୫

ଜୀବନର ଦାୟିତ୍ୱକୁ ଏଡ଼ାଇବା ପାଇଁ ଜୀବନର ମୂଲ୍ୟକୁ ଯଥାର୍ଥଭାବରେ ବୁଝି ନ ପାରି ମଣିଷ ଜୀବନଠାରୁ ଦୂରକୁ ପଳାଏ, ଏଇ କଥା ମୁଁ କାଲି କହିଛି । ସେଇଥିଲାଗି ସେ ମଦ ପିଏ, ରାତି କ୍ଳବକୁ ଯାଏ, ନିଶା ଖାଏ । ସେଇଥିଲାଗି ସିଏ ପଦେ ଅକଥ୍ୟ କଥା କହିବାରେ ବା ଶୁଣିବାରେ ଏତେ ସନ୍ତୋଷ ପାଏ; ଗୋଟାଏ ଅଶ୍ଳୀଳ ଦୃଶ୍ୟ ଦେଖିବାକୁ ସେ ଏତେ ଆଗ୍ରହ ପ୍ରକାଶ କରେ । ଏସବୁ ଭିତରେ ବୁଡ଼ିରହି କ୍ଷଣେକ ପାଇଁ ସେ ଭାବେ, ଜୀବନଟା ବେଶ୍ ମଜାରେ କଟିଯାଉଛି । କିନ୍ତୁ ତା' କି ହୁଏ ?

ଜୀବନକୁ ଡରି ଜୀବନଠାରୁ ଦୂରକୁ ପଳାଇଲେ କେହି ଜୀବନର ସମସ୍ୟା ସମାଧାନ କରିପାରିବ ନାହିଁ । ଯିଏ ପଳାଇବ, ତା'ର ଭିତରେ ତାର

ବିବେକ ତାକୁ ଖାଇ ଗୋଡ଼ାଇବ । ଆପଣା ଭିତରର ଅସନ୍ତୋଷ ତାକୁ ସଦାସର୍ବଦା ସନ୍ତ୍ରସ୍ତ ଓ ବିବଶ କରି ରଖିବ । ମଣିଷର ଅସଲ ଦାୟିତ୍ୱକୁ ଫାଙ୍କିଦେଇ ମୁହୂର୍ତ୍ତିକର ଉତ୍ତେଜନାରେ ଭୁଲିରହିବା ଲାଗି ଇଉରୋପରେ ଅନେକ ବିଳାସସାମଗ୍ରୀ ଓ ବିନୋଦବ୍ୟସନର ଆୟୋଜନ ଅନୁଷ୍ଠାନ ରହିଛି । କିନ୍ତୁ ଯାଇ ୟୁରୋପରେ ପଚାରି, ସେଠି କିଏ ସୁଖୀ, କିଏ ସେଠି ପରିପୂର୍ଣ୍ଣ ଜୀବନର ଉପଭୋଗ କରିପାରିଛି ? ପେଟ ଓ ଶରୀରର କ୍ଷୁଧା ମେଣ୍ଟାଇବାର ସାମଗ୍ରୀ ଇଉରୋପରେ ଯେତିକି ଯେତିକି ବଢ଼ିଚାଲିଛି, ତାର ମନର ସନ୍ତାପ ଓ ଦୁଃଖ ସେତିକି ବଢ଼ି ଚାଲିଛି । ସ୍ନେହ, ପ୍ରେମ ଓ ଶ୍ରଦ୍ଧାଭକ୍ତି ଆମର ଏଇ ସଂସାରରେ ସେତିକି ସିଏ ନିଜକୁ ଏକୁଟିଆ ବୋଲି ଭାବୁଛି; ନିଜ ପ୍ରତି ଓ ଆପଣାର ପଡ଼ୋଶୀ ପ୍ରତି ତାର ଅବିଶ୍ୱାସ ସେତିକି ବଢ଼ିଚାଲିଛି । ଇଉରୋପର ସାହିତ୍ୟ, ଶିଳ୍ପକଳା, ସମାଜ-ବିଜ୍ଞାନ, ରାଜନୀତି ଆଉ ଦର୍ଶନ, ସବୁଠାରେ ଆଜି ଏହି ଦୁଃଖୀ ମଣିଷର ଆର୍ତ୍ତନାଦ ଶୁଣିବାକୁ ମିଳିବ । ବିଳାସ ଆଡ଼ମ୍ବରର ଇନ୍ଦ୍ରଭୁବନରେ ମଣିଷ ସେଠି ସୁଖୀ ହୋଇପାରୁ ନାହିଁ । ତାର ଆପଣାର ଅସନ୍ତୋଷର ନିଆଁ ତାକୁ ଆଜି ଗିଳି ରହିଛି ।

ଅଳ୍ପକରେ ସନ୍ତୁଷ୍ଟ ହୋଇଯିବା, ମୁହୂର୍ତ୍ତିକର ଫୁର୍ତ୍ତି ଆଉ ବିନୋଦନ ଲାଗି କୀଟ ପରି ଆପଣାକୁ କୁକଥା, କୁଦୃଶ୍ୟ ଓ କୁଆଚରଣର ନର୍ଦ୍ଦମାରେ ଲେଟାଇ ରଖିବା, ଏସବୁ ଆମ ଭିତରେ ଲୁଚି ରହିଥିବା ପଶୁ-ପ୍ରବୃତ୍ତିର ଫିକର । ଯିଏ ମଣିଷ, ଯିଏ ଜାଗ୍ରତ, ତାର ଭୋକ ଏଇ କ୍ଷଣିକର ଉପଭୋଗରେ ମେଣ୍ଟି ପାରିବ ନାହିଁ । ଯିଏ ଆଜି ସେ ଭୁଲ କରୁଛି, ଯିଏ ଜୀବନର ଶ୍ରେୟକୁ ଭୁଲି ଘଡ଼ିକର ବିନୋଦ-ସମ୍ଭାରେ ବିଦୂଷକ ପରି ବୁଲିବାକୁ ଆଗ୍ରହ ରଖୁଛି, ମୁଁ କହିବି ସେ ଆପଣା ଭୋକକୁ ମାରିଦେଉଛି । ସିଏ ଆପଣା ହୃଦୟର ଅସଲ ଦୁଆରକୁ କିଳି ଦେଇ ବସୁଛି । ବାହାରକୁ ଯେତେ ମଜା ଓ ଆନନ୍ଦ ପରି ଦେଖାଯାଉଥିଲେ ମଧ୍ୟ ଏସବୁ ଆମର ଭୋକକୁ ଭୁଲାଇ ରଖୁଛି, ଆମ ଭିତରର ଅସଲ ମଣିଷକୁ ଉପାସରେ ରଖୁଛି; ଆମ ଭିତରର ବିକାଶୋନ୍ମୁଖ ଫୁଲକୁ ଏହା ମଉଳାଇ ପକାଉଛି ।

ଉପନିଷଦରେ ମନ୍ତ୍ରଦ୍ରଷ୍ଟା ଋଷି ମଣିଷକୁ "ଅମୃତସ୍ୟ ପୁତ୍ରାଃ" ବୋଲି ସମ୍ବୋଧନ କରିଛନ୍ତି । ଆମେ ସମସ୍ତେ ଅମୃତର ସନ୍ତାନ । ଘଣ୍ଟାକର କାଠି-ଜୀବନରେ ଆମେ ସନ୍ତୁଷ୍ଟ ହୋଇପାରିବା ନାହିଁ । ରଙ୍ଗରସର ହାଟ ଭିତରେ କ୍ଷଣ କ୍ଷଣକେ ଆପଣାକୁ ବିକିଦେଇ, ହଜାଇଦେଇ ଆମେ ନିଜ ପ୍ରତି ଭାରି ଅନ୍ୟାୟ କରିବା । ଆମର ଆଗ୍ରହ, ଆମର ଚିନ୍ତା ଯେତିକି ବଡ଼ ହେବ, ଆମର ଜୀବନବଞ୍ଚିବା ସେତିକି ଗଭୀର ହୋଇପାରିବ । ଆମର ପ୍ରଭୁ ଯେତେ, ମନକୁ ସେତିକି ବଡ଼ କରି ଆମେ ତିଆରି କରିବା, ଏ କଥା ଓଡ଼ିଶାର ଆଦିବାସୀ କବି ଭୀମ ଭୋଇ କହିଛନ୍ତି । ଯେତିକି ବଡ଼ ଆଦର୍ଶକୁ ଓ ଯେତିକି ବ୍ୟାପକ ଜୀବନକୁ ଆମେ ଆପଣାର ବୋଲି ଗ୍ରହଣ କରିବା, ଆପଣାର ଆଗ୍ରହ, ଚିନ୍ତା ଓ ଆଚରଣକୁ ଆମେ ସେତିକି ବଡ଼ କରିବାର ଚେଷ୍ଟା କରୁଛୁ କି ? ଆମେ ଆଜି ଏଇ କଥାକୁ ଗମ୍ଭୀର ଭାବରେ ଚିନ୍ତା କରିବା ।

୨୦।୨।୬୪

ଗରୁଡ଼ର ଜନ୍ମ ବିଷୟରେ ପୁରାଣରେ ଗୋଟିଏ ଚମତ୍କାର କଥା ଅଛି । ଗରୁଡ଼ ଜନ୍ମ ହେବା ମାତ୍ରକେ କହିଲା ଭୋକ କରୁଛି । କୌଣସି ପ୍ରକାରର ଖାଦ୍ୟ ଓ ପାନୀୟରେ ତାର ଭୋକ ଶାନ୍ତ ହେଲା ନାହିଁ । ଆକାଶରେ ଜଳୁଥିବା ଜହ୍ନକୁ ହାତ ବଢ଼ାଇ ସେ କହିଲା, "ମା, ମତେ ସେଇ ଫଳଟି ଆଣି ଦେ, ମୁଁ ଖାଇବି ।" ସେଇଠି ଜଣେ ଋଷି ଥିଲେ, କହିଲେ, "ଏଇ ଶିଶୁଟିର କ୍ଷୁଧା ମହାନ୍; ଏ ଏକ ମହାନ୍ ଶିଶୁ ।"

ପୁରାଣରେ ଗପ ଛଳରେ ଆମକୁ ବଡ଼ ବଡ଼ ଜୀବନ-ବାକ୍ୟର ଇଙ୍ଗିତ ଦିଆଯାଇଛି । ଗରୁଡ଼ର ଏଇ ଭୋକର କାହାଣୀ ସେଇପରି ଉପଲକ୍ଷ ମାତ୍ର । କିନ୍ତୁ ତାରି ଜରିଆରେ ଆମକୁ ଜୀବନର ଏକ ବଡ଼ ସତ୍ୟ କଥା କହି ଦିଆଯାଇଛି । ଆମର କ୍ଷୁଧା ମହାନ୍ ହେବ, ତାହାହେଲେ ଯାଇ ଆମର ଜୀବନ ମହାନ୍ ହୋଇପାରିବ । ଯାହାର ଭୋକକୁ ଯିଏ ଯେତିକି ଗଭୀର ଓ ବ୍ୟାପକ କରିପାରିଛି, ଆପଣା ଜୀବନକୁ ସେ ସେତିକି ଗଭୀରତା ଓ

ବ୍ୟାପକତା ଦେଇପାରିବ, ଜଗତ ଓ ଜୀବନର ଆନନ୍ଦକୁ ସିଏ ସେତିକି ଗମ୍ଭୀର ଓ ସାର୍ଥକ କରି ଉପଭୋଗ କରିପାରିବ ।

ଆମ ଆଗ୍ରହକୁ ଆମେ କେତେ ଦୂର ମହାନ୍ କରିପାରିଛେ, ଆମ ଜୀବନର କ୍ଷୁଧାକୁ ଆମେ କେତେ ଦୂର ବ୍ୟାପକ ଓ ଗମ୍ଭୀର କରିପାରିଛେ ? କୌଣସି ଆଗ୍ରହ ଖରାପ ନୁହେଁ । କୌଣସି ଆଗ୍ରହକୁ ହଠାତ୍ ଭଲ ବା ମନ୍ଦ ବୋଲି କହିବା ଠିକ୍ ହେବ ନାହିଁ । ଆମ ସମସ୍ତଙ୍କଠି ଭଲ ପାଇବାର ଆଗ୍ରହ ଅଛି, ତାକୁ ମୁଁ ନିଶ୍ଚୟ ସ୍ୱୀକାର କରିବି, ସମ୍ମାନ ଦେବି । କିନ୍ତୁ ଆମର ମନର ଯୋଗ୍ୟତା ଓ ଲୋକର ବ୍ୟାପକତା ଅନୁସାରେ ଆମେ ଏଇ ଭଲ ପାଇବାର ଆଗ୍ରହକୁ ଗମ୍ଭୀର ବା ଅଗମ୍ଭୀର କରି ଦେଇପାରିବା । ଆମ ଭିତରର ଭଲ ପାଇବା ଗୁଣ ଗମ୍ଭୀରରୁ ଗମ୍ଭୀରତର ହୋଇ ଦିନେ ସାରା ପୃଥିବୀର ମଣିଷଙ୍କୁ ଆପଣା ହୃଦୟ ଭିତରେ ବାନ୍ଧିରଖି ପାରିବାର ଶକ୍ତି ଅର୍ଜନ କରିପାରିବ । ପୁଣି ଉଚିତ ଲୋକର ଉଚିତ ବାତାବରଣ ନ ପାଇଲେ ଏଇ ଭଲ ପାଇବା ଗୁଣକୁ ଆମେ କ୍ଷୁଦ୍ର ମୋହ ଓ କାମାତୁରତା ଭିତରେ ବ୍ୟର୍ଥ ମଧ୍ୟ କରି ଦେଇପାରିବା । ଭଲ ପାଇବାର ରସ ଆସ୍ୱାଦନ କରିବାର ବାହାନାରେ ଆମେ ଲାଙ୍ଗୁଡ଼ାପୋକ ପରି ନର୍ଦ୍ଦମାର ପଙ୍କପାଣି ଭିତରେ ସଡ଼ସଡ଼ ହେଉଥିବା ।

ଆମେ ସମସ୍ତେ ଅଜଣାକୁ ଜାଣିବା, ଅଚିହ୍ନାକୁ ଚିହ୍ନିବା, ଏହିପରି ଗୋଟାଏ ଆଗ୍ରହ ଆମ ସମସ୍ତଙ୍କ ଭିତରେ ଅତି ପିଲାଟି ଦିନରୁ ଅଛି । ସୁସ୍ଥ ଉପାୟରେ ଆମର ଏହିସବୁ ଆଗ୍ରହକୁ ତୃପ୍ତ କରିବାର ବାତାବରଣ ଆମକୁ ସୃଷ୍ଟି କରିବାକୁ ହେବ । ତା ନ ହେଲେ ନାନା ନିକୃଷ୍ଟ ଉପାୟରେ ଆମର ଅନ୍ତର-ମନ ଏହି ଆଗ୍ରହର ତୃପ୍ତିରେ ଲାଗିଯିବ । ଆମ ଭିତରେ ଏହି ଖୋଜିବାର ଆଗ୍ରହକୁ ଉଚିତ ରାସ୍ତା ଦେବାକୁ ହେବ । ଜୀବନରେ ଏହି ଜିଜ୍ଞାସା ରହିବା ଅତି ସ୍ୱାଭାବିକ । ଯିଏ ନିଜ ଭିତରର ଜିଜ୍ଞାସୁ ଆଗ୍ରହ ଲାଗି ଉଚିତ କ୍ଷେତ୍ର ତିଆରି ନ କରୁଛି, ତାର ଅସଲ ମନ ନାନା ଅରୁଚିକର ଉପାୟରେ ଆପଣାର ତୃପ୍ତିଲାଗି ଚେଷ୍ଟା କରୁଛି । ସେତିକିବେଳେ ଅକଥ୍ୟ କଥା

ଶୁଣିବା, ଅଦର୍ଶନୀୟ ଦୃଶ୍ୟ ଦେଖିବା ଓ ଅଶୋଭନୀୟ ଆଚରଣ କରିବାକୁ ଆମକୁ ଏତେ ଭଲ ଲାଗୁଛି । ଦୁନିଆର ସବୁ ଗୋଳପାଣି ଆମକୁ ସେତିକବେଳେ ସୁହାଉଛି । ଏସବୁଥିରୁ ଆପଣାକୁ ଦୂରେଇନେବା ଲାଗି ଏଇ ଗୋଟାଏ ବାଟ ରହିଛି—ଆମେ ଆମର ଦୃଷ୍ଟିକୁ ଉଚ୍ଚତର କରିନେବା, ଆମର ଆଗ୍ରହକୁ ଶୁଦ୍ଧତର କରିବା, ଆମର ବିବେକକୁ ଆମେ ମହାନ୍ କରିବା; ତା'ହେଲେ ଆମର ଜୀବନ-ଭୂମି ମହାନ୍ ହୋଇଯିବ ।

୨୧।୨।୫୬

ଆମ ଦେଶରେ ଜନସାଧାରଣଙ୍କ ଲାଗି ସାଧାରଣ ଅନୁଷ୍ଠାନମାନ ଅଛି । ସାଧାରଣଙ୍କର ସେବା କରିବା ଲାଗି ସେସବୁ ତିଆରି ହୋଇଛି । କିନ୍ତୁ ଏପର୍ଯ୍ୟନ୍ତ ଏସବୁ ସାଧାରଣଙ୍କର ଅନୁଷ୍ଠାନ ହୋଇପାରି ନାହିଁ । ଏଠିକାର କର୍ମକର୍ତ୍ତାମାନେ ସରକାରରୁ ଦରମା ପାଉଛନ୍ତି । କିନ୍ତୁ ଯେଉଁ ସାଧାରଣ ଲୋକଙ୍କର ପ୍ରତିନିଧି ଆଜି ସରକାର ଚଳାଉଛନ୍ତି, ସେହି ସାଧାରଣଙ୍କର ସେବା ଦୃଷ୍ଟିରୁ କାମ କରିବା ଆମ ଦେଶରେ କ୍ୱଚିତ୍ ଦେଖାଯାଏ । ହଁ, ଆମ ଦେଶରେ ମଧ୍ୟ ରୋଗବଇରାଗରେ ଡାକ୍ତର ମହଜୁଦ୍ ଅଛନ୍ତି । କିନ୍ତୁ ସେ କେବଳ କେତେ ଜଣଙ୍କ ପାଇଁ । କିଏ ଲାଞ୍ଚ ଦେଇ ସେବା ଯତ୍ନ ପାଉଛି । କିଏ ବ୍ୟକ୍ତିଗତ ଆତ୍ମୀୟତାର ସୁଯୋଗ ନେଇ ପାଉଛି, କିଏ ବଡ଼ ଚାକିରିଆ ବା ହାକିମଙ୍କ ଲାଞ୍ଜ ଧରି ପାଉଛି । କିନ୍ତୁ ମଣିଷକୁ ମଣିଷ ହିସାବରେ ସମ୍ମାନ ଦେବା, ତାର ଆବଶ୍ୟକତା ବେଳେ ତା'ର ଉଚିତ ଯତ୍ନ ନେବା, ଏକଥା ଆମ ଦେଶର ରକ୍ତରେ ଏପର୍ଯ୍ୟନ୍ତ ମିଶି ନାହିଁ । ଆମ ସମାଜଟା ସେମିତି ଅସମ୍ମାନ ଓ ଅପମାନଜନକ ବ୍ୟାବସ୍ଥାରେ ଗଢ଼ାଯାଇଚି । ଆମ ସମାଜରେ ମଣିଷକୁ ମଣିଷର ସମୁଚିତ ସମ୍ମାନ ଦିଆଯାଇ ନାହିଁ ।

ଆମର ଅମୁକ ବାବୁ ବା ଅମୁକ ଡାକ୍ତରଙ୍କ ସହିତ ଚିହ୍ନା ଅଛି, ଆମେ ଖଣ୍ଡେ ସଫା ଲୁଗା ପିନ୍ଧିଛେ ବା ଆମେ ପାଠ ପଢ଼ି ଡିଗ୍ରୀ ହାସଲ କରିଛେଁ । ତେଣୁ ଆମେ ଯେତେବେଳେ ଅଭାବରେ ପଡ଼ି ଡାକ୍ତର ପାଖକୁ ଯିବା,

ସେତେବେଳେ ଭାରି ଭଦ୍ରତାର ସହିତ ସମସ୍ତେ ଆମ କାମ କରିବାକୁ ଆଗଭର ହୋଇ ଆସିବେ, ଏଇ କଥା ଆଜି ଆମ ଦେଶରେ ଚାଲୁଛି । କିନ୍ତୁ ଏଥିକରେ ମୋ କାମଟା ସିନା ଚାଲିଯାଉଛି, କିନ୍ତୁ ମୂଳ ସମସ୍ୟାର ସମାଧାନ ହୋଇପାରୁ ନାହିଁ, ସମାଜର ଦୁଃଖ ଯାଉ ନାହିଁ ।

ଗୋଟାଏ ପାଖରେ ଉପରେ ଲୋକଙ୍କର ଖୋସାମଦ ହେଉଛି, ଅନ୍ୟ ପାଖରେ ତଳେ ଥିବା ଲୋକଙ୍କର ବେଇଜ୍ଜତି କରାଯାଉଛି । ଆମେ ସମସ୍ତେ ଉପରବାଲାଙ୍କୁ ହାତ ଯୋଡ଼ୁଛେ, ତଳବାଲାଙ୍କୁ ତୋଡ଼ ଦେଖାଉଛେ । ଯେଉଁ ଯୁବକ ଦେଶରେ ଏହିପରି ଅସମ୍ମାନଜନକ ସ୍ଥିତିକୁ ମାନିନେଉଛି, ସେ ଯେତେ ବଡ଼ଲୋକୀ କରି ଧନ କାଟୁଥାଉ ପଛକେ, ତା'ର ଜୀବନ ନାହିଁ ବୋଲି କହିବାକୁ ହେବ । ତା'ର ତାରୁଣ୍ୟ ମରିଯାଇଛି । ତେଣୁ ସେ ଆପଣାର ଅତି କ୍ଷୁଦ୍ର ନିଜ ସ୍ୱାର୍ଥର ସଂସାରଟି ଛଡ଼ା ବାହାରକୁ କିଛି ଦେଖିପାରୁ ନାହିଁ । ଆମେ ମଣିଷ ହୋଇ ଏ ସମାଜକୁ ବଦଳାଇବୁ, ଏ ଅବସ୍ଥାକୁ ଭାଙ୍ଗିବୁ, ଆମର ପାଠ ଓ ଆମର ବିଦ୍ୟା ଆମକୁ ଏଇ ବଳ ଦେଇଯାଉ । ଆମେ କାହାରିକୁ ଖୋସାମଦ କରିବୁ ନାହିଁ ବା କାହା ଉପରେ ଧମକାଣ ଚମକାଣ ଦେଖାଇବୁ ନାହିଁ । ବିସମତାରେ ପୂରି ରହିଥିବା ଆମର ବର୍ତ୍ତମାନ ସମାଜରେ ବାବୁ ହୋଇ ବସିବା ଅପେକ୍ଷା ଆମେ ଏକ ଦରିଦ୍ର, ଅଥଚ ସମାନ ସମାଜରେ ମୂଲିଆ ହୋଇ ରହିବାକୁ ଅଧିକ ପସନ୍ଦ କରିବା ଭଳି । ଆମେ ନମ୍ର ହେବା, ଆମେ ଆଗ ଆମର କର୍ତ୍ତବ୍ୟ କରିବା; ଯିଏ ଅତି ଅବିନୀତ ଭାବରେ ଆମକୁ ଧମକାଇବାକୁ ଆସିବ, ଆମେ ତା'ର କଥା ଶୁଣିବାକୁ ସିଧା ମନା କରିଦେବା ।

ଆମ ଦେଶର ଶିକ୍ଷକ ଓ ଡାକ୍ତର ଆଜି ଦେବତୁଲ୍ୟ ମଣିଷ ହୋଇଥାନ୍ତେ, ଦେବତୁଲ୍ୟ ଶ୍ରଦ୍ଧା ଓ ଆଦର ପାଉଥାନ୍ତେ । ଆମେ ଯେତେବେଳେ ବଡ଼ ହୋଇ ସମାଜର କର୍ମକ୍ଷେତ୍ରରେ ପ୍ରବେଶ କରିବା, ସେତେବେଳେ ଆମେ ଆଜିକାର ଡାକ୍ତର ପରି କଦାପି ହେବା ନାହିଁ । କୌଣସି ଅନ୍ୟାୟ ଅସମ୍ମାନ କରିବା ନାହିଁ କି ଅନ୍ୟାୟ ଅସମ୍ମାନ ସହିବା ନାହିଁ । ଆମେ ମଣିଷର ସମ୍ମାନ ଦେବା ଓ ମଣିଷର ସମ୍ମାନ ପାଇବା ।

୨୬।୨।୫୫

ସୋପାନ ଆରମ୍ଭରେ ମୁଁ ସବୁଦିନେ ଯେଉଁ କାଗଜ ଖଣ୍ଡିକ ପଢ଼ି ଶୁଣାଉଛି, ତା' ବିଷୟରେ ସମସ୍ତଙ୍କ ଭିତରେ କ୍ରମେ ଅଧିକରୁ ଅଧିକ ଆଗ୍ରହ ଯେ ପ୍ରକାଶ ପାଉଛି, ତାହା ମୁଁ ବେଶ୍ ଲକ୍ଷ୍ୟ କରିପାରୁଚି । ପ୍ରତ୍ୟେକ ଦିନ ମୁଁ କ'ଣ ଲେଖୁଛି, କାହିଁକି ଲେଖୁଛି, କେଉଁ କଥା ବା ଘଟଣାର ସୂଚନା ଦେଇ ମୁଁ ତାହା ଲେଖୁଛି, ଏପରି କୌତୂହଳ ଅନେକଙ୍କଠାରେ ପ୍ରକାଶ ପାଉଛି । ଏହା ଆଶାର କଥା । ତୁମେମାନେ ଯେ ଏଇ ଲେଖାଗୁଡ଼ିକ ପ୍ରତି ଏତିକି ମନଧ୍ୟାନ ଦେଇପାରୁଛ, ସେଇଥିଲାଗି ମୁଁ ସମସ୍ତଙ୍କ ପାଖରେ ନିଶ୍ଚୟ କୃତଜ୍ଞ ରହିବ ।

ସେଦିନ ମୋତେ ଖୁବି କ୍ଳାନ୍ତ ଲାଗୁଥିଲା; ଶୋଇ ପଡ଼ିଲି । ଲେଖିବାକୁ ସମୟ ପାଇଲି ନାହିଁ । ତେଣୁ ସୋପାନ ଆରମ୍ଭରେ ସେଦିନ ମୁଁ କିଛି ପଢ଼ି ଶୁଣାଇପାରିଲି ନାହିଁ । ଏହି ଘଟଣାଟି ବିଷୟରେ ତୁମମାନଙ୍କ ମନରେ ଅନେକ କଳ୍ପନାଜଳ୍ପନା ଚାଲିଛି; ଏପରି ସୂଚନା ମଧ୍ୟ ମୁଁ ପାଇଛି । ମୁଁ ତ ସବୁଦିନେ କିଛି ନା କିଛି ପଢ଼େ, ସେଦିନ କାହିଁକି ପଢ଼ିଲି ନାହିଁ, ଏଇଟା ଅନେକଙ୍କୁ ବେଶ୍ ଧନ୍ଦାରେ ପକାଇଦେଇଛି । ଏଇଥିରୁ ଜଣାପଡ଼ୁଛି, ପ୍ରତ୍ୟେକ ଦିନ କିଛି ପଢ଼ି ଶୁଣାଇବା ଯେପରି ମୋର ଅଭ୍ୟାସରେ ପଡ଼ି-ଯାଇଛି, ପ୍ରତ୍ୟେକ ଦିନ କିଛି ଶୁଣିବା ମଧ୍ୟ ତୁମମାନଙ୍କର ବି ଅଭ୍ୟାସ ହୋଇଯାଇଛି । ତେଣୁ ଦିନେ ସେଇଟା ନ ଶୁଣିଲେ ତୁମମାନଙ୍କୁ ଗୋଟାଏ ବ୍ୟତିକ୍ରମ ପରି ଲାଗୁଛି ।

ମୁଁ ଏମିତି ଗୋଟାଏ ଗୋଟାଏ କାହିଁକି ପଢ଼ୁଛି ? ଯାହା ଲେଖୁଚି ତା'ର ଅର୍ଥକୁ ଭଲକରି ବୁଝାଇ ଦେଉ ନାହିଁ କାହିଁକି ? ତା' ବିଷୟରେ ସୋପାନରେ ଆଲୋଚନା ହେଉ ନାହିଁ କାହିଁକି ? ମୁଁ ଏ ସବୁ ପ୍ରଶ୍ନର କି ଉତ୍ତର ଦେବି ? ବଢ଼ିଆ ବଢ଼ିଆ ବିଷୟ ବାଛି ସୋପାନରେ ଗୋଟାଏ ଗୋଟାଏ ବକ୍ତୃତା ଦେବା ମୋର ଇଚ୍ଛା ନୁହେଁ । ବଡ଼ ବଡ଼ କଥା କହି

ତୁମମାନଙ୍କୁ ମୋହିତ କରିବାରେ ମୋର ମୋଟେ ଉତ୍ସାହ ନାହିଁ । ମୁଁ ତ ଦିନରାତି ବକ୍ତୃତା ଦେଉଛି, ଦିନରାତି ପାଟି କରୁଛି । ଯେତେବେଳେ ତୁମେ ଯାହା ଶୁଣୁଛ, ସେସବୁ ତୁମେ ମୋରି ପାଟି ଦେଇ ଶୁଣୁଛ । ମଣିଷ ଖାଲି, ଆପଣାର ସବୁ କଥା ସେ ଗୋଟାଏ ବଡ଼ପାଟି କରି କହିଦେବ ବା ଗୋଟାଏ ବକ୍ତୃତା ଝାଡ଼ି ଶେଷ କରିଦେବ । କିନ୍ତୁ ସେ ଚେଷ୍ଟା ତାର ସଫଳ ହୁଏ ନାହିଁ । ପାଟିତୁଣ୍ଡର କୋଳାହଳ ଓ ବଡ଼ିମା ଭିତରୁ ମଣିଷ ଯେତେବେଳେ ଅପସରି ଆସେ, ନୀରବ ହୋଇ, ନିଶ୍ଚିନ୍ତ ହୋଇ ଯେତେବେଳେ ସେ ଆକାଶର ତାରାକୁ ଚାହିଁ ରହିବାକୁ ଭଲ ପାଏ, ଚାରିଆଡ଼େ ବ୍ୟାପିରହିଥିବା ନୀରବ ଶୂନ୍ୟ ଭିତରେ ଯେତେବେଳେ ସେ ଆପଣାର ଆଖି, କାନ, ମନ, ଅନ୍ତର ସବୁ ଖୋଲିଦିଏ, ସେତିକିବେଳେ ସେ ଅନେକ ସତ୍ୟର ପରିଚୟ ପାଏ; ଆପଣାକୁ ଓ ଅନ୍ୟ ସମସ୍ତଙ୍କୁ ଅଧିକ ସତ୍ୟ ରୂପରେ ଦେଖିବାର ସୁଯୋଗ ପାଏ । ମୁଁ ଏଠି ଆମ ସମାଜରେ ଜଣେ ହୋଇ ଅଛି । ସମସ୍ତଙ୍କ ସହିତ ମିଳିମିଶି ରହିଲାବେଳେ, କଥା କହୁଥିଲାବେଳେ ହୁଏତ ମୋର ମନର ସବୁ ବିଚାର, ହୃଦୟର ସବୁ କଥା ମୁଁ କହି ଦେଇପାରୁ ନାହିଁ । କୋଳାହଳରୁ ଦୂରକୁ ଯାଇ ହୁଏତ ମୁଁ ଅନେକ ଦିନ ଅନେକ ମୂଲ୍ୟବାନ ରତ୍ନ ସଂଗ୍ରହ କରିପାରୁଛି । ଆମ ସମାଜ ଓ ଆମ ଜୀବନ ବିଷୟରେ ସେତିକିବେଳେ ମୁଁ ଅଧିକ ଗଭୀର କରି ଭାବିପାରୁଛି । ସେସବୁ ବିଚାରକୁ ସମସ୍ତଙ୍କ ଆଗରେ ବାଢ଼ି ଥୋଇବାକୁ ମୁଁ ମୋର କର୍ତ୍ତବ୍ୟ ବୋଲି ମନେ କରୁଛି । ମୋର ଆଶା, ଏଥିରେ ସମସ୍ତେ ଉପକୃତ ହେବେ ।

**୨୪।୨।୫୫**

ପ୍ରାୟ ମାସେ ହେଲା ଓଡ଼ିଶାରେ ବିନୋବାଜୀଙ୍କର ପଦଯାତ୍ରା ଆରମ୍ଭ ହୋଇଛି । କ୍ରମେ ସେ ଆମର ଅଧିକରୁ ଅଧିକ ନିକଟବର୍ତ୍ତୀ ହୋଇ ଆସୁଛନ୍ତି । ମୁଁ ବି ଅନୁମାନ କରିପାରିଛି, ଆମେ ମଧ୍ୟ କ୍ରମେ ତାଙ୍କ ବିଚାରର ଅଧିକରୁ ଅଧିକ ନିକଟବର୍ତ୍ତୀ ହୋଇଆସୁଛେଁ । ଏ କଥାଟା ଠିକ ଆମର ସମୁଦ୍ର ଦେଖିବା ପରି । ଆମ ଭିତରୁ ଅନେକେ ଆଗରୁ ସମୁଦ୍ର ଦେଖି ନ ଥିଲେ । ସାଙ୍ଗସାଥୀଙ୍କ—

ଠାରୁ ସମୁଦ୍ର ବିଷୟରେ କେବଳ ଶୁଣିଥିଲେ । କିଏ କହୁଥିଲା ସମୁଦ୍ରଟା ଏମିତି, କିଏ କହୁଥିଲା ସେମିତି । କିନ୍ତୁ ତାହା ଖାଲି ନ ଦେଖିଲା ଓଟର କଳ୍ପନା କଲା ପରି । ସେଥିରେ ମନବୋଧ ହେଉ ନ ଥିଲା । ଯେଉଁ ଦିନ ପ୍ରଥମ କରି ଆମେ ସମୁଦ୍ର ଦେଖିଲେ, ଯେଉଁ ଦିନ ସେ ବିଶାଳ ଆକାଶ ଓ ବିରାଟ ବାଲିବେଳାର ବନ୍ଧନୀ ଭିତରେ ଉଚ୍ଛ୍ୱସିତ ନୀଳ-ପର୍ବତର ପ୍ରଥମ ଦର୍ଶନ କଲେ, ସେଦିନ ସମୁଦ୍ର ବିଷୟରେ ଶୁଣିଥିବା କଥା କୁଆଡ଼େ ପାସୋର ଗଲା । ବିନୋବା ବିଷୟରେ ଖବରକାଗଜ ଓ ଲୋକମୁହଁରୁ ଆମେ ଅନେକ କଥା ଶୁଣିଛେ । କେଉଁଠି ଚେଲା ମୁହଁରୁ ବିନୋବାର ଭାବବିହ୍ୱଳ ସ୍ତୁତି ଶୁଣୁଥିଲେ, କେଉଁଠି ସନ୍ଦେହୀ ସମାଲୋଚକ ମୁହଁରେ ବିନୋବାର ଅନୁଦାର ସମାଲୋଚନା ହିଁ ଶୁଣୁଥିଲେ; କିନ୍ତୁ ବର୍ତ୍ତମାନ ଆମେ ବିନୋବାର ଅନେକ ପାଖକୁ ଆସିବାର ସୁଯୋଗ ପାଇଛେ । ସବୁଦିନେ ଆମର ଅତି ପାଖରେ ଓଡ଼ିଶାର କୌଣସି ନା କୌଣସି ସ୍ଥାନରେ ତାର କଥା ଶୁଣିବାକୁ ମିଳୁଚି । ଆମେ ନିଜେ ଆପଣା କାନରେ ତାହା ଶୁଣୁଚେ । ଆପଣା ବିଚାରରେ ସେସବୁ ବିଚାର କରିବାର ଅବସର ଆମକୁ ମିଳୁଛି । ଆମେ କେବଳ ଭକ୍ତ ହୋଇ ଆତୁର ଭାବପ୍ରବଣ ହୋଇଯିବା ନାହିଁ ବା କେବଳ ସମାଲୋଚକ ବୋଲାଇ ମାଟି ସହିତ ମୁକ୍ତାକୁ ଫିଙ୍ଗିଦେବା ନାହିଁ । ଆମେ ବିଚାର କରିବା, ଆମେ ଗ୍ରହଣ କରିବା, ଆମେ ଶ୍ରଦ୍ଧା ରଖିବା, ଆମେ ନମ୍ର ହେବା, ଆମେ ଜୀବନର ରାଜଦାଣ୍ଡରେ ଭଗବାନଙ୍କର ଆଶୀର୍ବାଦ ନେଇ ଆଗକୁ ଚାଲିବା ।

ବିନୋବାଜୀ ମଧ୍ୟ ଓଡ଼ିଶାରେ ସେଇ କଥା କହି ସାରିଲେଣି । ବାହାରେ ସେ ଯାହାକୁ ଭୂମିକ୍ରାନ୍ତି ବୋଲି କହୁଛନ୍ତି, ତାର ପ୍ରଧାନ ଅର୍ଥ ହେଉଛି ବିଚାର-କ୍ରାନ୍ତି । ବିଚାରର ପରିବର୍ତ୍ତନ କରିବାକୁ ହେଲେ ଆଗ ମନ ଭିତରୁ ସମସ୍ତ ପ୍ରକାର ଭୟ ଦୂର କରିବାକୁ ହେବ । ଆମେ ସମାଜରୁ ଯେପରି ବାବୁମାନଙ୍କର ସତ୍ତା ବା ଶାସନ ଲୋପ କରିଦେବା, ଠିକ୍ ସେମିତି ବାବାର ସତ୍ତା ଲୋପ କରିଦେବାକୁ ବିନୋବାଜୀ ଆମକୁ କହି ସାରିଲେଣି । ଯିଏ ଭଗବାନଙ୍କର ଶାସନ ଉପରେ ବିଶ୍ୱାସ କରେ, ସେ ଅନ୍ୟ କୌଣସି ସତ୍ତା ପାଖରେ ମୁଣ୍ଡ ନୁଆଁଇବ ନାହିଁ । ଭଗବାନଙ୍କର ଶାସନ ଚାଲିବ ଅର୍ଥାତ୍

ବିବେକର ଶାସନ ଚାଲିବ । କେହି କାହାରି ପାଖରେ ଅଧୀନ ହୋଇ ରହିବ ନାହିଁ, କାହାରିକୁ ଅଧୀନ କରି ରଖିବ ନାହିଁ । ପ୍ରତ୍ୟେକ ଆପଣାକୁ ତଥା ଅପରକୁ ସମ୍ମାନ କରି ଶିଖିବ । ତାହା ହେଲେ ମଣିଷ ମଣିଷ ଭିତରେ ଶ୍ରଦ୍ଧାର ସମ୍ପର୍କ ରହିବ, ମଣିଷ ନମ୍ର ହେବ, ମଣିଷ ଜୀବନରେ ଓ ବ୍ୟବହାରରେ ଆମୂଳ ପରିବର୍ତ୍ତନ ହୋଇଯିବ । ବିନୋବାଜୀ ଆମକୁ ଆମର ବିରାଟ କର୍ତ୍ତବ୍ୟ ସୂଚାଇଦେବାକୁ ଆସିଛନ୍ତି । ଭୂମିଦାନ ଆନ୍ଦୋଳନ ଏଥିରେ ଉପଲକ୍ଷ ହୋଇଛି । ଶାଳଗ୍ରାମ ଭିତରେ ଭକ୍ତ ଭଗବାନଙ୍କର ଅଗାଧ କଳ୍ପନା କଲା ପରି ଭୂମିଦାନ ଓ ଭୂମି ବିତରଣର କାର୍ଯ୍ୟକ୍ରମ ଭିତରେ ଗୋଟିଏ ମହତ୍ତର ଜୀବନ-ଦର୍ଶନର ଆହ୍ୱାନ ନିହିତ ରହିଛି । ଆମେ ଶ୍ରଦ୍ଧାର ସହିତ ଏହି ଦର୍ଶନର ବିଚାର କରିବା; କିନ୍ତୁ ସେଥିଲାଗି ଆଗ ଆପଣାକୁ ନିର୍ଭୟ କରିବାକୁ ହେବ, ଆପଣାକୁ ଶୁଦ୍ଧ କରି ରଖିବାକୁ ହେବ । ବିନୋବା-ଜୀବନର ଚାଲିର ସାଧନା ଆମକୁ ଏକ ସାଧନାମୁଖୀ ଜୀବନ ଲାଗି ପ୍ରବୃତ୍ତ କରାଉ ।

୩।୩।୫୪

ଯୁଗ ସହିତ ତାଳ ମିଳାଇ ଚାଲିବାକୁ ବସିଲେ ଆମେ ଯୁଗକୁ ବଦଳାଇ ପାରିବା ନାହିଁ । ଏ ଯୁଗର ଯେଉଁସବୁ ଅନ୍ୟାୟକୁ କୌଣସି ପ୍ରକାରେ ସହ୍ୟ କରିବା ଉଚିତ ନୁହେଁ, ସେସବୁକୁ ଦୂର କରିବାକୁ ହେଲେ ଆମର ମନକୁ ଆଗ ବଦଳାଇବାକୁ ପଡ଼ିବ । ଯୁଗର ସୁନାପୁଅ ହେବାକୁ ଯେଉଁମାନେ ଜୀବନର ଉଦ୍ଦେଶ୍ୟ ବୋଲି ଧରି ନେଇଛନ୍ତି, ସେମାନେ ବେଶ୍ ଖୁସିରେ ଅଛନ୍ତି, ଖୁସିରେ କାଳ କାଟୁଛନ୍ତି । ଜୀବନର ସବୁ ଉପଭୋଗ ସେଇମାନଙ୍କ ଭାଗ୍ୟରେ ଯୁଟୁଛି । କିନ୍ତୁ ସେମାନେ କଦାପି ଯୁଗକୁ ବଦଳାଇ ପାରିବେ ନାହିଁ । ସେମାନେ ଦୁର୍ବଳ । ସେମାନଙ୍କର ତାରୁଣ୍ୟ ଅଳ୍ପକରେ ସନ୍ତୁଷ୍ଟ ହୋଇ ସାରିଲାଣି; ମନ ଭିତରେ ସେମାନେ ବୁଢ଼ା ହୋଇ ବସିଲେଣି ।

ଯୀଶୁଖ୍ରୀଷ୍ଟଙ୍କଠାରୁ ଆରମ୍ଭ କରି ଗାନ୍ଧି, ବିନୋବା ପର୍ଯ୍ୟନ୍ତ କେହି ସମାଜର ସୁନାପୁଅ ହେବାର ବିଳାସ କରି ନାହାନ୍ତି । କେହି ପ୍ରଚଳିତ ସମାଜକୁ ମାନି

ନେବାକୁ ରାଜି ହୋଇ ନାହାନ୍ତି । ସମାଜର ଅନ୍ୟାୟ ଓ ଅବିଚାରର ଦୂର କରିବା ଲାଗି ସେମାନେ ସମାଜର ସମସ୍ତ ପ୍ରକାର ସୁଖ ସୁବିଧା ଫିଙ୍ଗିଦେଇ ଆସିଛନ୍ତି । ଅନେକେ ପ୍ରାଣ ମଧ୍ୟ ଦେଇଛନ୍ତି । ସେମାନେ ଯଦି ଯୁଗର ତାଳ ସହିତ ତାଳ ମିଳାଇବାକୁ ଜୀବନର ଆଦର୍ଶ ବୋଲି ଧରି ନେଇଥାନ୍ତେ, ତେବେ ପୃଥିବୀର ଅବସ୍ଥା ଆଜି କ'ଣ ହୋଇଥାନ୍ତା, ସେକଥା କଳ୍ପନା କରି ହେବ ନାହିଁ ।

ଯୁଗର ତାଳ ସହିତ ତାଳ ମିଳାଇ ଚାଲିବାର ସହଜ ଶିକ୍ଷା ଦେବା ଲାଗି ଆମର ଏ ଗରିବ ଦେଶରେ ମଧ୍ୟ ଅନେକ ସ୍କୁଲ କଲେଜ ରହିଛି । ବଡ଼ ବଡ଼ ପାଠ ପାଶ କରିଥିବା ଅନେକ ପଣ୍ଡିତଙ୍କୁ ଦରମା ଦିଆହୋଇ ଏସବୁ ସ୍କୁଲ କଲେଜ ଚାଲିଛି । ଠିକ୍ ସେହିଭଳି ଉଦ୍ଦେଶ୍ୟ ସାଧନ କରିବାଲାଗି ଆମେ ଜଙ୍ଗଲ ସଫା କରି ଗୋଟାଏ ସ୍କୁଲ କରିବାର ପରିଶ୍ରମ କଦାପି କରି ନ ଥାନ୍ତେ । ନା, ଦେଶର ସହସ୍ର ସହସ୍ର ସ୍କୁଲର ମାର୍କାରେ ଆମର ସ୍କୁଲଟିକୁ ଛାପି କରିବାରେ ଆମର କୌଣସି ପୁରୁଷାର୍ଥ ପ୍ରକାଶ ପାଇବ ନାହିଁ । ଅନୁଷ୍ଠାନର ପ୍ରଥମ କାଳରୁ ଆମେ ଏଇ ବିଷୟରେ ପରିଷ୍କାର ହୋଇଯିବା । ତେଣୁ ସାଧାରଣ ସ୍କୁଲ କଲେଜର ଭୋଗ ଓ ବିଳାସକୁ ଦେଖି ଯିଏ ଜଣେ ଏଠାରେ ରହିଛି ବୋଲି ମନେ ମନେ କ୍ଷୁବ୍ଧ ହୋଇ ପଡ଼ୁଛି, ଯୁଗ ସହିତ ତାଳ ମିଳାଇ ସୁନା ପୁଅ ହୋଇ ଚାଲିବାର ସରାଗରେ ଯିଏ ଏଠିକା ଜୀବନର ଧାରାଟି ସହିତ ଯୋଗସୂତ୍ର ରଖିପାରୁ ନାହିଁ, ମୁଁ କହିବି ସେ ଭାରି ଭୁଲ କରୁଛି । ସେ ଭ୍ରମରେ ପଡ଼ିଯାଉଛି । ଅନ୍ୟ କାହାର ମଙ୍ଗଳ କରିବା ତ ଦୂରର କଥା, ସେ ଆପଣାର ମଙ୍ଗଳ ମଧ୍ୟ କରିପାରୁ ନାହିଁ । ସେ ଆପଣାକୁ ଠକୁଛି । ଏଇ ଠକାମିରେ ଆପଣାର ମନକୁ ସେ ଦହନ କରି ମାରୁଛି । ସେ ଆଗକୁ ଚାଲିପାରୁ ନାହିଁ । ଏପର୍ଯ୍ୟନ୍ତ ମଧ୍ୟ ତା'ର ଦୁଆର ଖୋଲି ନାହିଁ, ତାର ଫୁଲ ଫୁଟିବାର ସମୟ ଆସି ନାହିଁ ।

ଉପଭୋଗ କରିବାର ସାମଗ୍ରୀ ଓ ସଂସ୍ଥା ଜଗତରେ ଅନେକ ଅଛି । ଆମେ ସେଥିଲାଗି ଦୁଃଖ କରିବା ନାହିଁ । ଯେଉଁମାନେ ଆଜି ଆପଣାର

ଆବଶ୍ୟକତାଠାରୁ ଅଧିକରୁ ଖାଉଛନ୍ତି, ଅଧିକରୁ ପିନ୍ଧୁଛନ୍ତି ଓ ସାଇତି ରଖିଛନ୍ତି, ସେମାନଙ୍କୁ ଭଗବାନ ସଦ୍‌ବୁଦ୍ଧି ଦିଅନ୍ତୁ, ଆମେ ଏହାହିଁ ପ୍ରାର୍ଥନା କରିବା । ଅନ୍ୟ ସ୍କୁଲ୍ କଲେଜ ପରି ଆମେ ଏଠି ଭଲ ଖାଇପାରୁ ନାହୁଁ, ଭଲ ପିନ୍ଧିପାରୁ ନାହୁଁ ବା ଉପଭୋଗ କରିପାରୁ ନାହୁଁ, ଏହିସବୁ ଭାବି ଯିଏ ଦିନ ରାତି ରୁଷିକରି ବସିଛି, ତା'ର ମନକୁ ବୋଧ ଦେବା ଲାଗି ଆମ ପାଖରେ କିଛି ନାହିଁ । କିନ୍ତୁ ଯିଏ ଆପଣାର ସମସ୍ତ ଶକ୍ତି ଦେଇ ପୃଥିବୀର ଅନ୍ୟାୟ ଅସମାନ ଦୂର କରିବାର ସଂକଳ୍ପ ନେଇଛି, ଆପଣାର ଭୋଗବିଳାସକୁ ପଛରେ ପକାଇ ଯିଏ ପଡ଼ୋଶୀ ପାଞ୍ଚ ଜଣଙ୍କର ସମ୍ମାନ ଓ ଜୀବନରକ୍ଷା ଲାଗି ଅଧିକ ଆଗ୍ରହ ଓ ଶ୍ରଦ୍ଧା ରଖିଛି, ତାହାରି ଲାଗି ଆମର ଅନୁଷ୍ଠାନ ସର୍ବଦା ମୁକ୍ତହୋଇ ରହିଥିବ । ଆମେ ଭୋଗର ଲାଳସୀ ହେବା ନାହିଁ । ଆମେ ଆମ ଭିତରେ ଅସଲ ମନର ବିକାଶ କରିବା, ନିର୍ମଳ ଓ ଶୁଦ୍ଧହୋଇ ସଂସାରକୁ ଯିବା ଲାଗି ପ୍ରସ୍ତୁତ ହେବା, ଶିକ୍ଷାର୍ଥୀ ହିସାବରେ ଏହା ହିଁ ଆମର ଜୀବନଧର୍ମ ହୋଇ ରହୁ ।

୭।୩।୫୫

ଆମେ ଶସ୍ତାରେ ଭୁଲିବା ନାହିଁ, ସହଜ ବାଟକୁ ଆମେ ଶ୍ରେଷ୍ଠ ବୋଲି ଭ୍ରମ କରିବା ନାହିଁ। ପୃଥିବୀର ଅଧିକାଂଶ ଆନ୍ଦୋଳନ ଆମକୁ କେବଳ ସହଜ ବାଟର ପ୍ରଲୋଭନ ଦେଖାଇଛନ୍ତି । ଅଧମ ବିଶ୍ୱାସପ୍ରବଣ ମଣିଷ ବାଟକୁ ଅଧିକରୁ ଅଧିକ ସହଜ କରିବା ଲୋଭରେ ଉଦ୍ଦେଶ୍ୟକୁ ଓ ଆଦର୍ଶକୁ ପୋଡ଼ି ଖାଇଛି । ବାହାରେ କଥା କହିବା, ନାଗରା ପିଟିବା ଓ ଆଡ଼ମ୍ବର କରିବାର ଧୂମ ଚାଲିଛି । ତା'ଦ୍ୱାରା ମଣିଷର ସାଆନ୍ତଆ ପୋଷାକୀ ମନଟା ବେଶ୍ ସନ୍ତୋଷ ପାଇଛି ସତ, କିନ୍ତୁ ମଣିଷ ଯେଉଁ ଢମିରକୁ ସେଇ ଢମିରରେ ପଡ଼ିରହିଛି । ଆଦର୍ଶ ବିଷୟରେ ବଡ଼ ବଡ଼ ଗ୍ରନ୍ଥ ଲେଖାଯାଇଛି, ବଡ଼ ବଡ଼ ଆନ୍ଦୋଳନ ସୁରୁ କରାଯାଇଛି; କିନ୍ତୁ ସବୁ ଆଦର୍ଶ ଓ ଆନ୍ଦୋଳନର ମୂଳରେ ଥିବା ମଣିଷ ସେଇ ପୁରୁଣା ଯୁଗର ଗମ୍ଭିରି ଭିତରେ ପଡ଼ିରହିଛି । ବ୍ୟବସ୍ଥା ବଦଳିଛି, ସଂସ୍ଥା ବଦଳିଛି; କିନ୍ତୁ ମଣିଷ ବଦଳି ନାହିଁ ।

ବିନୋବାଜୀଙ୍କ ସନ୍ନିଧାନରେ ରହୁଥିଲାବେଳେ ଏହିପରି ଭାବନାସବୁ ମନ ଭିତରକୁ ଆସେ । ଆଜି ଭାରତର ନିଦ ଭାଙ୍ଗିଯାଇଛି । ଭାରତର ଭୋଗଲିପ୍ସା ଉପରେ ଆଜି ବିନୋବା କୁଠାରାଘାତ କରୁଛି । ନୂଆ ମଣିଷ ଜଣଆଡ଼େ ନୂଆ ମୂଲ୍ୟ ଓ ନୂଆ ସମାଜ ପ୍ରତିଷ୍ଠା କରି ବିନୋବା ଆଜି ଜଗତ ଓ ଜୀବନରେ ଏକ ପ୍ରକାଣ୍ଡ ପରିବର୍ତ୍ତନ ଆଣିବାକୁ ବାହାରିଛି । ଆମେ ତାର ସ୍ୱପ୍ନକୁ କେତେଦୂର ଜୀବନରେ ଗ୍ରହଣ କରିପାରିବା, ସମାଜରେ ଅଭ୍ୟାସ କରିପାରିବା ? ଦଶ ବର୍ଷ ତଳେ ଯାହାକୁ ଆମେ ଜାତିର ପିତା ବୋଲି କହି ସୁଖରେ ଦୁଃଖରେ ସ୍ମରଣ କରୁଥିଲୁ, ଯେଉଁ ଗାନ୍ଧିକୁ ନେଇ ଆମେ ଦୁନିଆଆଗରେ ଗର୍ବ କରିଥିଲୁ, ତାକୁ ଆମେ ପାଦୁକ ପରି ପାଇଦେଲୁଣି । ଗାନ୍ଧି ଆଜି ଇତିହାସରେ ଅମର ହୋଇ ସାରିଲାଣି । ତା'ର ପୂଜା ଓ ପ୍ରଚାର ଲାଗି ମୂର୍ତ୍ତି ଗଢ଼ିବା ଓ ସ୍ମୃତିମନ୍ଦିର ତୋଳିବାର ଧୂମ୍ ଉଠିଲାଣି । କିନ୍ତୁ ଆମର ବିଚାରରୁ, ଆମର କାମରୁ ଓ ଜୀବନରୁ ଗାନ୍ଧିର ସନ୍ଦେଶ କ୍ରମେ ଦୂରକୁ ଚାଲି ଯାଉଚି । ଆଉ ଦଶ ବର୍ଷ ଗଲେ ବିନୋବା ସେମିତି ହୋଇଯିବ ନାହିଁ କି ? ବିନୋବାକୁ ନେଇ, ତା'ର କଥାକୁ ନେଇ ଆଜି ବଡ଼ ବଡ଼ ଅନୁଷ୍ଠାନମାନ ଠିଆ ହେଲାଣି, ଲକ୍ଷ ଲକ୍ଷ ଖର୍ଚ୍ଚ ହେବାକୁ ବସିଲାଣି । ଭୂଦାନ ଆନ୍ଦୋଳନର ଆଳ ଧରି ଅହଙ୍କାରୀ ମଣିଷ ଯଦି ଆପଣା ପ୍ରମତ୍ତତା ନେଇ ଦେଶସାରା ଗୋଟାଏ ଫମ୍ପା ଉତ୍ତେଜନା ସୃଷ୍ଟି କରି ବସିବ, ତେବେ ଦଶ ବର୍ଷ ପରେ ଆମେ ଯେ ପୁଣି ସର୍ବସ୍ୱାନ୍ତ ହୋଇ ବସିବା, ଏପରି ଏକ ଆଶଙ୍କା କରିବାର ଯଥେଷ୍ଟ କାରଣ ରହିଚି । ବିନୋବା ବିଚାରର ପ୍ରଚାର ଉପରେ ଏତେ ଜୋର୍ ଦେଲାବେଳେ ଆମେ ପଞ୍ଚାକୁ ପଞ୍ଚା ଯେ କେବଳ ପ୍ରଚାରର ବିଚାର କରିବାରେ ମାତିଛୁ, ଏହାର ପରିଣାମ ସମ୍ବନ୍ଧରେ ଆମ ସମସ୍ତଙ୍କର ଭାବିବାର କଥା ।

ଆଜିର ବିନୋବା ପଛରେ ଚାଳିଶ ବର୍ଷ ସାଧନାର ଏକନିଷ୍ଠ ଇତିହାସ ରହିଛି । ବିନୋବାର ଜୀବନରେ ଉତ୍ତେଜନା ନାହିଁ, ଅହଙ୍କାର ନାହିଁ, ପାଞ୍ଚ ବା ଦଶ ବର୍ଷରେ ଯେନତେନ ପ୍ରକାରେଣ ଗୋଟାଏ କିଛି କରି ଦେଖାଇଦେବାର ଅଯୋଗ୍ୟ ଉଗ୍ରକଥା ତାଠାରେ ନାହିଁ । ବାହାରେ ସେ

ଭୂମିଦାନର ଡାକରା ଦେଉଛନ୍ତି; କିନ୍ତୁ ମଣିଷ ନିର୍ଭୟ ହେବ, ଶୁଦ୍ଧ ହେବ, ଉଦାର ହେବ ଓ ନିରହଙ୍କାର ହେବ—ଏହି ବ୍ୟଞ୍ଜନା ତା'ର ପ୍ରତ୍ୟେକ କଥାରେ ରହିଛି । ଅଶୀ ବର୍ଷର ସାଧକ ବିନୋବା, ଆଜୀବନ ବିଦ୍ୟାର୍ଥୀର ନମ୍ରତା ଓ ଜିଜ୍ଞାସା ରଖିଥିବା ବିନୋବା, ଜୀବନର ବ୍ୟକ୍ତିଗତ ତଥା ସାମାଜିକ ସବୁ କ୍ଷେତ୍ରରେ ମଣିଷକୁ ମୂଳରେ ରଖିଥିବା ବିନୋବା, ଏହା ହିଁ ଆମର ଅଧ୍ୟୟନର ସାମଗ୍ରୀ ହୋଇ ରହୁ । ଆମେ ସାଧକ ବିନୋବାକୁ ମନରେ ରଖି ଜୀବନର ଆଚରଣ ବଦଳାଇଦେବା, ସାଧକ ବିନୋବାର ବାଣୀ ଗ୍ରହଣ କରି ଆମେ ନୂଆ ଜୀବନର ଅନୁଶୀଳନ କରିବା । କୌଣସି ପ୍ରକାର ଉତ୍ତେଜନା, ଅହଙ୍କାର ବା ଉପରଠାଉରିଆ ଆଡମ୍ବର ଦେଖାଇବା ଅପେକ୍ଷା ଏହାରିଦ୍ୱାରା ହିଁ ଆମେ ବିନୋବାଦ୍ୱାରା ଅଧିକ ଉପକୃତ ହୋଇ-ପାରିବା ।

୭।୩।୭୪

ଆମେ ସମସ୍ତେ ଭଲ ମଣିଷ ହେବା, ଆମ ଅନୁଷ୍ଠାନର ଏହି ପ୍ରଧାନ ଲକ୍ଷ୍ୟ ରହିବା ଉଚିତ । ଥରେ ମୁଁ ଏଇ କଥା କହିଥିଲି । ଏ ଭଲ ମଣିଷ ପୁଣି କ'ଣ ? ଆମ ଗାଆଁରେ ବା ସହରରେ କେତେ ପିଲାଙ୍କୁ ଭଲ ପିଲା ବୋଲି କହନ୍ତି, ପୁଣି କେତେକଙ୍କୁ ଦୁଷ୍ଟ ବା ଖରାପ ପିଲା ବୋଲି କହନ୍ତି । ପୁଣି କେତେକ ବାପମାଆ ଅଛନ୍ତି, ଯେଉଁମାନେ କି ଆପଣା ପିଲାଙ୍କୁ ଭଲ ପିଲା କରି ରଖିବାର ଆଗ୍ରହରେ ଅନ୍ୟ କୌଣସି ପିଲାଙ୍କ ସହିତ ମିଶିବାକୁ ଦିଅନ୍ତି ନାହିଁ । ସେମାନଙ୍କ ଆଖିରେ ସାରା ଦୁନିଆ ଗୋଟାକର ପିଲା ଖରାପ, ଖାଲି ଆପଣା ପିଲାଟି ଭଲ । ଆଉ ଆମ ଦେଶରେ ସ୍କୁଲ କଲେଜ କଥା ତ ଛୁଡ଼ିଦିଅ । ଯିଏ ମାଷ୍ଟରର ସାମନାରେ ଭଲ ବ୍ୟବହାର କରେ, ଯିଏ ମାଷ୍ଟରଙ୍କ ପାଠତକ ଭଲକରି କରିଆଣେ, ଯିଏ ମାଷ୍ଟରଙ୍କର ସାମନାରେ ଭରସିକରି କିଛି କହେ ନାହିଁ, ସ୍କୁଲରେ ସେଇ ଭଲ ପିଲା ହେବାରେ ସାର୍ଟିଫିକେଟ ପାଏ । ଘରେ ଓ ସ୍କୁଲରେ ସେଇ ସୁନାପୁଅ ହୋଇ ରହେ ।

ଏମିତି ଭଲ ମଣିଷ ହେବା ଆମର ଦରକାର ନାହିଁ । ଯେଉଁ ସମାଜ ଏପରି ଭଲ ପିଲା ଓ ଭଲ ମଣିଷଙ୍କୁ ଆଦର ଦେଖାଏ, ସେଇ ସମାଜକୁ ଆମେ ମାନିବା ନାହିଁ । ଆମେ ସେଇ ସମାଜକୁ ବଦଳାଇଦେବା । ମାଷ୍ଟର ଆଗରେ ବା ବାପମାଆଙ୍କ ଆଗରେ ଭଲ ପିଲା ବୋଲି ଦେଖାଇହେବାକୁ ଆମେ ସଂସାରକୁ ଆସି ନାହୁଁ । ତେଣୁ ତାଙ୍କୁ ଭୟ କରୁଥିବା ପର୍ଯ୍ୟନ୍ତ ଆମର ଜୀବନରେ ଆମେ କୌଣସି ତୃପ୍ତି ବା ଆନନ୍ଦ ପାଇପାରିବା ନାହିଁ । ମଣିଷ କେବଳ ଭଗବାନଙ୍କୁ ଭୟ କରିବ, ଭଗବାନଙ୍କଠାରେ ଅଟଳ ବିଶ୍ୱାସ ରଖିବ, ତା'ହେଲେ ନିର୍ଭୟ ଚିତ୍ତରେ ସେ ସବୁ ଭୟକୁ ଅସ୍ୱୀକାର କରିପାରିବ । ଭଗବାନ ହେଉଛନ୍ତି ପରମ ଅଭୟ । ଆମେ ତାଙ୍କୁ ହିଁ ଭୟ କରିବା, ତାଙ୍କରି ଆଖିରେ ଭଲ ଦିଶିବା ଭଳି ବଞ୍ଚିବା । ତା'ହେଲେ ଆମର ଜୀବନରେ କୌଣସି ପ୍ରକାର କୃତ୍ରିମତା ପ୍ରବେଶ କରିପାରିବ ନାହିଁ । ବର୍ତ୍ତମାନ ଯୁଗର ଭଲ ପିଲାଙ୍କ ବିଷୟରେ ଆମର ଅଳ୍ପ ବହୁତ ଧାରଣା ରହିଛି । ଆପଣା ଜୀବନକୁ ସହଜ କରିବା ମତଲବରେ ଆମେ ଅନେକ ସମୟରେ ସମାଜରେ ଏହିପରି ଭଲ ପିଲା ହେବାର ଚେଷ୍ଟା କରିଛୁ । ଭିତରେ ସହସ୍ର ରକମର ମଇଳା ରଖି ଉପରେ ଆମେ ସବୁ ଭଲ ବୋଲି ଦେଖାଇ ହୋଇଛୁ । ଆପଣା ମନରେ ନାନା ପ୍ରକାର ଗଣ୍ଡଗୋଳ ରଖି ଉପରକୁ ଆମେ ସଭିଙ୍କୁ ସନ୍ତୁଷ୍ଟ କରି ରଖିବାର ଆଗ୍ରହ ଦେଖାଇଛୁ । ଭିତରଟା ଆମର ଯେଉଁ ଶୂନ୍ୟକୁ ସେଇ ଶୂନ୍ୟ ହୋଇ ପଡ଼ିରହିଛି ।

ଭାଇମାନେ, ଏହିପରି ଭାବରେ ଯଥାର୍ଥ ମଣିଷ-ଜୀବନ ଗଢ଼ି ହୁଏ ନାହିଁ । ଏ ଫମ୍ପା ଜୀବନ ଆମକୁ ଭଗବାନଙ୍କର ଉଦ୍ଦିଷ୍ଟ ପଥରେ ପାଦେହେଲେ ଆଗକୁ ନେଇପାରେ ନାହିଁ । ଆମରି ଜୀବନ ଆମେ ଭଗବାନଙ୍କଠାରୁ ପାଇଛୁ, ଏହାହିଁ ସଂସାରରେ ଆମ ଲାଗି ସବୁଠାରୁ ମୂଲ୍ୟବାନ୍ ସମ୍ପଦ । ଆମେ ଆମ ଜୀବନକୁ ଭଗବାନଙ୍କର ଗ୍ରହଣଯୋଗ୍ୟ କରୁଛୁ ତ ? ଅନ୍ୟକୁ ସନ୍ତୁଷ୍ଟ କରିବାର ମନୋଭାବ ରଖି ହୁଏତ ଆମେ ସମାଜରେ କେତେଟା ସୁବିଧା ମାରିନେବା; କିନ୍ତୁ ଏପରି କରି ନିଜ ପାଖରେ ଆମେ ଅପରାଧୀ ରହିଯିବା । ନା, ଆମର

ଭଲ ମଣିଷ ହେବାର ବାଟ ଜଣାପଡ଼ୁ । ଆମର ଶରୀର ରୋଗମୁକ୍ତ ହେବ, ସୁସ୍ଥ ହେବ, ସୁନ୍ଦର ହେବ । ଆମର ମନ ନିର୍ମଳ ହେବ, ଉଚ୍ଚ ହେବ, ପ୍ରଶସ୍ତ ହେବ । ଆମର ହୃଦୟରେ ସଭିଙ୍କ ଲାଗି ପ୍ରେମଭାବ ସଞ୍ଚିତ ହୋଇ ରହିବ । ଭଗବାନଙ୍କ ଉପରେ ବିଶ୍ୱାସ ବଢ଼ିବା ସଙ୍ଗେ ସଙ୍ଗେ ସଂସାରର ମଣିଷ ଉପରେ ଆମେ ଅଧିକ ବିଶ୍ୱାସ ରଖି ଶିଖିବା । ଆମର ଆଚରଣ ଶୁଦ୍ଧ ହେବ । ସହିଷ୍ଣୁ ହେବ । ଆମର ବିଚାର ସ୍ୱାଧୀନ ହେବ, ନିର୍ଭୟ ହେବ ଅଥଚ ନମ୍ର ହେବ । ଆମର ଜୀବନ ଆନନ୍ଦମୟ ହେବ, ବୀର୍ଯ୍ୟବାନ ହେବ, ବଳିଷ୍ଠ ହେବ । ଆମେ ଆଲୋକର ସନ୍ତାନ ହେବା, ଅମୃତର ସନ୍ତାନ ହେବା । ଶିକ୍ଷାର୍ଥୀ ଜୀବନରେ ଆମ ସଭିଙ୍କର ଏହା ହିଁ ଧ୍ୟେୟ ହୋଇ ରହୁ ।

୨୧।୪।୫୫

ଆମ ଦେଶରେ ଶିକ୍ଷାର ଦୁର୍ଗତିକୁ ହୃଦୟଙ୍ଗମ କରିବାକୁ ହେଲେ ଦେଶର ସ୍କୁଲ କଲେଜକୁ ଖୋଜିବାକୁ ଯିବାକୁ ପଡ଼ିବ ନାହିଁ । ଆମ ଦେଶର ରେଲ-ଷ୍ଟେସନ, ହାଟ ବଜାରରେ ଆମ ଦେଶର ଶିକ୍ଷା ବିଷୟରେ ବେଶ୍ ଜ୍ଞାନ ମିଳିଯିବ । ଦଶ ବାର ବର୍ଷର ପିଲା ଅଣାଏ ପଇସା ରୋଜଗାର କରିବେ ବୋଲି ବଡ଼ ବଡ଼ ବାବୁଙ୍କର ଜୋତା ପାଲିସ୍ କରି ବୁଲିବେ, କୁଲି ହେବେ, ସାଇକେଲ ମରାମତି ଦୋକାନରେ ଛିଣ୍ଡା କଳା ଜନା ପିନ୍ଧି ମୂଲ ଲାଗିବେ । କୌଣସି ସୁସ୍ଥ ଶିକ୍ଷିତ ସମାଜରେ କଦାପି ଏ କଥା ଦେଖିବାକୁ ମିଳନ୍ତା ନାହିଁ । ବୟସ୍କ ବାବୁମାନେ ଅତି ନିର୍ବିକାର ଭାବରେ ଯେତେବେଳେ ଅପଣା ଟ୍ରେଙ୍କିଆ ବୋଝଟିକୁ ଗୋଟିଏ ଟ୍ରେଙ୍କିଆ ପିଲାର ମୁଣ୍ଡ ଉପରକୁ ଟେକିଦେଇ ଆଗରେ ବାଟ କାଟି ଚାଲନ୍ତି, ସେତିକିବେଳେ ମୁଁ ଭାବେ, ଏ ଶିକ୍ଷାରୁ ମନୁଷ୍ୟତାବୋଧ ଖଲକୁଲ ମରି ଲାଗିଛି । ମୋର ପୁଅ ବା ମୋର ଭାଇକୁ ମୁଁ ଭଲ ପାଠ ପଢ଼ାଇବି, ଭଲ ପିନ୍ଧିବାକୁ ଦେବି, ଭଲ ଖୁଆଇବି, ଗେହ୍ଲାକରି ରଖିବି, ଅଥଚ ମୋ' ପିଲାଟିଠାରୁ ଟ୍ରେଙ୍କ ଆଉ ଗୋଟିଏ ପରିବାରର ପିଲା ଅତି ହତଶିରୀ ହୋଇ ବୁଲୁଥିବ, ତାକୁ ଯାଇ ସାହାଯ୍ୟ କରିବାକୁ ବା ପଦେ ଆପଣାର ହୋଇ କହିବାର କରୁଣା ମଧ୍ୟ ମୋ ଭିତରେ ଆସିବ ନାହିଁ । ମୁଁ

ଏହାକୁ କପରି ଶିକ୍ଷା ବୋଲି କହିବ ? ଏ ଶିକ୍ଷାରେ କେବଳ ମୁଣ୍ଡର ଗୃଷ କରିବା ନାଁଆରେ ମୁଣ୍ଡକୁ ବିକୃତ କରି ଦିଆଯାଉଛି । ହୃଦୟ ଭିତରେ ରହିଥିବା ମଣିଷର ଅଜସ୍ର ବୃତ୍ତିର କୌଣସି ଖବର କେହି ରଖୁନାହାନ୍ତି । ମଣିଷ ହୃଦୟରେ ନାନା ସଂକୀର୍ଣ୍ଣ ଅହଙ୍କାରର କଳଣି ଲଗାଇ ଦିଆଯାଉଛି । ଏ ଅସାମାଜିକ ପ୍ରକ୍ରିୟାକୁ ମୁଁ ଶିକ୍ଷା ବୋଲି କହିପାରିବି ନାହିଁ । ବିଲାତରେ ଶିକ୍ଷକ Niel head ବିରୁଦ୍ଧରେ ବିଦ୍ରୋହ କରି ଶିକ୍ଷାକ୍ଷେତ୍ରରେ heartର ମହତ୍ତ୍ୱକୁ ପ୍ରତିଷ୍ଠିତ କରି ରଖିବାର ଯେଉଁ ପ୍ରୟୋଗ କରୁଛନ୍ତି, ପୃଥିବୀର ପ୍ରତ୍ୟେକ ଶିକ୍ଷକ ସେଥିରୁ ଅନେକ ଦିଗ୍‌ଦର୍ଶନ ପାଇପାରିବେ ।

୨୨ । ୫ । ୫୫

କାଲି knapsackଟା ପିଠିରେ ପକାଇ ମଠର ପାଖରୁ ଘରକୁ ଫେରୁଥାଏ । ବାଟରେ ଗଉଡ଼ଘରୁ ଜଣେ ଡାକକରି କହିଲା, 'ବାବୁ, ସେ ବୋଝଟା ତୁମେ କାହିଁକି ନେଇକରି ଯାଉଛ ? ରଖିଦେଇ ଯା; ମୁଁ ଘରକୁ ନେଇଯିବି । ଆମ ଦେଶରେ ଉପର ମଣିଷ ଓ ତଳ ମଣିଷ ଉଭୟେ ସମାନ । ଉଭୟଙ୍କୁ ଆଜି ଆପଣା ମହତ୍ତ୍ୱ ଓ ସମ୍ମାନ ଭୁଲି ରହିବାର ନିଦ ଘାରିଛି । ଉପର ମଣିଷ ନିର୍ଲଜ୍ଜପରି ଅତ୍ୟାଚାର କରୁଚି, ତଳ ମଣିଷ ନୀରବରେ ସହୁଛି । ସମାଜର ଉପର ମଞ୍ଚା ଉପରେ ବସି ଅତ୍ୟାଚାର କରିବା ଉପର ମଣିଷକୁ ଯେମିତି ଆରେଇ ଗଲାଣି, ଅତ୍ୟାଚାର ସହିବାଟା ମଧ୍ୟ ତଳ ମଣିଷକୁ ସେମିତି ଆରେଇ ଗଲାଣି ।

କାଲି ହଠାତ୍ ଡେନମାର୍କ କଥା ମନେ ପଡ଼ିଗଲା । ସେଠି ସମାଜରେ ମଣିଷ ମଣିଷର ସମ୍ପର୍କ ଆମ ଦେଶର ସମାଜଠାରୁ ଅଲଗା । ମୁଁ ଯୁବକ, ଆପଣାର ବୋଝ ନିଜେ ବୋହି ପାରିବାର ଯଥେଷ୍ଟ ବଳ ମୋର ଅଛି ; ଅଥଚ ମୋ'ରି ଗାଆଁର ଜଣେ ଗରିବ ଗଉଡ଼ ବୁଢ଼ା ମୋର ବୋଝ ବୋହିବାକୁ ଆସିବ । ମୁଁ କିଛି ନ କରିପାରିବାର ସୁକୁମାରବାବୁ ହୋଇ ଆଗରେ ଆଗରେ ଚାଲିଥିବି । ଏପରି ଲଜ୍ଜାକର ସମ୍ବନ୍ଧ କେବଳ ଆମର ଦେଶର

ସମାଜରେ ସମ୍ଭବ ହୋଇପାରେ । ମଣିଷ ମଣିଷ ହିସାବରେ ତାର ସମ୍ମାନ ଓ ଗୌରବ ପାଇବ; ମଣିଷର ବଳ, ମଣିଷର ତାରୁଣ୍ୟ, ମଣିଷର ସେବାଶକ୍ତିକୁ ଉପଯୁକ୍ତ କ୍ଷେତ୍ର ଦିଆଯିବ, ଏସବୁ ଆମ ଦେଶର ଜୀବନ-ଧର୍ମରୁ କୁଆଡ଼େ ସରି ହଜି ଗଲାଣି । ଏ ଦେଶର ଅପେକ୍ଷାକୃତ ସୌଭାଗ୍ୟଶାଳୀ ମଣିଷ ଆଜି ଆଳସ୍ୟର ସମ୍ମାନ କରିବାରେ ଲାଗିଛି । ଯିଏ ଯେତେ ଅଳସୁଆ ହୋଇ ପାରିଲା, ତା'ର ଶିକ୍ଷାର ସେତେ ଆଦର କରାହେଉଛି । ତଳେ ପଡ଼ିଥିବା ଅଖ୍ୟାତ ଶ୍ରେଣୀ ଦୁଇଗୁଣ ଖଟି ଉପର ମଣିଷର ଆଳସ୍ୟର କ୍ଷତି ପୂରଣ କରୁଛି ।

୨୩ । ୪ । ୪୨

ଇସ୍ରାଏଲରୁ ଜାହାଜ ଚଢ଼ି ଯେଉଁଦିନ ସାଇପ୍ରସ୍ ଦ୍ୱୀପରେ ଓହ୍ଲାଇଲି, ସେଇଦିନ କଥା ଏପର୍ଯ୍ୟନ୍ତ ମନେ ପଡ଼ିଯାଉଛି । ତିନିବର୍ଷ ହେଲା ଯେଉଁ କଥା ସାଧାରଣତଃ ଆଖିରେ ପଡ଼ି ନ ଥିଲା, ସେହି କଥା ଦେଖିବାକୁ ପାଇଲି । ଆମ ଜାହାଜ ଲାର୍ନାକା ବନ୍ଦରରେ ଲାଗୁ ନ ଲାଗୁଣୁ କୂଳରେ କୁଲିଙ୍କର ଭିଡ଼ ଲାଗିଯାଇଥାଏ । ଜାହାଜର ଯାତ୍ରୀମାନେ ଗୋଟି ଗୋଟି କରି ଆପଣା ଆପଣାର ଜିନିଷ କୁଲିଙ୍କ ହାତକୁ ବଢ଼ାଇଦେଲେ । ମୁଁ ପିଠିରେ **knapsack**, ହାତରେ ସୁଟ୍‌କେଶ ଓ ବ୍ୟାଗ ଧରି ବାହାରକୁ ବାହାରିଲି । ଦୁଇ ତିନିଜଣ କୁଲିଙ୍କୁ ମନା କରିଦେଲି । ମୋ ପଛରେ ଗୋଟାଏ ପ୍ରକାରର ତାଚ୍ଛଲ୍ୟ ଓ ପରିହାସର ବାୟୁମଣ୍ଡଳ ସୃଷ୍ଟି ହୋଇଗଲା । ସମସ୍ତଙ୍କ ମୁଖମଣ୍ଡଳରୁ ଜଣା ପଡ଼ୁଥାଏ, ସେମାନେ ଭାବୁଛନ୍ତି ମୁଁ ଭାରି କୃପଣ । କୁଲିକୁ ପଇସା ନ ଦେଇ ସେଥିଲାଗି ମୁଁ ଆପଣା ବୋଝ ଆପେ ବୋହି ଚାଲିଛି । ଯେଉଁଠି ଶ୍ରମ-କାତରତାର ଶାସନ ଚାଲେ, ସେଠି ପରିଶ୍ରମୀକୁ ଘୃଣା ପ୍ରଦର୍ଶନ କରାଯାଏ । ପରିଶ୍ରମ କରି ବଞ୍ଚିଥିବା ମଣିଷକୁ କୃପା ଆଖିରେ ଦେଖାଯାଏ । ସାଇପ୍ରସ୍ ଆଉ ଭାରତ ଦୁଇଟି ଆଜି ଏକା ଶାସନ ଚାଲିଛି । ଏଠି ମଧ୍ୟ ସେହି ଶ୍ରମକାତରତାର ବ୍ୟବସ୍ଥା ବଜାୟ ରହିଛି । ସେଥିଲାଗି ଯିଏ ଆପଣା ମନର ଶୈଥିଲ୍ୟକୁ

ଝାଣ୍ଡବୃତ୍ତି ଦେଇ ଆପଣାର ସାଆନ୍ତ ପଣିଆ ଛାଡ଼ି ଦେବାକୁ ଇଚ୍ଛା କରୁଛି, ସେହି ଆମ ସମାଜରେ ହାସ୍ୟାସ୍ପଦ ହେଉଛି ।

ବର୍ତ୍ତମାନର ପାଠ, ବର୍ତ୍ତମାନର ଚାଲିଚଳନ, ବର୍ତ୍ତମାନର ସଂସ୍କାର ଆମକୁ ଆହୁରି ପରାଶ୍ରୟୀ କରି ଶିଖାଉଛି । ଆମର ସବୁ କର୍ମଠତା ଓ ତତ୍ପରତାକୁ ମାରିଦେଇ ଆମ ହୃଦୟ ଓ ଆତ୍ମାନୁଭୂତିର ଦୁଆରେ କଳଣି ପକାଇ ରଖିଛି । ଜୀବନର ଫୁଲ ବିକଶିତ ହୋଇ ପାରୁନାହିଁ । ଏ ଦେଶରେ ସହସ୍ର ବୈଚିତ୍ର୍ୟର ସୌନ୍ଦର୍ଯ୍ୟ ନେଇ ପ୍ରସ୍ଫୁଟିତ ହୋଇ ପାରିବାର ପ୍ରଶସ୍ତ ବଗିଚା ନାହିଁ । ଏଠି ମଣିଷ ଭିତରର ମହତ୍ତ୍ୱ ମରିଯାଇଛି ।

—୨—

୯ । ୮ । ୫୫

ଆଜିଠାରୁ ତେରବର୍ଷ ପୂର୍ବେ ଆମର ଦେଶର ଜୀବନରେ ଗୋଟିଏ ବଡ଼ ଘଟଣା ଘଟିଥିଲା । ୧୯୪୨ ମସିହା ଅଗଷ୍ଟ ନ' ତାରିଖ ଦିନ ମହାତ୍ମା-ଗାନ୍ଧୀଙ୍କର ନେତୃତ୍ୱରେ ଆମେ 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ କରିଥିଲୁ । ସେହିଦିନର ଇତିହାସ କେତେ ଜଣଙ୍କର ଭାଗ୍ୟ ବଦଳାଇଦେଲା । କେତେ ସରକାରୀ ଚାକିରିଆ ଚାକିରି ଛାଡ଼ିଲେ, କେତେ ବ୍ୟବସାୟୀ ବ୍ୟବସାୟ ଛାଡ଼ିଲେ, କେତେ ସ୍କୁଲ କଲେଜ ପିଲା ପାଠ ଛାଡ଼ିଲେ, କେତେ ମାଆ-ଭଉଣୀ ଘରକଣ ଛାଡ଼ିଲେ । ନ୍ୟାୟର ରାଜଦାଣ୍ଡରେ ନିଜ ନିଜର ପୁରୁଷାର୍ଥର ପରୀକ୍ଷା ଦେବାଲାଗି ସେଦିନ ସମସ୍ତଙ୍କ ଲାଗି ଡାକରା ଆସିଥିଲା । ଇତିହାସର ଚକ ଘୂରିଗଲା, ସମାଜର ମୂଲ୍ୟବୁଆ ବଦଳିଗଲା । ଆମେ ଆଉ ପରର ଅଧୀନ ହୋଇ ରହିବା ନାହିଁ—ଏହିପରି ଗୋଟାଏ ସତ୍ସାହସର ପ୍ରେରଣା ସେଦିନ ହଜାର ହଜାର ମଣିଷଙ୍କୁ ଦାଣ୍ଡକୁ ବାହାର କରାଇଥିଲା । ସେହି ପ୍ରେରଣା ବଳରେ ଯେଉଁ ଝଡ଼ର ସୃଷ୍ଟି ହେଲା, ସେଇଥିରେ ବିଦେଶୀ ବଣିଆର ବୋଇତ ବୁଡ଼ିଗଲା—ଆମେ ସ୍ୱତନ୍ତ୍ର ହେଲୁ ।

ତେରବର୍ଷ ପରେ ଆଜି ଆମେ ଅଗଷ୍ଟ ନଅକୁ ସେପରି ଗୁରୁତ୍ୱ ଦେଉ ନାହୁଁ । ଆଜି ଅଗଷ୍ଟ ପନ୍ଦର ବା ଜାନୁଆରୀ ଛବିଶିର ଉଲ୍ଲାସ ଅଗଷ୍ଟ ନ'ର ତ୍ୟାଗମୟ ଆହ୍ୱାନକୁ ବୁଡ଼ାଇ ଦେଇଥିଲା ପରି ମନେହେଉଛି । ସ୍ୱତନ୍ତ୍ରତାର ଅର୍ଥ ଖାଲି ରାଜନୈତିକ ସ୍ୱାତନ୍ତ୍ର୍ୟ ନୁହେଁ । ମାଲିକରେ ଅଦଳ ବଦଳ ହେଲେ ମଣିଷର ସବୁ ଅଭାବ ଆଉ ମଳିନତା ମେଣ୍ଟିଯାଏ ନାହିଁ । ଭାରତରେ ଧନୀ-ଦରିଦ୍ର, ଶୂଦ୍ର-ବ୍ରାହ୍ମଣ ସବୁଲୋଗି ଅର୍ଥିକ, ସାମାଜିକ ଓ ଆଧ୍ୟାତ୍ମିକ ସ୍ୱତନ୍ତ୍ରତା ନ ଆସିବାଯାଏ ଆମର ସଂଗ୍ରାମ ଚାଲିଥିବ । ଅଗଷ୍ଟ ନ'ର ଘୋଷଣା କଲାବେଳେ ମହାତ୍ମା ଗାନ୍ଧୀ ଏହିପରି ଏକ ଅଖଣ୍ଡ ବା ଦୀର୍ଘ ଆନ୍ଦୋଳନର ସୂଚନା ଦେଇଥିଲେ । ଆଜି ଦେଶରେ ମାତ୍ର କେତେଜଣଙ୍କର ପେଟ ପୂରୁଛି, ମାତ୍ର କେତେଜଣ ସମାଜର ସୁନାପୁଅ ହୋଇ ସବୁ ଭୋଗ କରିବାର ସୁନାକୁଲେଇ ଆବୋରି ବସିଛନ୍ତି । ଆମ ଦେଶର ନାନା ଭେଦ, ନାନା ଘୃଣା ଓ ନାନା ଲାଳସା ଆମର ଆଧ୍ୟାତ୍ମିକ କ୍ଷୁଧାକୁ ମାରି ଦେବାକୁ ଯାଉଛି । ଏହିପରି ଏକ ବାସ୍ତବିକ ଭୂମି ଉପରେ ଆମେ ଅଗଷ୍ଟ ନ'ର ମର୍ମକୁ କିପରି ଗ୍ରହଣ କରିବା, ସେ କଥା ଆମେ ପ୍ରତ୍ୟେକେ ନିଜେ ନିଜେ ବିଚାର କରିବା ।

ଖାଲି ଦେଶର ଜୀବନରେ ନୁହେଁ, ଜାତି ବା ଯୁଗର ଜୀବନରେ ନୁହେଁ, ବ୍ୟକ୍ତିର ଜୀବନରେ ମଧ୍ୟ ଏହିପରି ଏକ ଝଡ଼ ବେଳେ ବେଳେ ଆସେ । ସେତେବେଳେ ମଣିଷର ଅନ୍ତର ମଣିଷ ସ୍ୱତନ୍ତ୍ରତା ଲାଗି ଅସ୍ଥିର ହୋଇ ଉଠେ । ସବୁ ଭୟ ଓ ସବୁ ସମ୍ଭ୍ରମର ସବୁ କବାଟ ଭାଙ୍ଗିଯାଏ । ସବୁପ୍ରକାର ଜଞ୍ଜିର ଛିଡ଼ାଇ ଦେଇ ମଣିଷ ମୁକ୍ତ ଶୁଦ୍ଧ ହୋଇ ବାହାରି ଆସିବାର ପରୀକ୍ଷାରେ ଅବତୀର୍ଣ୍ଣ ହୁଏ । କୌଣସି ପ୍ରକାର ଅନ୍ୟାୟ ବା କୃତ୍ରିମତା ଆଉ ବରଦାସ୍ତ ହୋଇପାରେ ନାହିଁ । ମଣିଷର ସବୁ ସାଧନା ଓ ଶକ୍ତି ଦେଇ ଅନ୍ତର ଭିତରେ ନୂଆ ହୋଇ ଜନ୍ମ ହେବାର ଚିତା ଜଳେ, ଆଉ ତା'ରି ଭିତରୁ ନୂଆ ମଣିଷର ଜନ୍ମ ହୁଏ । ପ୍ରତ୍ୟେକ ମଣିଷଲାଗି ଏହିପରି ଅଗ୍ନି-ପରୀକ୍ଷାର ବେଳ ଆସେ । ଏହି ବିପ୍ଳବ ଭିତରେ ଆପଣାକୁ ସମର୍ପି ଦେଇ ମଣିଷ ଆପଣାର ଅନେକ ଅଭାବ ଓ ଅପୂର୍ଣ୍ଣତାକୁ ଅତିକ୍ରମ କରି ଚାଲିଯାଏ । ଅନେକ ମଇଳା, ଅନେକ ଘୃଣା ଓ ଅନେକ ଅହଙ୍କାରକୁ ଡେଇଁ ଯିବାର ସାହସ ପାଏ ।

୧୦ । ୮ । ୫୫

'ଭାରତ-ଛାଡ଼' ଆନ୍ଦୋଳନର ଘୋଷଣା କଲାବେଳେ ଗାନ୍ଧିଜୀ ଏ ଦେଶର ପ୍ରତ୍ୟେକ ଲୋକଙ୍କୁ ତାର ବିବେକର ନିର୍ଦ୍ଦେଶ ମାନି ଚଳିବାକୁ ଆହ୍ୱାନ ଦେଇଥିଲେ । ଦେଶକୁ ଚଳାଇବାକୁ ହେଲେ ନେତା ଦରକାର । ତଥାପି ମଣିଷ ତ ଖାଲି ମେଣ୍ଢାପଲ ନୁହନ୍ତି ଯେ ନେତା ଯୁଆଡ଼େ ଗୃହିବ ସିଆଡ଼େ ଅଡ଼େଇ ନେଇଯିବ ! ପ୍ରତ୍ୟେକ ମଣିଷର ବିବେକ ଅଛି, ବିଚାର ଅଛି । ଭଲମନ୍ଦ ବାଛି ଭଲବାଟ ଗ୍ରହଣ କରି ନେବାର ବୁଦ୍ଧି ରହିଛି । ଏହି ବିବେକ, ବିଚାର ଓ ବୁଦ୍ଧିକୁ ଜାଗ୍ରତ କରିବାକୁ ହେବ, ହୃଦୟର ଶ୍ରଦ୍ଧାସୂତ୍ର ଦ୍ୱାରା ଏହି ତିନୋଟିଯାକ ଏକାଠି କରିବାକୁ ହେବ । ତେବେଯାଇ ମଣିଷ ଜୀବନ ବଞ୍ଚିବାର ପରିପୂର୍ଣ୍ଣ ସ୍ୱାଦ ପାଇପାରିବ । ସେତେବେଳେ ଆଉ କୌଣସି ପ୍ରକାର ଭୟ ବା ବିବଶତା ରହିବ ନାହିଁ । ସେତେବେଳେ ମୂଲିଆ ମାଲିକଙ୍କୁ ଭୟ କରିବ ନାହିଁ; ପିଲା ମାଷ୍ଟରଙ୍କୁ ଭୟ କରିବ ନାହିଁ । ଭାଇ ଭାଇକୁ ଭୟ କରିବ ନାହିଁ; ଗୋଷ୍ଠୀ ଗୋଷ୍ଠୀକୁ ଭୟ କରିବ ନାହିଁ । ପୁଣି ଭୟ ଦୂର ହୋଇଯିବା ସଙ୍ଗେ ସଙ୍ଗେ ଘୃଣା ମଧ୍ୟ ଦୂର ହୋଇଯିବ । କାରଣ ଘୃଣା ଆଉ ଭୟ ସତେ ଅବା ପରସ୍ପରର ସହୋଦର ଭାଇ ।

ଅଗଷ୍ଟ ନ'କୁ ଆମେ ପ୍ରଧାନତଃ ରାଜନୈତିକ ଦୃଷ୍ଟିରୁ ଦେଖି ଶିଖିଛୁ । କିନ୍ତୁ କେବଳ ରାଜନୈତିକ ଦିଗଟା ଏହାର ଗୌଣ ଦିଗ । ଆମେ ଆଜି ରାଜନୈତିକ ଦୃଷ୍ଟିରୁ ଦେଖିଲେ ଭାରତରୁ ବିଦେଶୀ ଶାସନକୁ ତଡ଼ି ଦେଇଛୁ । କିନ୍ତୁ ଏବେ ମଧ୍ୟ ଆମରି ଭିତରେ ଅନେକ ଭୂତ ରହିଛନ୍ତି । ଆମ ସମାଜ ଲୋଭରେ ଜର୍ଜର ହୋଇ ରହିଛି । ଆମ ଶାସନବିଧାନରେ ଏପର୍ଯ୍ୟନ୍ତ ପ୍ରତ୍ୟେକ ମଣିଷ ନିରପେକ୍ଷ ନ୍ୟାୟ ପାଇବାର ହକଦାର ହୋଇନାହିଁ । ଆମର ପାଠଶାଳା ଏପର୍ଯ୍ୟନ୍ତ ସତ୍‌ଶିକ୍ଷାର ଶାଳା ହୋଇ ପାରି ନାହିଁ । ଜମିଦାର ଘରର ଦେବତା-ଦେଉଳ ପରି ଏବେ ମଧ୍ୟ ଲକ୍ଷ ଲକ୍ଷ ପିଲାଙ୍କଲାଗି ଆମ ପାଠଶାଳା ବନ୍ଦ ହୋଇ ରହିଛି । ତଥାପି କେମିତି ଆମେ କହିବା ଆମେ ଦିନେ ସ୍ୱପ୍ନ ଦେଖିଥିବା 'ଭାରତ-ଛାଡ଼' ବିପ୍ଳବ ସଫଳ ହୋଇଛି ?

'ଭାରତ ଛାଡ଼'ର ଅର୍ଥକୁ ସାର୍ଥକରୂପେ କାର୍ଯ୍ୟକାରୀ କରିବାକୁ ହେଲେ ଆମକୁ ଅନ୍ତର ଅନେକ କଥା ଛାଡ଼ିବାକୁ ପଡ଼ିବ। ଉପନିଷଦର—'ତେନ ତ୍ୟକ୍ତେନ ଭୁଞ୍ଜୀଥାଃ' ପରି ଖାଲି 'ତ୍ୟାଗ କରିହିଁ ଆମକୁ ଯଥାର୍ଥରେ ଭୋଗ କରିବାକୁ ହେବ। ଯେଉଁମାନେ ଭାଗ୍ୟଦେବୀର ପୁତ୍ର ବୋଲାଇ ଆଜି ସମାଜର ଉପର ପାହାଚରେ ବସିଛନ୍ତି, ସବୁ ଦମ୍ଭ ଛାଡ଼ି ସେମାନଙ୍କୁ ତଳକୁ ଓହ୍ଲାଇ ଆସିବାକୁ ପଡ଼ିବ; ପୁଣି ହତଭାଗା ଅକିଞ୍ଚନ ବୋଲାଇ ଯେଉଁମାନେ ଗୋରୁ ଘୁଷୁରିପରି ମଣିଷ ଜୀବନକୁ ଖାଲି ବୃଥା କରିବାରେ ଲାଗିଛନ୍ତି, ସବୁ ପ୍ରକାର ଆତ୍ମଗ୍ଲାନି ଛାଡ଼ି ସେମାନଙ୍କୁ ଉପରକୁ ଉଠିବାକୁ ହେବ। ସମାଜରେ ମାଲିକ ବୋଲାଉଥିବା ଭଦ୍ରଲୋକଙ୍କୁ ଲୋଭ ଛାଡ଼ି ସମସ୍ତଙ୍କ ସାଥିରେ ଏକାଠି ବସିବାକୁ ଓ ବଞ୍ଚିବାକୁ ପଡ଼ିବ। ଏ ଦେଶର କାରିଗର ଆମେ, ଆମ ବାହୁରେ ବଳ ଅଛି, ମଥାରେ ବିଚାର ଅଛି, ହୃଦୟରେ ଶ୍ରଦ୍ଧା ଅଛି, ଧ୍ୟାନରେ ଈଶ୍ୱର-ବିଶ୍ୱାସ ଅଛି। 'ଭାରତ-ଛାଡ଼'ର ସମଗ୍ର ବିପ୍ଳବରେ ଆମକୁ ଅବଶ୍ୟ ଭାଗ ନେବାକୁ ପଡ଼ିବ। ଆମେମାନେହିଁ ସମାଜର ଦେହ, ମନ ଓ ଅନ୍ତରରୁ ସକଳ ପ୍ରକାର ପୁରୁଣା ଭୂତକୁ ଛଡ଼ାଇବା। ଆମେ ଏ ଦେଶରୁ ଲୋଭ ଛଡାଇବା, ଅନାଦର ଛଡ଼ାଇବା, ଅନ୍ଧ ବିଶ୍ୱାସ ଛଡ଼ାଇବା, ଅଶିକ୍ଷା ଛଡ଼ାଇବା। କିନ୍ତୁ ଏସବୁ କରିବା ଆଗରୁ ଆଗ ଆପଣାର ଅନ୍ତର ଭିତରୁ ଆମେ ସକଳ ପ୍ରକାର ଅହଙ୍କାର ଛଡ଼ାଇ ଆସିବା।

୨୨।୮।୪୪

କାଲି କଥାପ୍ରସଙ୍ଗରେ ମୁଁ ବାହାର ଦୁଷ୍ଟାମି ଆଉ ଭିତର ଦୁଷ୍ଟାମି କଥା କହିଥିଲି। ପିଲାଦିନେ ଆମେ ସମସ୍ତେ ଦୁଷ୍ଟ ଥିଲେ, ଆମେ ସମସ୍ତେ କାଳିଶୁଣି ବୋଉକୁ ହଇରାଣ କରିଛେ, ବାପାଙ୍କର କାମିଜ ପକେଟରୁ ପଇସା ଚୋରି କରିଚେ, ଆମ୍ବ ଜାଆଁରୁ ଆମ୍ବ ଭାଙ୍ଗି ଖାଇଛେ; ସମସ୍ତେ ଆମେ ସାଙ୍ଗପିଲାଙ୍କୁ ମାଡ଼ ମାରିଛେ। ଏ ଦୁଷ୍ଟାମିଗୁଡ଼ାକ ଠିକ୍ ଆମେ ତିଆରି କରୁଥିବା ପିଲାଦିନର ଧୂଳିଘର ପରି। ବୟସ ଓ ଅନୁଭୂତି ବଢ଼ିଲେ ଏସବୁ ଦୁଷ୍ଟାମି ବଳେ ବଳେ

ଲାଗିଯାଏ; ଆମର ଦାୟିତ୍ୱଜ୍ଞାନ ଆସେ । ଆମେ ନିଜପାଇଁ ଲକ୍ଷ୍ୟପଥ ସ୍ଥିର କରି ସେହି ବାଟରେ ଚାଲୁ; ମଣିଷ ଗୋଷ୍ଠୀରେ ଜଣେ ହୋଇ ରହି ଆମର କର୍ତ୍ତବ୍ୟ କରିଶିଖୁ ।

କିନ୍ତୁ ଆମ ଭିତରେ ଆଉ ଗୋଟିଏ ପ୍ରକାର ଦୁଷ୍ଟାମି ଅଛି, ଯାହା– ଆଗରେ ବାହାର ଦୁଷ୍ଟାମି କିଛି ନୁହେଁ । ଆମର ସମାଜ ବାହାର ଦୁଷ୍ଟାମିଟାକୁ ତାଳପରି ଦେଖେ, କିନ୍ତୁ ଅସଲ ଭିତର ଦୁଷ୍ଟାମିଟାକୁ ତିଳକରି ଘୋଡ଼ାଇ ଦିଏ । ସେଥିଲାଗି ଆମେ ଜୀବନ-ଯାକ ଦୁଃଖ ଭୋଗକରୁ, ନାନା ପ୍ରକାର ସନ୍ତାପ ଓ ସଂଶୟରେ ଜଳିପୋଡ଼ି ହୋଇ ମରୁ । ଆମେ ଆମର ମନଭିତରେ ରାକ୍ଷସର ମନକୁ ପୁଷ୍ଟିକରି ଚାଲିଥାଉଁ; ନାନା ଘୃଣା ଓ ଦ୍ୱେଷରେ ଆମେ ଆମର ସମସ୍ତ ଚିନ୍ତା ଓ ସମସ୍ତ ଆଗ୍ରହକୁ ବିଷାକ୍ତ କରି ରଖିଥାଉଁ । ଆମର ବିବେକ ସହିତ ଆମର ସବୁବେଳେ କଜିଆ ଲାଗେ । ତଥାପି ବାହାରକୁ ଆମେ ସମାଜର ସୁନାପୁଅ ହୋଇ ପରିଚୟ ଦେଉଁ । ସମାଜର ନେବନ୍ତା ବା ମାମଲତକାର ହୋଇ ଅନ୍ୟମାନଙ୍କର ବାହାର ଦୁଷ୍ଟାମିକୁ ତାଳକରି ଦେଖୁଁ । ଆମେ ଭାବୁ, ଏପରି କରିବା ଦ୍ୱାରା ଆମେ ସଂସାରକୁ ବେଶ୍ ବୋକା ବନାଇ ଦେଉଛୁ । ବେଶ୍ ଆଖିବୁଜି ଦୁଧ ପିଇବାର ଭ୍ରମ ଆମେ କରୁ । କିନ୍ତୁ ଫଳ ଓଲଟା ଫଳେ । ଆମେହିଁ ଯୋଉ ବୋକାକୁ ସେହି ବୋକା ହୋଇ ପଡ଼ିରହୁ । ଆମର ଦୁଆର ଯୋଉ ମୁଦାକୁ ସେଇ ମୁଦାହୋଇ ରହିଥାଏ । ଆମ ଜୀବନରେ ସୂର୍ଯ୍ୟୋଦୟ ହୁଏ ନାହିଁ । କେବଳ ଅପଣାକୁ ଠକିବାହିଁ ସାର ହୁଏ ।

ମୁଁ ତ କହିବି ଯିଏ ଭଗବାନଙ୍କୁ ବିଶ୍ୱାସ କରେନାହିଁ, ସେହି କେବଳ ଭିତରର ଦୁଷ୍ଟାମିଗୁଡ଼ାକୁ ସାଇତି ରଖି ବାହାରେ ଭଲଲୋକର ମୁଖା ପିନ୍ଧିବାକୁ ଭଲପାଏ । ଭଗବାନଙ୍କ ଉପରେ ଅଟଳ ବିଶ୍ୱାସ ଥିଲେ ପୁଣି ବାହାର ଭିତର କଣ ? ଭକ୍ତ ଅପଣା ମନର ମଇଳାଗୁଡ଼ାକୁ ଏକାଠି ଧୂପ ଓ ଦୀପ କରି ଭଗବାନଙ୍କ ପାଖରେ ଜାଳିଦିଏ । ସେସବୁ ପୋଡ଼ି ସୁଗନ୍ଧ ବିତରଣ କରେ । ଭଗବତ୍‌ବିଶ୍ୱାସର ଅଗ୍ନି ଏକାଠି ବାନ୍ଧି ତାର ମଇଳା ଆଉ ମଇଳା ହୋଇ ରହେନାହିଁ । ଭଗବାନଙ୍କୁ ବିଶ୍ୱାସ କରୁଥିବା ମଣିଷ ସଂସାର ଆଗରେ ସ୍ପଷ୍ଟ

ହେବାକୁ ଭୟ କରେ ନାହିଁ । ଆପଣାର ଭିତର ବାହାର ଖୋଲି ଦେଖାଇ-ବାକୁ ଯେ ସଙ୍କୋଚ କରେ ନାହିଁ । କିନ୍ତୁ ଯେ ଖାଲି ଉପର ଭଲଲୋକର ମୁଖା ପିନ୍ଧି ରହିବାକୁ ଭୟ କରେ, ସଂସାରକୁ ସେ ସନ୍ଦେହ କରେ, କାରଣ ସେ ସଂସାରକୁ ଭୟ କରେ । ସଂସାର ଭିତରେ ଥାଇ ମଧ୍ୟ ସେ ଆପଣା ମନଭିତରେ ସମାଜଠାରୁ ବାସନ୍ଦ ହୋଇ ରହେ; ଆପଣା ବିବେକ ସହିତ ତାକୁ ନିରନ୍ତର ଯୁଦ୍ଧ କରିବାକୁ ହୁଏ ।

ବାହାର ଦୁଷ୍ଟାମି ଆମର ଯେତେ ଥାଉ ପଛକେ, ଭିତର ଦୁଷ୍ଟାମିକୁ ଆମେ ଯେପରି କୌଣସି ପ୍ରକାରେ ବଢ଼ିବାକୁ ନ ଦେଉ । ପିତାର ସ୍ନେହ ପୁଅର ଚପଳ ଦୁଷ୍ଟାମିକୁ ନିଶ୍ଚୟ କ୍ଷମା ଦେବ । ବିଶ୍ୱ-ପିତାଙ୍କର ସ୍ନେହ ଓ ଆଶୀର୍ବାଦ ସେହିପରି ଆମର ସରଳ ଚପଳ ଦୁଷ୍ଟାମିକୁ ସହିପାରିବ, କ୍ଷମା ଦେବ, ଅନେକ ସମୟରେ ଉପଭୋଗ ମଧ୍ୟ କରିବ । କିନ୍ତୁ ଭିତରର ଦୁଷ୍ଟାମି ନେଇ ଆମେ ଯେତେବେଳେ ସାରା ସଂସାରକୁ ଠକିବାକୁ ଯିବା, ସେତେବେଳେ ଭଗବାନ ସେ ସବୁ ଦେଖି ଉପରୁ ହସୁଥିବେ; ଆମ ହୀନ-ମନର ଦୁର୍ଦ୍ଦଶା ଦେଖି ଖାଲି ଆମ ଉପରେ ଦୟା କରୁଥିବେ ।

୨୨।୮।୪୬

ସେଦିନ ଆମେ ଗହ୍ମାପୂନିଅଁ କଲେ । ଆମ ହାତରେ ନୂଆ ରାକ୍ଷୀ ବାନ୍ଧି ଦିଆଗଲା । ଆମେ ସଭା କଲେ, ବକ୍ତୃତା ଶୁଣିଲେ, ପିଠା ଖାଇଲେ, ଭାରି ମଜା ହେଲା । ଆଗକାଳର ସମାଜର ଗଠନ ଅନୁସାରେ ରାକ୍ଷୀ ବାନ୍ଧିବାର ମର୍ମ ଅଲଗା ଥିଲା । ସେତେବେଳେ ବ୍ରାହ୍ମଣ, ସ୍ତ୍ରୀଜାତି ଆଉ ଗୋରୁ-ଗାଈ ସମାଜର ପୁରୁଷ ଉପରେ ଆଶ୍ରୟ କରି ଚଳୁଥିଲେ । ସେମାନଙ୍କର ସ୍ୱତନ୍ତ୍ରତା ନ ଥିଲା । ବ୍ରାହ୍ମଣର କୌଣସି ରୋଜଗାର ନ ଥିଲା । ସେ କୌଣସି ପ୍ରକାର ଶ୍ରମ କରୁ ନ ଥିଲା । ସ୍ତ୍ରୀ-ଜାତି ମଧ୍ୟ ପୁରୁଷ ଉପରେ କେବଳ ଏକ ଆବଶ୍ୟକ ବୋଝପରି ରହିଥିଲା, ଠିକ୍ ପୁରୁଷର ଜମିବାଡ଼ି, ହାତୀଘୋଡ଼ା ଆଉ ଖଟପଲଙ୍କ

ପର । ଗୋରୁ-ଗାଈଙ୍କୁ ତ ଯେମିତ ହେଲେ ଆପଣାର ବଞ୍ଚିବା ପାଇଁ ମଣିଷ ଉପରେ ନିର୍ଭର କରିବାକୁ ହିଁ ପଡ଼ିବ। ରକ୍ଷାପୂନିଅଁ ଦିନ ବ୍ରାହ୍ମଣ ଆସି ଅବ୍ରାହ୍ମଣ ସଂସାରୀ କାନ୍ଧରେ ପଇତା ଗଳାଇ ଦେଉଥିଲା, ଘରେ ସ୍ତ୍ରୀପୁରୁଷ ହାତରେ ରାକ୍ଷୀ ବାନ୍ଧି ଦେଉଥିଲା । ଏହାର ଅର୍ଥ ହେଉଚି ପୁରୁଷ ସ୍ତ୍ରୀକୁ ରକ୍ଷା କରିବ, ଅବ୍ରାହ୍ମଣ ବ୍ରାହ୍ମଣକୁ ରକ୍ଷା କରିବ ।

ସେ କାଳର ସେ ପ୍ରାଚୀନ ସମାଜ ଭାଙ୍ଗିଗଲାଣି । ଯୁଗର ଅନୁକ୍ରମ ଅନୁସାରେ ମଣିଷ ନୂଆ ସମାଜ ଓ ସାମାଜିକ ଆଦର୍ଶର ସ୍ୱପ୍ନ ଦେଖୁଛି ମଣିଷର କଳ୍ପନା ବଦଳିବା ସଙ୍ଗେ ସଙ୍ଗେ ସମାଜର ଚିତ୍ର ମଧ୍ୟ ବଦଳିଯାଉଛି । ସଂସାରରେ ବଞ୍ଚିରହିବା ଲାଗି ଏବେ ମଧ୍ୟ ବ୍ରାହ୍ମଣ ଯାଇ ଅବ୍ରାହ୍ମଣର ରକ୍ଷକତା କାମନା କରିବେ । ଏବେ ମଧ୍ୟ ସ୍ତ୍ରୀଜାତି ଯାଇ ପୁରୁଷ ପାଖରେ ଆଶ୍ରୟ ପ୍ରାର୍ଥନା କରିବ—ଏ ଯୁଗର ନ୍ୟାୟ କଦାପି; ଏହା ସ୍ୱୀକାର କରିବ ନାହିଁ । ଏ ଯୁଗରେ ସମସ୍ତେ ସମାନ । ସମସ୍ତେ ସାଧନା-ପଥର ପଥିକ, ସମସ୍ତେ ଜୀବନ-ମନ୍ଦିରର ପୂଜକ । ପୁରୁଷ, ସ୍ତ୍ରୀ, ବ୍ରାହ୍ମଣ, ଅବ୍ରାହ୍ମଣ—ଏ ଯୁଗରେ ସମସ୍ତେ ଆଗ ଓ ମୌଳିକତଃ ମଣିଷ, ତା ପରେ ଆଉ ଯାହାକିଛି । ତେଣୁ ବ୍ରାହ୍ମଣ ଅବ୍ରାହ୍ମଣକୁ ଓ ସ୍ତ୍ରୀ ପୁରୁଷ ପାଖରେ ଆପଣାର ଆଶ୍ରୟ ଭିକ୍ଷା କରିବା ଏ ଯୁଗରେ ବାଞ୍ଛିତ ହେବ ନାହିଁ ।

ତଥାପି ଆମେ ରକ୍ଷାପୂନିଅଁ ପାଳନ କରିବା କାହିଁକି ? ଗୋଟିଏ ଗୋଷ୍ଠୀ ଆଉ ଗୋଟିଏ ଗୋଷ୍ଠୀର ନେତା ବା ନିୟାମକ ହୋଇ ରହୁ; ଗୋଟିଏ ବର୍ଗ ଆଉ ଗୋଟିଏ ଅକିଞ୍ଚନ ବର୍ଗର ରକ୍ଷକ ହୋଇ ରହୁ, ଏକଥା ଆମେ ଚାହୁନାହିଁ । ଆମେ ଚାହୁଁ, ଆମ ସମାଜରେ ପ୍ରତ୍ୟେକେ ପ୍ରତ୍ୟେକର ରକ୍ଷକ ହେବା । ପ୍ରତ୍ୟେକେ ଆମେ ପ୍ରତ୍ୟେକର ହାତରେ ରାକ୍ଷୀ ବାନ୍ଧିଦେବା । ଅର୍ଥାତ୍ ସମାଜ ପ୍ରତି ଆମର ଯେଉଁ କର୍ତ୍ତବ୍ୟ ବା ଦାୟିତ୍ୱ ଅଛି, ତାହା ଆମେ ସୁନାଗରିକ ହିସାବରେ ଆପଣା ଛୁଏଁ ସ୍ୱୀକାର କରିନେବା । ସଦାସର୍ବଦା ଆପଣା ସ୍ୱାର୍ଥ ଓ ଅଭିମାନର ରକ୍ଷା କରିବାରେ ସନ୍ତୃପ୍ତ ନ ରହି ଆଗ ଆମେ ଆମ ଚାରିପାଖରେ ଆମ ସଂସାରଟିକୁ ଜୀବନ୍ତ ଓ ସରସ କରି ରଖିଥିବା,

ସମସ୍ତଙ୍କ ଲାଗି ଚିନ୍ତାକରିବା । ଆମେ ସେହିମାନଙ୍କର ବନ୍ଧୁ ଓ ମାର୍ଗଦର୍ଶକ ହୋଇରହିବା । ଆମେ ସବୁରି କଲ୍ୟାଣରେ ଓ ସବୁରି ବିକାଶରେ ସହଯୋଗ କରିବା । ପରସ୍ପରର ହାତରେ ରକ୍ଷୀ ପିନ୍ଧାଇଦେବା ଭିତ୍ତିରେ ଏ ଯୁଗରେ ଏହାହିଁ ମର୍ମକଥା ହୋଇ ରହୁ ।

ଆମ ଜଙ୍ଗଲର ଏହି ଗ୍ରେଟିଆ ସଂସାରରେ ଗହ୍ମାପୁନିଅଁ ଆମକୁ ଏଇଆ ଶିକ୍ଷା ଦେଇଯାଉ । ଏଠିକାର ସବୁଜ ବଣ, ନୀଳ ପର୍ବତ ଓ ଆମର ତରୁଣ ମନକୁ ପଥର ଯାଦୁ କରି ବାନ୍ଧିଥିବା ପ୍ରାଣରେ ଆଜି ଗହ୍ମାପୁନିଅଁର ଏହି ଅର୍ଥ ଭେଦିରହୁ । ସେଦିନ ଆମେ ପରସ୍ପରର ହାତରେ ରକ୍ଷୀ ବାନ୍ଧିଲେ ! ଚାଲ, ଆମେ ସମସ୍ତେ ସମସ୍ତଙ୍କର ରକ୍ଷକ ହୋଇଯିବା । ସମସ୍ତେ ସମସ୍ତଙ୍କ ସହିତ ସହଯୋଗ କରିବା । ଆମେ ଆଗ ଅନ୍ୟ ସମସ୍ତଙ୍କର କଲ୍ୟାଣ ଚିନ୍ତା କରିବା । ଏହିପରି ଏକ ଶ୍ରଦ୍ଧା ଓ ଭାତୃଭାବର ବାତାବରଣ ସୃଷ୍ଟି କରିପାରିଲେ ଆମ ମନରୁ ସବୁ ଅହଙ୍କାର ଓ ଅପଚିନ୍ତା ବଳେ ବଳେ ଚାଲିଯିବ ।

୧୭ । ୮ । ୪୪

ଆମର ଖାଦ୍ୟ, ଅମର ଦେହ, ଆମର ପାଠ ଓ ଆମର ପ୍ରାର୍ଥନା— ଆମର ଏଠି ସବୁଟିର ମହତ୍ତ୍ୱ ରହିଛି । ଖାଇବା ନିଅଣ୍ଟ ହେଲେ ବା ଅରୁଚିକର ହେଲେ ଆମେ ଯେମିତି ସୁଧାରିବାକୁ ଚେଷ୍ଟାକରିବା, ପାଠରେ ଖଇଣ୍ଟ ହେଲେ ଯେମିତି ଆମେ ପୂରଣ କରିବାକୁ ବ୍ୟସ୍ତ ହୋଇପଡୁଛୁ, ପାର୍ଥନାର ବ୍ୟବସ୍ଥା ଓ ବାୟୁମଣ୍ଡଳରେ କୋଉଠି କଣ ଅଭାବ ରହିଲେ, ଆମେ ସେମିତି ବ୍ୟସ୍ତ ହୋଇପଡିବା ଦରକାର । ଖାଇବା ମନୋମତ ନ ହେଲେ ଆମର ଦେହକୁ ବାଧେ । ପ୍ରାର୍ଥନା ମନୋମତ ନ ହେଲେ ସେମିତି ଆମର ଅନ୍ତରକୁ ବାଧିବା ଦରକାର । ଦିନେ ଖାଇବାକୁ ନ ପାଇଲେ ଆମେ ଯେମିତି ଉପାସରେ କଷ୍ଟ ପାଉଛୁ, ଦିନେ ଟିକିଏ ସମାହିତ ହୋଇ ପାର୍ଥନାରେ ବସି ନ ପାରିଲେ ସେମିତି ଏକ ବଡ଼ ଅଭାବ ଆମେ ଅନ୍ତରେ ଅନ୍ତରେ ଅନୁଭବ କରିବା ଉଚିତ ।

ତାହା ଆମେ କରିପାରୁ ନାହୁଁ । ଆମେ ନିଜର ଦେହଟାକୁ ଜୀବନର ସର୍ବସ୍ୱ କରି ରଖୁଛୁ ବୋଲି ସେହିପରି ହେଉଛି । ଆମେ ନିଜର ଅହଙ୍କାର ଓ ଅଭିମାନକୁ ମନ ଭିତରେ ଝୁନ୍ଧିରଖି କେବଳ ଉପଭୋଗ କରିବାକୁ ଜୀବନର ଧ୍ୟେୟ ଧରି ନେଇଛୁ ବୋଲି ସେହିପରି ହେଉଛି । ମୋର ଦେହ ଅଛି, ତଥାପି ମୁଁ କେବଳ ଦେହ ନୁହେଁ; ମୋ ଭିତରେ ମାନଅଭିମାନ, ଅହଙ୍କାର ରହିଛି; ତଥାପି କେବଳ ଏହିସବୁ ମୋର ସମସ୍ତ ମନର ପରିଚୟ ନୁହେଁ— ଏହିପରି ବିଚାର ରଖିବା ଦରକାର । ତେବେ ଆମଲାଗି ସଂସାରରେ ସବୁ କଥାର ଅର୍ଥ ବଦଳିଯିବ । ମଣିଷର ମୁହଁ, ମଣିଷର ହସ, ଆକାଶର ଚନ୍ଦ୍ରସୂର୍ଯ୍ୟ, ବଣପାହାଡ଼, ସକାଳସଞ୍ଜ—ସବୁ ଆମର ଧ୍ୟାନ-ଦୃଷ୍ଟିରେ ନୂତନ-ଭାବରେ ଦେଖାଦେବ । ଆମର ଜୀବନ ବଦଳିଯିବ, ଆମର ଆଚରଣରେ ପୁରୁଣା ବା ପରି କିଛି ରହିବ ନାହିଁ । ସାରା ସଂସାରଟା ଦେବତାର ମନ୍ଦିର ପରି ଲାଗିବ । ଦିନମାନର ସବୁ କାମ ଠିକ୍ ଭଗବାନଙ୍କର ପୂଜାପରି ଶୁଦ୍ଧ, ସରସ ଓ ଶକ୍ତି-ମୟ ହୋଇଯିବ ।

ଏଠିକା ସମାଜରେ ଗୋଟାଏ ନିୟମ ରହିଛି ବୋଲି ହୁଏତ ଆମେ ପ୍ରାର୍ଥନାରେ ଯାଇ ବସୁଛେ । ଟ୍ରିହାଲୀ-ଟ୍ରେନରକୁ ନେଇ ଧରିବାନ୍ଧି ଟ୍ରିହାଲୀରେ ବସାଇବା ପରି ଏ ପ୍ରାର୍ଥନା ହୋଇଯାଉଛି । କିଏ ଭଜନ ବୋଲିବ, କିଏ ଧୂନ୍ ଦେବ, କେଉଁ ଭଜନ ବା କେଉଁ ଧୂନ ଦିଆଯିବ, ସେ କଥା ଆମେ ପ୍ରାର୍ଥନା ସଭାରେ ଠିକ୍ କରୁଛେ । ସେଥିଲାଗି ଭଜନ, ଧୂନ୍ ବା ସମଗ୍ର ଦୃଷ୍ଟିରୁ ଦେଖିଲେ ପ୍ରାର୍ଥନାରେ ରସ ରହୁନାହିଁ । ମନ ବି ଭଗବାନଙ୍କ ପାଖକୁ ପଡ଼ିଥିବା ରାସ୍ତା ଉପରେ ସହଜ ଭାବରେ ଧରିଦେଉନାହିଁ । ଏପରି କାହିଁକି ହେଉଛି ? ଏ କଥା ଅମେ ସମସ୍ତେ ବିଚାର କରିବା । ଖାଲି ପ୍ରାର୍ଥନା ବିଷୟରେ ପଢ଼ିଲେ ବା ଲେଖିଲେ ପ୍ରାର୍ଥନା ଭଲ ହେବ ନାହିଁ । ଆମେ ଅଧିକ ଗଭୀର ଭାବରେ ଅନୁଭବ କରି ଶିଖିବା, ଅଧିକ ଗଭୀର କରି ଆମର ମନକୁ ତିଆରି କରି ଶିଖିବା । ଭଗବାନ ମଣିଷର ମୁଣ୍ଡରେ ନୁହେଁ, ହୃଦୟ ଭିତରେ ଅଛନ୍ତି । ଏକଥା ଉପନିଷଦରେ କୁହାଯାଇଛି । ଏହି ହୃଦୟକୁ ତିଆରି କରିପାରିଲେ ଅମେ ଆମର ଜୀବନକୁ ଅଧିକ ରହସ୍ୟ କରି ତିଆରି କରିପାରିବା ।

ପ୍ରାର୍ଥନା ଲାଗି ଆମର ସ୍ୱତନ୍ତ୍ର ଘଣ୍ଟା ବାଜୁଛି । ସେହି ଘଣ୍ଟା ବାଜିବା ମାତ୍ରେକେ ଆମେ ଯିଏ ଯେଉଁଠି ଥିବା, ଯଥାସମ୍ଭବ ଚୁପ ହୋଇଯିବା । ଜଳେ କରୁଥିବା କାମ ଯଥାଶୀଘ୍ର ଶେଷ କରି ପ୍ରାର୍ଥନା ସ୍ଥାନକୁ ଆସିବା । ପୂର୍ଣ୍ଣ ଧ୍ୟାନ ଓ ସମର୍ପଣରେ ସେଠି ବସିବା । ସଭିଙ୍କ ସହିତ ସହଯୋଗ କରି ପ୍ରାର୍ଥନାର ସ୍ୱର ଓ ତାଳଲୟକୁ ମଧୁର କରି ରଖିବା । ଏପରି କାହିଁକି ନ ହୋଇ ପାରିବ ? ଖାଇବା ଆଗରୁ ମୁହଁ ହାତ ଧୋଇ ଖାଇବାର ବିଧି ରହିଛି । ପ୍ରାର୍ଥନା କରିବା ପୂର୍ବରୁ ମନରୁ ସମସ୍ତ ପ୍ରକାର ବିକ୍ଷେପ ଓ ବିକୃତିକୁ ଦୂର କରିଦେଇ, ସବୁ ପ୍ରକାର ବ୍ୟସ୍ତତାକୁ ଈଶ୍ୱରପ୍ରଣିଧାନ ଲାଗି ଶାନ୍ତ ଓ ନୀରବ କରି ଦେଇ କାହିଁକି ଆମେ ପ୍ରାର୍ଥନାରେ ବସି ନ ପାରିବା ? ଏ କଥା ଆମେ ସମସ୍ତେ ବିଚାର କରିବା, ସମସ୍ତେ ଆମେ ପ୍ରାର୍ଥନାରେ ସହଯୋଗ କରିବା ।

୧୭ । ୮ । ୫୫.

ଆମ ଭିତରୁ କେତେଜଣ ମୌଳିକ ସ୍କୁଲରୁ ଆସିଛନ୍ତି, ପୁଣି କେତେକ ସିଧା ହାଇସ୍କୁଲରୁ ଆସିଛନ୍ତି । ମୌଳିକ ଅମୌଳିକକୁ ଯେଉଁମାନେ ଦୁଇଟା ଭିନ୍ନ ଭିନ୍ନ ଗ୍ରହପରି ଭାବନ୍ତି, ଏଇଟା ନ ହେଲେ ଆରଟାର ପକ୍ଷ ସମର୍ଥନ କରି ଯେଉଁମାନେ ଯୁକ୍ତି ଯୁଝିବାକୁ ବାହାରିପଡ଼ନ୍ତି, ମୁଁ ସେମାନଙ୍କ ଦଳରେ ନୁହେଁ । ମୋ ମତରେ ସୁଶିକ୍ଷା ଆଉ କୁଶିକ୍ଷା ଏହିପରି ଦୁଇଟି ଭାଗ ହେବା ଦରକାର । ଶିକ୍ଷା ଯେକୌଣସି ଗ୍ରହର ହେଉ ପଛକେ ତାହା ସୁଶିକ୍ଷା ହେବା ଦରକାର ।

ଏଠିକି ଆସିବା ପୂର୍ବରୁ ଆମେ ଅନ୍ୟ ପ୍ରକାରର ବାତାବରଣରେ ଥିଲେ । ସେଠି ନିୟମ ଅନୁସାରେ ପାଠ ପଢ଼ାଇ ଦିଆଯାଉଥିଲା । ପୁଣି ନିୟମ ଅନୁସାରେ ପିଲାଙ୍କଠାରୁ ପାଠ ନିଆଯାଉଥିଲା । ପାଠ ନ ଦେଲେ ଶାସ୍ତି ମିଳିବ, ଏଇ ଭୟରେ ଆମେ ସମସ୍ତେ ପୁରୁଣା ପାଠକୁ ଗୋଳି ପିଇ ପାଠ-ଶାଳାକୁ ଯାଉଥିଲେ । ସେଠି ବର୍ଷ ଶେଷରେ ପରୀକ୍ଷା ହେଉଥିଲା । ପରୀକ୍ଷାରେ ନମ୍ବର ଦିଆ ହୋଇ ସେଇଥିରେ ଆମର ବରଷକର ବିକାଶର କଳନା

କରାଯାଉଥିଲା । ଏ'ତ ଗଲା ପାଠ ପଢ଼ିବାର କଥା । ପାଠଶାଳାର ବାହାରେ ଶିକ୍ଷକଙ୍କ ସହିତ ଆମର ସେପରି କିଛି ସମ୍ପର୍କ ନ ଥିଲା । ଆମେ ଶିକ୍ଷକଙ୍କୁ ଭୟ କରୁଥିଲେ । ଆପଣାର ସବୁ ଦୋଷ ଲୁଗ୍ଗାଇ ଛପାଇ ଶିକ୍ଷକଙ୍କ ସାମନାରେ ଭଲ ପିଲା ବୋଲି ଦେଖାଇ ହେଉଥିଲେ । ଆମର ମନ ଭିତରେ ନାନାପ୍ରକାର ମଇଳା, ନାନାପ୍ରକାର ବିକାର ପୂରି ରହିଥିଲା । ଆମର ଅଭ୍ୟାସରେ ନାନା-ପ୍ରକାର ଅସଂଯତତା ଭରି ରହିଥିଲା । ଆମେ ସବୁ କରୁଥିଲେ । ତଥାପି ଶିକ୍ଷକଙ୍କ ସାମନାରେ ସେସବୁ କିପରି ଧରା ନ ପଡ଼ୁ, ସେଥିଲାଗି ଖୁବ୍ ଚେଷ୍ଟା କରୁଥିଲେ । ଆମେ ଆମ ଭିତରର ଦୋଷକୁ ଭୟ କରୁ ନ ଥିଲେ; ଧରା ପଡ଼ିଯିବାଟାକୁ ଖାଲି ଭୟ କରୁଥିଲେ । ଆମ ଭିତରର ରାକ୍ଷସକୁ ଗୋପନରେ ସବୁପ୍ରକାର ପ୍ରଶ୍ରୟ ଦେଇ ଆମେ ବାହାରେ ଦେବତା ବୋଲି ପରିଚୟ ଦେଉଥିଲେ । ଭିତରେ ଗୋଟାଏ, ବାହାରେ ଗୋଟାଏ, ଏହିପରି ଏକ ଦୁଇଫାଙ୍କିଆ ଜୀବନ ଆମର ଚାଲିଥିଲା ।

ଏଠି ଜଙ୍ଗଲ ଭିତରେ ଆମେ ଗୋଟିଏ ଅଜବ ପାଠଶାଳା ଗଢ଼ିବାକୁ ବସିଛୁ । ଏଠି ଖାଲି ବୁଦ୍ଧିର ଚର୍ଚ୍ଚା ହେବ ନାହିଁ । ଖାଲି ପାଠ ମୁଖସ୍ଥ କରି ଏଠୁ ଅବିବେକୀ ପଣ୍ଡିତ ହୋଇ କେହି ବାହାରିବେ ନାହିଁ । ଏଠି ପରୀକ୍ଷା ହେବ ନାହିଁ, କି ନମ୍ବର ଦିଆଯିବ ନାହିଁ । ଉପରେ ପଣ୍ଡିତ ବା ଶୁଆପଢ଼ୀ କରାଇ ଭିତରେ ରାକ୍ଷସଟାକୁ ବଢ଼ାଇବାର ସେହି ପୁରୁଣା ସୁଆଙ୍ଗ କରାଇବାକୁ ଏଠି ଜଙ୍ଗଲ ଭିତରେ ଗୋଟିଏ ପାଠଶାଳା ବସାଇବାର କାହିଁକି ଦରକାର ଥିଲା ?

ଚରିତ୍ର ନିର୍ମାଣ ହେଉଛି ଆମ ଶିକ୍ଷାର ଧ୍ୟେୟ । ଜୀବନନିଷ୍ଠ ହୋଇ ତିଆରି ହେବା ହେଉଛି ଏଠିକା ଶିକ୍ଷାର୍ଥୀର ପ୍ରଧାନ ଲକ୍ଷ୍ୟ । ଆମେ ଆଉସବୁ କଥା ପଛରେ କରିବା, କିନ୍ତୁ ଚରିତ୍ର ଓ ସ୍ୱଭାବକୁ ପ୍ରଧାନ କରି ଧରିଥିବା । ଆମେ ନମ୍ର ଅଥଚ ନିର୍ଭୀକ ହେବା; ଆମେ ଭଲ ପାଇବା ଅଥଚ ସକଳ ପ୍ରକାର ମୋହ ଦୃଷ୍ଟିରୁ ଆପଣାକୁ ଦୂରରେ ରଖିଥିବା; ଆମେ ଭକ୍ତି କରିବା, ଅଥଚ ଆମର ଭକ୍ତି ଆମକୁ ଆତୁର ବା ଦୁର୍ବଳ କରିଦେବ ନାହିଁ; ଆମେ ସ୍ପଷ୍ଟ ହେବା;

ଚ୍ଚାରପାଖରେ ଆକାଶ, ପୃଥିବୀ ଆଉ ମଣିଷଙ୍କୁ ଦେଖି ଆମେ ଖୁସି ହୋଇ-
ପାରିବା । ମଣିଷ ସହିତ ମିଶିବା ଲାଗି ଆମେ ଆମ ଭିତରେ କୌଣସି ପ୍ରକାର
ଅଭିମାନ ବା ଅହମିକା ରଖିବା ନାହିଁ । ଆମର ଶିର ଉଚ୍ଚ ହୋଇ ରହିବ ।
ଆମର ଆଖି ସାମନାକୁ ରହିବ । ଆମର କଥା ଅନୁଭୂତିର ଗଭୀର ତଳରୁ
ବାହାରିଆସିବ । ଆମର ଏଠିକି ଯିଏ ଯେତେବେଳେ ଆସିବ, ସିଏ ଆମର
ଚାଲିରୁ, ଆମର କଥାରୁ ଓ ଆମର ବ୍ୟବହାରରୁ ଆମର ପରୀକ୍ଷା କରିନେବ ।

୧୮ । ୮ । ୫୫

ମୌଳିକ ଶିକ୍ଷାରେ ଅମୁକଟା ଭଲ, ପ୍ରଚଳିତ ଶିକ୍ଷାରେ ଅମୁକଟା
ଭଲ—ଆମରି ଭିତରୁ କେତେକ ଆପଣା ଆପଣା ଭିତରେ ଏହାର ଚର୍ଚ୍ଚା
କରୁଛନ୍ତି । କିଏ କହୁଛି ମୌଳିକ ଶିକ୍ଷା ପ୍ରାଚୀନ ଭାରତର ଶିକ୍ଷାଦର୍ଶ
ଅନୁସାରେ ତିଆରି ହୋଇଛି; କିଏ କହୁଛି ମୌଳିକ ଶିକ୍ଷାରେ ପ୍ରଚଳିତ ସ୍କୁଲ
କଲେଜ ପରି ପାଠପଢ଼ା ହେଉ ନାହିଁ; ମୌଳିକ ଶିକ୍ଷାକୁ ଆସି ମୁଁ ଭୁଲ
କଲି; ଅମୁକ ବା ଅମୁକ ଶିକ୍ଷାକୁ ଯାଇଥିଲେ ଭଲ ହୋଇଥାନ୍ତା—ଏପରି
କଥା ମଧ୍ୟ ଆମରି ଭିତରୁ ଅନେକ ଭାବୁଛନ୍ତି । ସତେ ଯେମିତି ଦୁଇଟା ଭିନ୍ନ
ବାକ୍ସ ପରି ମୌଳିକ ଶିକ୍ଷା ଓ ପ୍ରଚଳିତ ଶିକ୍ଷା ନାମରେ ନାଲିଆ ଆଉ ଧଳା
ଦୁଇଟି ଶିକ୍ଷା ବାକ୍ସ ରହିଛି; ଗୋଲ ଆଉ ଚାରିକଣିଆ ଦୁଇଟି ଶିକ୍ଷା ଗ୍ରନ୍ଥି
ରହିଛି । ଖାଲି ଆମେ କାହିଁକି, କଟକ ବା ଦିଲ୍ଲୀରେ ଯେଉଁ ପାଠୁଆ ଚାକିରିଆ-
ମାନେ ଏ ଦେଶର ପିଲାର ଭାଗ୍ୟ ବିଧାନ କରିବା ଲାଗି ଶିକ୍ଷାର ପାଞ୍ଜି
ପାଞ୍ଚିବାରେ ଲାଗିଛନ୍ତି, ସେମାନେ ମଧ୍ୟ ମୌଳିକ ଓ ପ୍ରଚଳିତ ଶିକ୍ଷା କହିଲେ
ପ୍ରଧାନତଃ ଦୁଇଟା ଗ୍ରନ୍ଥିକୁ ବୁଝନ୍ତି । ଗୋଟାକୁ ଚଳାଇଲେ ଅନ୍ୟକୁ ବନ୍ଦ କରି
ଦେବାକୁ ପଡ଼ିବ, ଏହିପରି ଗୋଟାଏ ଭ୍ରମରେ ସେମାନେ ପଡ଼ିଛନ୍ତି । ତେଣୁ
ଠିକ ଛାଟିଏ ମହଣ ଘିଅ ଅସିଲେ ରାଧା ନାଚିବା ପରି ସେମାନଙ୍କର ଦଶା
ହୋଇଛି । ଦେଶର ପିଲାଏ ଯୋଉ ଅପାଠୁଆକୁ ସେହି ଅପାଠୁଆ ହୋଇ
ରହିଛନ୍ତି ।

'ମୌଳିକ ଶିକ୍ଷା' ଶବ୍ଦଟି ଆଜିକୁ ଅଠର ବର୍ଷ ହେଲା ବ୍ୟବହୃତ ହେଲାଣି । ଗାନ୍ଧୀଙ୍କର ଆପଣା ଚେଲାଙ୍କଠାରୁ ଆରମ୍ଭ କରି ସରକାରୀ ଗେରୁଆ ମିଛଥିବା ଶିକ୍ଷାବିଭାଗୀୟ ଶାସନ ପର୍ଯ୍ୟନ୍ତ ସମସ୍ତେ କାରଣ ଅକାରଣରେ, କ୍ଷେତ୍ର ଅକ୍ଷେତ୍ରରେ ଏହି ଶବ୍ଦଟି ବ୍ୟବହାର କରନ୍ତି । ଏହି ଶବ୍ଦଟିର ଛତ୍ରଛାୟା ତଳେ ଆପଣାକୁ ଶିକ୍ଷକ ବା ଶିକ୍ଷାବିତ୍ ବୋଲାଇବାର ଦମ୍ଭ କରନ୍ତି । ତଥାପି ମୌଳିକ ଶିକ୍ଷା ଆମ ହାତରେ ଧରାଛୁଆଁ ଦେଉ ନାହିଁ । ସରକାରୀ ସଂଗଠନରେ ମୌଳିକ ସ୍କୁଲ ବସୁଛି । ସରକାରୀ କାଇଦାରେ ଶିକ୍ଷକ ଟ୍ରେନିଂ ପାଇ ମୌଳିକ ପାଠ ପଢ଼ାଇବାକୁ ଯାଉଛନ୍ତି । ବଢ଼ିଆ ସ୍କୁଲ ଘର ତିଆରି ହେଉଛି, ବଢ଼ିଆ ବଗିଚା ହେଉଛି, ପିଲାଏ ସୂତା କାଟୁଛନ୍ତି, ଜାତୀୟ ସଙ୍ଗୀତ ଗାଉଛନ୍ତି, ହାକିମ ହୁକୁମା ଆସିଲେ ବତାଇ ଦିଆଯାଇଥିବା କାଇଦାରେ 'ଜୟହିନ୍ଦ୍' ବୋଲି ଚିତ୍କାର କରି ପାରୁଛନ୍ତି; ତଥାପି ମୌଳିକ ଶିକ୍ଷାର ପ୍ରାଣ ଯେ ଏ ସବୁ ନୂଆ ଅନୁଷ୍ଠାନରେ ନାହିଁ ! ଏତେ କଡ଼ା ବ୍ୟବସ୍ଥା ଓ କଡ଼ା ପହରା ସତ୍ତ୍ୱେ ଅସଲ ମୌଳିକ ଶିକ୍ଷା ଯେ ମୌଳିକ ସ୍କୁଲମାନଙ୍କରୁ କୁଆଡ଼େ ଖସି ପଳାଉଛି, ଏକଥା ଆଜି ସମସ୍ତେ ସ୍ୱୀକାର କରୁଛନ୍ତି ।

ଗାନ୍ଧିଜୀ ଯେଉଁ ସମାଜ ଓ ଯେଉଁ ଶିକ୍ଷାଦର୍ଶର କଳ୍ପନା ଓ ଯୋଜନା କରିଥିଲେ, ଆମେ ତାହାର ଅନେକ ପଛରେ ରହିଛୁ । ଜାଗ୍ରତ, ନିର୍ଭୀକ ଓ ଆତ୍ମ ନିର୍ଭରଶୀଳ ବ୍ୟକ୍ତିର ଗଠନ କରି କିପରି ଏକ ଶୋଷଣମୁକ୍ତ, ମିତ-ନିର୍ଭରଶୀଳ ସହଯୋଗୀ ସମାଜ ସମ୍ଭବ ହୋଇପାରିବ, ଗାନ୍ଧିଜୀ ସେହି ସ୍ୱପ୍ନ ଦେଖିଥିଲେ । ଆମର ଏଠି ଆମେ ମୌଳିକ ଶିକ୍ଷା ପ୍ରଚଳନ କରୁଛୁ । ଏପରି ଦମ୍ଭ ଆମେ କରିବା ନାହିଁ । ମୌଳିକ ଓ ବେମୌଳିକ ଦୁଇଟା ଭିନ୍ନ ଭିନ୍ନ ଗୁଣ୍ଡ ଅଛି ବୋଲି ଆମେ ସ୍ୱୀକାର କରୁନାହୁଁ । ଆମେ ଏଠି ସତ୍‌ଶିକ୍ଷା ପାଇବାକୁ ଆସିଛୁ ଯୋଗ୍ୟ ମଣିଷ ହୋଇ ମନୁଷ୍ୟୋଚିତ ସମାଜ ଗଢ଼ିବାର ଉତ୍ସାହ ନେଇ ଆମେ ଏଠିକି ଆସିଛୁ । କେବଳ ସୁଶିକ୍ଷା ଓ କୁଶିକ୍ଷା ଭିତରେ ହିଁ ଯଥାର୍ଥ ତୁଳନା କରାଯାଇପାରେ । ଆମେ ଏଠିକାର ଜଙ୍ଗଲ କାଟି ଆମର ସଂସାରଟିକୁ ସୁନ୍ଦର କରି ଗଢ଼ିବା, ଆମର ପାରସ୍ପରିକ ସମ୍ପର୍କରୁ ଆମେ ସକଳ ପ୍ରକାର ମଳ ଓ ମ୍ଳାନତା ଦୂର୍ କରାଇବାକୁ ଚେଷ୍ଟା କରିବା, ଯାହା ଜାଣିଲେ

ସେଥରେ ସନ୍ତୁଷ୍ଟ ହୋଇ ରହିବାର ଗର୍ବ ନ କରି ଆମେ ଆହୁରି ଟପିବାକୁ ଯିବାକୁ ଆଗ୍ରହୀ ହେବା । ଏପରି କରିପାରିଲେ ଆମେ ଯେ କୌଣସି ସୁଶିକ୍ଷାର ନିକଟବର୍ତ୍ତୀ ହୋଇପାରିବା, ଯେ କୌଣସି ସୁବିବେକୀ ଶିକ୍ଷାବିତ୍ର ଆଶୀର୍ବାଦ ଆମେ ପାଇପାରିବା ।

୧୯ । ୮ । ୫୬

ଖାଲି ଆମର ଦେଶରେ କୌଣସି ଦାୟିତ୍ୱ-ପୂର୍ଣ୍ଣ କାର୍ଯ୍ୟରେ ନିଯୁକ୍ତ ହେବାଲାଗି ସ୍କୁଲ କଲେଜର ପାଠ ଦରକାର ହୁଏ । ସରକାରୀ ଅଫିସରେ କିରାଣି ହେବ ତ ବି. ଏ. ପାସ କରିଥିବା ଚାହିଁ । କଲେଜର ପିଲାଙ୍କୁ ପାଠ ପଢ଼ାଇବ ତ ଏମ୍. ଏ. ପାସ କରିଥିବା ଚାହିଁ । ଖାଲି ଆମର ଦେଶରେ ଓ ଆମରି ପରି ଅଧୋଗତ ହୋଇ ରହିଥିବା ଦେଶମାନଙ୍କରେ ଡିଗ୍ରୀର ଖୋଜା ଲୋଡ଼ା ହୁଏ । ଅନ୍ୟ ସ୍ୱାଧୀନ ଦେଶମାନଙ୍କରେ ମଣିଷ ବାଛିବାର ରୀତି ନିଆରା । ସେଠି ଡିଗ୍ରୀର ଯୋଗ୍ୟତାକୁ ସବୁଠାରୁ ପ୍ରଧାନ ବୋଲି ଗଣାଯାଏ ନାହିଁ । ଯିଏ ଯେଉଁ କାମରେ ରହିବ, ସିଏ ସେ କାମକୁ ତୁଲାଇ ପାରିବ କି ନାହିଁ ପ୍ରଧାନତଃ ସେହି କଥାର ବିଚାର କରାଯାଏ । ତେଣୁ କଲେଜର ଦୁଆର ମାଡ଼ି ନ ଥିଲେ ମଧ୍ୟ ସେଠି ମଣିଷ ଆପଣାର ଦକ୍ଷତା ଥିଲେ ଅନେକ ଉପରକୁ ଉଠିଯାଇପାରେ । ସେଠି ଖବରକାଗଜ ବିକୁଥିବା ପିଲା ଦିନେ ରାଷ୍ଟ୍ରପତି ହୋଇପାରେ । ସାଧାରଣ ସୈନିକ ସର୍ବୋଚ୍ଚ ସେନାପତି ମଧ୍ୟ ହୋଇପାରେ । ଏସବୁ ଲାଗି ବି. ଏ. ବା ଏମ୍. ଏ. ର ସାର୍ଟିଫିକେଟ ଦରକାର ହୁଏନାହିଁ ।

ଆମ ଦେଶରେ ଶିକ୍ଷା ଆଉ ଶିକ୍ଷିତପଣିଆ ନାମରେ କି ରୋଗ ପଶିଛି କେଜାଣି, ସବୁଠୁଁ ଆମେ ମଣିଷ ସହିତ ଡିଗ୍ରୀର ଲାଞ୍ଜୁଡ଼ ଖୋଜି ବୁଲୁଛୁ । ଗୋଟାଏ ବଡ଼ କଲେଜରୁ ପାସ୍ କରି ଆଣିଥିବା ପ୍ରମାଣ-ପତ୍ର ତୁମ ପାଖରେ ଅଛି ତ, ତୁମର ଆଉ କିଛି ଭାବନା ନାହିଁ । ତୁମଲାଗି ବଡ଼ ଚାକିରି ଥୁଆ । ଦେଶର ରାଜନୀତିରେ ପଶିଲେ ତୁମେ ମନ୍ତ୍ରୀ ହୋଇପାରିବ । ସାମାଜିକ କ୍ଷେତ୍ରରେ ପଶିଲେ ତୁମେ ନେତା ହୋଇପାରିବ । ଅପଣା ଦପ୍ତରରେ ବସି

ତୁମେ ଗ୍ରେଉକର ପଛରେ, ସମାଜର ସେବକ ବୋଲଇ ତୁମେ ସମାଜକୁ ଠକୁଥାଅ ପଛକେ, ତୁମକୁ କେହି ସନ୍ଦେହ କରିବେ ନାହିଁ; ତୁମ ଉପାର୍ଜନର ବାଟକୁ କେହି ବନ୍ଦ କରି ପାରିବ ନାହିଁ । ଆଜି ଆମ ସମାଜରେ ସେହି କଥା ଚାଲିଛି । ଡିଗ୍ରୀର ଜଉମୋହରରୁ ଗୋଟାଏ ଗୋଟାଏ ଆପଣା ପୁଚ୍ଛରେ ବସାଇ ଦେଇ ଦେଶର ବଡ଼ଲୋକ, ଦେଶର ଦୁର୍ବୃତ୍ତ ଆଜି ଦେଶ ଓ ସମାଜକୁ ଠକିବାରେ ଲାଗିଛନ୍ତି; ତଥାପି ସେମାନଙ୍କର କିଛି ହେଉନାହିଁ । ଦେଶରେ ଦୁର୍ଭିକ୍ଷ, ମରୁଡ଼ି ଲାଗିଥିଲାବେଳେ ସେମାନଙ୍କର ବ୍ୟପାର ବେଶ୍ ଚାଲିଛି । ଏସବୁ କିପରି ସମ୍ଭବ ହେଉଛି ? ମୁଁ କହିବି, ସେମାନଙ୍କର ଶିକ୍ଷା ସେମାନଙ୍କୁ ଏପରି କରିଛି ।

ଖାଲି ପଢ଼ୁଥିବା ପାଠରେ ଗୋଟାଏ ଡିଗ୍ରୀ ହାସଲ କରିପାରିଲେ ମଣିଷ ଅଧିକ ଯୋଗ୍ୟ ବା ଦକ୍ଷ ହୋଇଯିବ ନାହିଁ । ମୋର ପାଠ ମୋତେ ଅଧିକ ଚରିତ୍ରବାନ କରିବ । ମଣିଷ ସମାଜରେ ମଣିଷପରି ଚାଲିବାକୁ ମୋତେ ଆହୁରି ପ୍ରେରଣା ଦେବ—ଏହାହିଁ ଶିକ୍ଷାର ଅସଲ ଉଦ୍ଦେଶ୍ୟ । ଆମ ଦେଶରେ ମଧ୍ୟ ଏହିପରି ମନୋବୃତ୍ତି ଆସିବା ଉଚିତ । ଗଣିତ, ସାହିତ୍ୟ, ଇତିହାସ ଆଉ ଭୂଗୋଳର କେତୋଟା ବିଷୟରେ କିଛି କଥା ଜାଣିଗଲେ ବା କେତୋଟା ବହି ପଢ଼ିପକାଇଲେ ଯେ ମୁଁ ଶିକ୍ଷିତ ହୋଇଯିବି, ଏକଥା ମିଛ । ମୋର ପାଠ ମୋତେ ଅଧିକ ସଚ୍ଚୋଟ ଓ ଅଧିକ ଶ୍ରଦ୍ଧାବାନ ହେବାରେ ସହାୟତା କରିପାରିଲେହିଁ ତାକୁ ମୁଁ ଯଥାର୍ଥରେ ପାଠ ବୋଲି କହିବି । ଆମ ଦେଶରେ ଆଜି ସମାଜକୁ ଠକୁଥିବା ଲୋକଙ୍କୁ ମଧ୍ୟ ପାଠୁଆ ବୋଲି କୁହାଯାଉଛି । ଦୁଷ୍ଚରିତ୍ର ସ୍ୱାର୍ଥପରମାନଙ୍କୁ ମଧ୍ୟ ପାଠୁଆର ସମ୍ମାନ ଦିଆଯାଉଛି । ଆମର ଚରିତ୍ର ଓ ସ୍ୱଭାବରେ ଆବଶ୍ୟକ ପରିବର୍ତ୍ତନ ଆଣିବାର କୌଣସି ଆଗ୍ରହ ନ ରଖି ଯଦି ଆମେ ଖାଲି ବହିର ପାଠ ମୁଖସ୍ଥ କରିବାକୁ ଓ ହିନ୍ଦୀ ବା ଇଂରାଜୀରେ ଗୁରପଦ କହିପାରିବାକୁ ଏଠିକି ଆସିଥିବା, ତେବେ ଏହା ନିଶ୍ଚିତ କଥା ଯେ ବଡ଼ହେଲେ ଆମେ ମଧ୍ୟ ଏହି ଠକ ସମାଜରେ ଠକ ହୋଇ ମିଶିଯିବା । ଆମେ ବି ଏହି ସମାଜର ଅନ୍ଧାରର ସୁଯୋଗ ନେଇ ବାଲୁଆ ପରି ମତ୍ ଖୋଜି ବୁଲିବା; ଆମେ ଏ ସମାଜକୁ ବଦଳାଇ ପାରିବା ନାହିଁ । ସମାଜରେ ଆମେ ସନ୍ତୁ

ପାଠ ବା ସତ୍ ଶିକ୍ଷାର ପ୍ରତିଷ୍ଠା କରି ପାରିବା ନାହିଁ । କିନ୍ତୁ ସମସ୍ତ ପାଠପଢ଼ା ଭିତରେ ଆପଣାର ଚରିତ୍ର ଓ ସ୍ୱଭାବକୁ ଅଧିକ ଉନ୍ନତ କରିବାକୁ ଯଦି ଆମେ ମୂଳ ଲକ୍ଷ୍ୟକରି ରଖି ପାରିବା, ତେବେ ଆମେ ଆମର ଜୀବନ ବଦଳାଇବା ସଙ୍ଗେ ସଙ୍ଗେ ଏ ସମାଜରେ ମଧ୍ୟ ପୁଣି ନୂଆ ଜୀବନ ଭରିଦେଇ ପାରିବା । ଆମେ ଯଥାର୍ଥରେ ଆମକୁ ବିପ୍ଳବୀ ବୋଲି କହିପାରିବା ।

୨୩ । ୮ । ୫୫

ଆଉ ତିନି ଦିନ ଗଲେ ଆମେ ଆମ ଅନୁଷ୍ଠାନଟିର ପ୍ରଥମ ଜନ୍ମୋତ୍ସବ ପାଳନ କରିବା । କେମିତି ଖୁସି ଆଉ ଆନନ୍ଦ ମଧ୍ୟଦେଇ ଆମେ ସମ୍ମିଳିତ ଭାବରେ ଦିନଟି ଉଦ୍‌ଯାପନ କରି ପାରିବା, କାଲି ସମସ୍ତେ ଏହି କଥା ଆଲୋଚନା କରୁଥିଲେ । କାହାର ଜନ୍ମୋତ୍ସବ ଆମେ ପାଳନ କରିବାକୁ ଯାଉଛେଁ, କୋଉଥିଲାଗି ଅଗଷ୍ଟ ୨୬ ତାରିଖ ପାଖେଇ ଆସୁଛି ବୋଲି ଆମର ପ୍ରାଣ ଆନନ୍ଦରେ ପୂରିଉଠୁଛି । କାଲି ମନେ ମନେ ମୁଁ ଏ କଥା ଭାବୁଥିଲି ।

ବଡ଼ଲୋକ ଘରେ ଜନ୍ମଦିନ ପାଳନ ହେବାର ରୀତି ଅନ୍ୟପ୍ରକାର । ସେଠି ନାନା ଆଡ଼ମ୍ବର ଓ ଆୟୋଜନରେ ଉତ୍ସବଘର ମୁଖରିତ ହୋଇ-ଉଠେ । ସାଜସଜ୍ଜାରେ ସେଦିନ ସବୁ ଫାଟିପଡ଼ିଲା ପରି ଲାଗେ । ଜନ୍ମଦିନ ପାଳନ କରିବାକୁ ଆମର କ'ଣ ଅଛି ? କେତେ ବର୍ଷର ଘରେ ଯେକୌଣସି ପ୍ରକାରେ ଆମର ଦିନ କଟିଯାଉଛି । ଦିନେ ଏଠି ପୂର୍ଣ୍ଣସ୍ରୋତରେ ପାଠଶାଳାର ସମସ୍ତ କାର୍ଯ୍ୟକ୍ରମ ଚାଲିବ, ଏହି ଆଶାରେ ଆମେ ଅଶେଷ ଧୈର୍ଯ୍ୟଧରି ଏଠି ପଡ଼ି-ରହିଛେ । ଏଠୁ ସଭ୍ୟତା ଅନେକ ଦୂରରେ ରହିଛି । ଉପଭୋଗୀ ଜୀବନର ହାଟ ବଜାର ଅନେକ ଦୂରରେ ରହିଛି । ସେହି ବଜାର ଭିତରୁ ଗାଡ଼ି ମଟର ଧରି ଜୋତା ମୋଜା ପିନ୍ଧି କେହି ଆମର ଏଠିକି ଆସିଲେ ହୁଏତ ଆମର ଆଖି ଝଲସିଯାଉଛି, ମନ ଦବିଯାଉଛି, ମନର ଦୁର୍ବଳତା ପ୍ରବଳ ହୋଇଉଠୁଛି । ସତେ କ'ଣ ଆମେ ଏହିମାନଙ୍କ ପରି ହୋଇପାରିବା ? ସତେ କ'ଣ ସଭ୍ୟ

'ବୋଲି ଗଣାଯାଉଥିବା ସଞ୍ଚିତ ମଣିଷର ସମ୍ମାନ ମୂଲ୍ୟରେ ସଂସାରର ଜୀବନ-ବଜାରରେ ଆମେ କଣାବକା ହୋଇପାରିବା ? ହୁଏତ ଏହିପରି ସଂଶୟ-ମାନ ଆମ ମନକୁ ଅଧିକାର କରିନିଏ । ଆମେ ମନେ ମନେ ଅତି ଦୁର୍ବଳ ହୋଇପଡ଼ୁଁ ।

ମୁଁ କିନ୍ତୁ ଓଲଟା ପ୍ରକାରରେ ଭାବେ । ମୋର ଜୀବନର ଜିଜ୍ଞାସା ନେଇ ଯେଉଁଠି ମୁଁ ଆଉ ପାଞ୍ଚଜଣ ଜିଜ୍ଞାସୁ ଭାଇ-ଭଉଣୀଙ୍କ ସହିତ ଏକତ୍ର ହୋଇ-ପାରିଛି, ସେ କ୍ଷେତ୍ରକୁ ମୁଁ ସଂସାରର ହାଟ ବଜାର ସହିତ ତୁଳନା କରିବାକୁ ଯିବି କାହିଁକି ? ଆମର କୋଠାଘର ନାହିଁ, ଆମର ବାଟ ଉପରେ ବାଡ଼ ପକାଇବାକୁ ଏଠି କୌଣସି ସଂତ୍ରସ୍ତ ଶିକ୍ଷକ-ଶାସକ ନାହାନ୍ତି, ଆମର ଆଡ଼ମ୍ବର ନାହିଁ, ସରକାର ଘରର କୌଣସି ଫାଇଲ ଓ ହାକିମର ଲାଞ୍ଚରେ ଆମେ ଆପଣାକୁ ଗୁଞ୍ଜି ଦେଇନାହୁଁ—ତଥାପି ଏଠି ଆମେ ପଚିଶଜଣ ବିକଶିତ ହେବାର ନିର୍ମଳ ମନ ନେଇ ଏକାଠି ହୋଇଛୁ । ଏଠି ପଚିଶ ଜଣଙ୍କର ଜିଜ୍ଞାସା ଏକତ୍ର ହୋଇଛି, ପଚିଶ ଜଣଙ୍କର ଶ୍ରଦ୍ଧା ଏକତ୍ର ହୋଇଛି, ପଚିଶ ଜଣଙ୍କର ସ୍ୱପ୍ନ ଓ ସାଧନା ଏକତ୍ର ହୋଇଛି । ପଚିଶ ଜଣଙ୍କର ବାଟ ଚାଲିବାର ଆନନ୍ଦରେ ନିତି ଏଠିକାର ଅରଣ୍ୟପଥ ପୁଲକିତ ଓ ସ୍ପନ୍ଦିତ ହୋଇଉଠୁଛି । ଆମର ସଂଶୟ କୋଉଥିପାଇଁ, ଆମର ଆଉ ଭୟ କୋଉଥିପାଇଁ ? ଆମର ଅନୁଷ୍ଠାନର ଜନ୍ମଦିନ ଆମକୁ ଏହି ନିର୍ଭୟ ହେବାର ମନ୍ତ୍ର ଦେଇଯାଉ । ସବୁ-ପ୍ରକାର ସଂଶୟ ପାରାବାରକୁ ପାରି କରାଇ ଏହି ଦିନଟି ଭଗବାନଙ୍କର ଅଭୟ ଭିତରେ ଆମକୁ ନୂତନ ଜନ୍ମ ଦେଇଯାଉ ।

ଅଥର୍ବ ବେଦ (୨।୧୫) ରେ କ୍ରାନ୍ତଦର୍ଶୀ ଋଷି କହିଛନ୍ତି—ଆକାଶ ଆଉ ପୃଥିବୀ ଯେମିତି ଅନନ୍ତ କାଳରୁ ନିଜର କାମ କରି ଚାଲିଛନ୍ତି, କଦାପି ଭୟ କରୁନାହାନ୍ତି ବା କ୍ଷୀଣ ହୋଇ ପଡ଼ୁନାହାନ୍ତି, ସେହିପରି ହେ ମୋର ପ୍ରାଣ ! ତୁ ମଧ୍ୟ ଡରନା, ତୁ ମଧ୍ୟ କ୍ଷୀଣହୋଇ ପଡ଼ନା···ଯେପରି ଦିନ ଆଉ ରାତି ଅନନ୍ତ କାଳରୁ ଆପଣାର କାମ କରି ଚାଲିଛନ୍ତି, କଦାପି ଭୟ କରୁ

ନାହାନ୍ତି ବା କ୍ଷୀଣହୋଇ ପଡ଼ୁନାହାନ୍ତି । ସେହିପରି ହେ ମୋର ପ୍ରାଣ ! ତୁ ମଧ୍ୟ କେବେହେଲେ ଭୟ କରନା, ତୁ ମଧ୍ୟ କେବେ କ୍ଷୀଣ ଦୁର୍ବଳ ହୋଇ-ଯଡ଼ନା ।

ଯଥା ଦ୍ୟୌଶ୍ଚ ପୃଥିବୀ ଚ ନ ବିଭୀତୋ ନ ରିଷ୍ୟତଃ
ଏବା ମେ ପ୍ରାଣ ମା ବିଭେଃ ଏବା ମେ ପ୍ରାଣ ମାରିଷଃ ।।...
ଯଥା ଅହଶ୍ଚ ରାତ୍ରି ଚ ନ ବିଭୀତୋ ନ ରିଷ୍ୟତଃ
ଏବା ମେ ପ୍ରାଣ ମା ବିଭେ ଏବା ମେ ପ୍ରାଣ ମେ ରିଷଃ ।।

୨୪ । ୮ । ୫୫

କାଲି ନିର୍ଭୟ ହେବା କଥା କହିଥିଲି । ଆଜି କର୍ମଠ ବା କର୍ମପରାୟଣ ହେବାର କଥ କହିବି । ଆମ ଦେଶରେ ମୂଲିଆ କାମ କରେ, ପାଠୁଆ କାମ କରେ ନାହିଁ । ଆମର ପାଠୁଆ କିପରି ଅଳସ ବିନୋଦନରେ ସମୟ ଅତିବାହିତ କରିପାରିବ, ଆମର ସମାଜ ସେଥିଲାଗି ସବୁପ୍ରକାର ବ୍ୟବସ୍ଥା କରି ରଖିଛି । ଯେଉଁସବୁ କାମ କଲେ ଦେହରୁ ଝାଳ ବୁହେ, କେବଳ ସେଇଆକୁ ମୁଁ କାମ ବୋଲି କହିବି ନାହିଁ । ସଂସାରରେ ଏପରି କୃଷୀ ବା ଶ୍ରମିକ ଅନେକ ଅଛନ୍ତି, ଯେଉଁମାନେ ଦିନକୁ ଅ'ଠଘଣ୍ଟା ଦେହରୁ ଝାଳ ବୁହାନ୍ତି, ତଥାପି ମୁଁ ତାଙ୍କୁ କର୍ମଠ ବା କର୍ମପରାୟଣ କହିବି ନାହିଁ । କେବଳ କାମ କରିବା ଛଡ଼ା ଅନ୍ୟ ଗତି ନ ଥାଏ ବୋଲି ସେମାନେ କାମ କରନ୍ତି । ସେଥିଲାଗି କାମରୁ ତ୍ରାହି ପାଇବା ମାତ୍ରକେ ସେମାନେ ମଦଭାଟିରେ ବା ଜୁଆ-ଘରେ ଅଳସ ସମୟ ଯାପନ କରିବାକୁ ଧାଇଁ ଯାଆନ୍ତି । ଯିଏ କର୍ମଠ, ସିଏ ସବୁଥିରେ କର୍ମଠ; ଶରୀର ତାର ଆପଣା ମନର ଆୟତ୍ତରେ ରହିଛି । ଶାରୀରିକ, ମାନସିକ ପ୍ରତ୍ୟେକ କାମ ଲାଗି ତା ଭିତରେ ଉତ୍ସାହ ସ୍ୱତଃ ମହଜୁଦ ହୋଇ ରହିଛି ।

ଆମେ ଏଠି କାମ କରୁଛୁ । ଆମର ହାତଗୋଡ଼ ଓ ମାଂସପେଶୀ କାମ କରୁଛନ୍ତି । ଆମର ମନ କାମ କରୁଛି, ଆମର ହୃଦୟ ମଧ୍ୟ କାମ କରୁଛି ।

କିନ୍ତୁ ପ୍ରଧାନତଃ ବାଧହୋଇ, ଚାପରେ ପଡ଼ି ଆମେ କାମ କରୁନାହୁଁ ତ ? କାମରୁ ଟିକିଏ ତ୍ରାହି ପାଇଲେ ହୁଏ ତ ଆମେ ଲୋଭୀ ଜୀବାଣୁ ପରି ଅଳସ ଜୀବନର ନାନା କ୍ଷତବିକ୍ଷତ ଉପରେ ବସିବାକୁ ଧାଇଁଯାଉଛୁ । ଆମ ଉପରେ ଥିବା ଚାପ ଟିକିଏ ଦୂରଛଡ଼େଇ ଗଲେ ହୁଏ ତ ଆମେ ନାନା ଦୁଷ୍ଟତାର ଦୈତ୍ୟପଣିଆରେ ଆପଣାକୁ ସମର୍ପି ଦେବାକୁ ଆକୁଳ ହୋଇଉଠୁଛୁ । ଆମ ଶରୀର ଆମ ମନର ଅଧୀନକୁ ଆସି ନାହିଁ । ଆମର ମନକୁ ଆମେ ଗୋଟିଏ ମହତ୍ ଓ ରଚନାମୂଳକ ଧ୍ୟେୟ ଲାଗି ଲଗାଇ ଶିଖି ନାହୁଁ ।

ଏହି ଅଳସୁଆ ମନ ନେଇ ଆମେ ନୂଆ ବର୍ଷର ଜନ୍ମୋତ୍ସବ କପରି ପାଳନ କରିବାକୁ ଯିବା ? ସମସ୍ତ ପ୍ରକାର ଭୟ ଛାଡ଼ିଲା ପରି ସକଳ ପ୍ରକାର ଆଳସ୍ୟକୁ ମଧ୍ୟ ଆମକୁ ଛାଡ଼ି ଆସିବାକୁ ହେବ । ଏଥିଲାଗି ସେହି ପୁଣ୍ୟଦିନରେ ଆମେ ଆମର ଜୀବନ-ଦେବତା ପାଖରେ ବଳ ଆଉ ସାହସ ପାଇଁ ପ୍ରାର୍ଥନା କରିବା । ଆମେ ସମସ୍ତେ ଭଗବାନଙ୍କର ପ୍ରିୟ, ଦେବତାମାନଙ୍କର ପ୍ରିୟ ହେବା ଉଚିତ । କିନ୍ତୁ ଅଳସୁଆ କଦାପି ଦେବତାର ପ୍ରିୟ ହୋଇ ପାରିବ ନାହିଁ । "ଦେବା ...ନ ସ୍ୱପ୍ନାୟ ସ୍ପୃହୟନ୍ତି··" ଋକ୍‌ବେଦର ଋଷି ଆମକୁ ଏହି ସତର୍କବାଣୀ ଶୁଣାଇ ଦେଇଛନ୍ତି ।

ଆମେ ସମସ୍ତେ କର୍ମପରାୟଣ ହେବା । ଦେହ ସହିତ ମନର ଖିଅ ଲାଗିଛି, ମନ ସହିତ ଅନ୍ତରର ଖିଅ ଲାଗିଛି । କୌଣସି ଗୋଟିଏ ଅଳସୁଆ ହୋଇ ପଡ଼ିଲେ ତିନୋଟିଯାକ ଅଳସୁଆ ହୋଇପଡ଼ିବ । ଜୀବନର ଲକ୍ଷ୍ୟ ହେଉଛି ଉନ୍ନତ ହେବା, ଆଗକୁ ଯିବା । 'ଆରୋହଣମାକ୍ରମଣଂ ଜୀବତୋ ଜୀବତୋଽୟନମ୍' (ଅଥର୍ବ: ୫।୩୦।୭) । ଆମର ଚକ୍ଷୁ ସମ୍ମୁଖ ଆଡ଼କୁ ହେଉ, ଆମର ବୁଦ୍ଧି ଆଗକୁ ଯିବାଲାଗି ଆମକୁ ସାଧନା ଯୋଗାଇଦେଉ । ଆମର ହୃଦୟ ନୂତନତର ଏବଂ ଗଭୀରତର ଅନୁଭୂତି ଦ୍ୱାରା ଆମକୁ ଆଗକୁ ଯିବାର ଉତ୍ସାହରେ ପୂର୍ଣ୍ଣ କରି ରଖୁ । ଆମେ ଆଉ ଦୁର୍ବଳ ଚିନ୍ତାର ବନ୍ଧନରେ ପଡ଼ି ଆପଣାକୁ ଦୁର୍ବଳ କରି ଦେବା ନାହିଁ । ଭବିଷ୍ୟତର ଅନିଶ୍ଚିତ କଳ୍ପନାରେ ବର୍ତ୍ତମାନର ସମସ୍ତ ଚଳନ-ଶକ୍ତିକୁ କ୍ଳାନ୍ତ କରିଦେବାର ନିର୍ବୋଧ ସର୍ବଦା

ଆଉ ଆମେ ଆମ ଜୀବନରେ କରିବା ନାହିଁ । ନାନା ଦ୍ୱେଷ ଓ ଦ୍ୱେଷଜନିତ ଦହନରେ ଆମର ସହଜ-ଗ୍ରହଣ ଓ ସମ୍ପ୍ରଦାନ-ଶକ୍ତିକୁ ଆମେ ବିକୃତ କରି ପକାଇବା ନାହିଁ । ଶରୀରର ମାଂସପେଶୀକୁ, ମନକୁ, ବିଚାରକୁ ତଥା ହୃଦୟକୁ ଆମେ ସର୍ବଦା ସଚଳ ଓ କର୍ମଠ ରଖି ଶିଖିବା; ଏହିପରି 'କର୍ମଠ ରହିବାକୁ ଆମେ ଶ୍ରଦ୍ଧା କରି ଶିଖିବା । କୌଣସି ଜାଗାରେ ଆମେ ଅଟକି ଯିବା ନାହିଁ, କୌଣସି ଜାଗାରୁ ହଟି ପଳାଇ ଆସିବା ନାହିଁ । ଜଗତକୁ ନିନ୍ଦା କରି କୌଣସି କ୍ଷେତ୍ରରେ ଆମେ ନିକମା ହୋଇ ବସିଯିବା ନାହିଁ । ମୋର ଡାହାଣ ହାତରେ କର୍ମ ରହିଛି, ପୁରୁଷାର୍ଥ ରହିଛି ଏବଂ ବାମ ହାତରେ ସଫଳତା ମଧ୍ୟ ରହିଛି । ବେଦର ମନ୍ତ୍ରଦ୍ରଷ୍ଟା ଆମକୁ ଏହି ସାହସୀ ବାଣୀ ଶୁଣାଇ ଯାଇଛନ୍ତି । "କୃତଂ ମେ ଦକ୍ଷିଣେ ହସ୍ତେ, ଜୟୋ ମେ ସବ୍ୟ ଆହିତଃ'', (ଅଥର୍ବ: ୭।୫୦।୮)

୨୫ । ୮ । ୫୫

ଆମେ ସମସ୍ତେ ମିଶି ଆମ ବିଦ୍ୟାଳୟଟିର ପ୍ରଥମ ଜନ୍ମୋତ୍ସବ ପାଳନ କରିବାକୁ ଯାଉଛେଁ । ଖୁସିହୋଇ ସ୍ୱତଃ-ପ୍ରଣୋଦିତ ହୋଇ ଆମେ ଏହି ଉତ୍ସବ ଲାଗି ସଜବାଜ ହେଉଛେ । ଏହି କଥାଟି ମୋତେ ସବୁଠାରୁ ଅଧିକ ଆନନ୍ଦ ଦେଉଛି । ହସ ଆଉ ଖୁସି, ଆଗ୍ରହ ଆଉ ଆନନ୍ଦ ଏସବୁ ଯେତେବେଳେ ଅତି ସହଜ ଓ ସ୍ୱାଭାବିକ ଭାବରେ ଜାଗରିତ ହୁଏ, କେବଳ ସେତିକି-ବେଳେ ଏ ସବୁକୁ ଯଥାର୍ଥ ବୋଲି କୁହାଯାଇପାରେ । ଆଇନ କରି, ଆଦେଶ ବା ନୋଟିସ ଦେଇ କେହି ଆଗ୍ରହ ଆଉ ଆନନ୍ଦ ସୃଷ୍ଟି କରି ପାରେନାହିଁ ।

ଅଗଷ୍ଟ ପନ୍ଦର ଆଉ ଜାନୁଆରୀ ଛବିଶିର ସ୍ୱାଧୀନତା ଦିବସକୁ ବିଧି-ମୁତାବକ ପାଳନ କରିବାକୁ ସରକାର୍ ସବାଉପର କଚେରୀରୁ ସ୍କୁଲ୍ କଲେଜ-ମାନଙ୍କୁ ହୁକୁମନାମା ଆସେ । ଆମ ଦେଶର ସ୍ୱାଧୀନତା ଦିବସରେ ଆମ ଦେଶର ପିଲାଏ ଓ ଶିକ୍ଷକମାନେ ସ୍ୱତଃ ଖୁସି ହେବାର କଥା, ଗୌରବ ଅନୁଭବ କରିବାର କଥା । କିନ୍ତୁ ଏହିପରି ଅନୁଭବ କରିବାର ଟ୍ରେନିଂ

ଦେବାର ଦାୟିତ୍ୱ ଆମର ସରକାର ନେଇଛନ୍ତି । ସେଥିଲାଗି ଭୁବନେଶ୍ୱରରୁ ଅଜସ୍ର ପଇସା ଖରଚ ହୋଇ ଛୁପା ନୋଟିସ ଗୃହଆଡକୁ ପଠାଯାଉଛି । ତାହା ପୁଣି ନାନା ବାଙ୍କ ଓ ନାନା ମୋଡରେ ଥିବା ଅଫିସ ଓ ହାକିମଙ୍କୁ ପାରହୋଇ ଶ୍ରେଷ୍ଠ ବଡ ଗାଁର ଶ୍ରେଷ୍ଠ ବଡ ମାଷ୍ଟର ପାଖରେ ପହଞ୍ଚୁଛି । ଏତେଟାବେଳେ ପ୍ରଭାତଫେରି କରିବ, ଏତେଟାବେଳେ ପତାକା-ବନ୍ଦନ କରିବ ଏମିତି ରୀତରେ ଜାତୀୟ ସଙ୍ଗୀତ ଗାଇବ, ସେମିତି ରୀତରେ ପତାକାକୁ ନମସ୍କାର କରିବ, ଏହିପରି ଠିକଣାଖି ଅନେକ ନିର୍ଦ୍ଦେଶ ଦିଆଯାଉଛି । ଯେଉଁ ଦେଶର ପିଲାଙ୍କ ମୁହଁରେ ଆନନ୍ଦ ନାହିଁ କି ହସ ନାହିଁ, କେବଳ ସେହି ଦେଶରେ ହିଁ ନୋଟିସ ଦେଇ ସ୍ୱାଧୀନତାର ଆନନ୍ଦ ବିଷୟରେ ଚେତାଇ ଦେବା ଦରକାର ପଡେ ।

ଆମେ ଆଜି ବିନା ନୋଟିସରେ ଅଗଷ୍ଟ ୧୬ ତାରିଖ ଲାଗି ଆନନ୍ଦିତ ହୋଇଉଠୁଛୁ । ଖୁସିରେ ଆମେ ଘର ଦୁଆର ଲିପିପୋଛି ଚିତା ପକାଇ ରଖୁଛୁ, ଖୁସିରେ ଭୋଜିଭାତ ଆଉ ନିମନ୍ତ୍ରଣର ବରାଦ କରୁଛୁ, ଗୀତ ଶିଖୁଛୁ, ସମସ୍ତଙ୍କ ଆଗରେ ପଢି ଶୁଣାଇବାଲାଗି ଲେଖା ଲେଖିରଖୁଛୁ । ଏହିଠି ଉତ୍ସବର ସାର୍ଥକତା ନିହିତ ହୋଇ ରହିଛି । ଏହି ସହଜଖୁସି ଓ ସ୍ୱଭାବଖୁସି ଭିତରେ ହିଁ ଅସଲ ଜୀବନ ରହିଛି । ଥରେ ଭାବିଲ, ଯଦି ନୋଟିସ ଦିଆ ହୋଇ ଆମ ବିଦ୍ୟାଳୟର ଜନ୍ମୋତ୍ସବ ପାଳନ କରାଯାଉଥାନ୍ତା, ତେବେ ଆମର ସମସ୍ତ ସାଜସଜ୍ଜା, ସମସ୍ତ କାର୍ଯ୍ୟକ୍ରମ କିପରି ହାସ୍ୟାସ୍ପଦ ହୋଇ ପଡୁଥାନ୍ତା ! ଇସ୍କୁଲ ଦେଖି ଆସିଥିବା ହାକିମର ମନକୁ ଖୁସି କରିବାକୁ ଏଣେତେଣେ ଧାଇଁଥିବା ମାଛିର ବିଚରା ପରି ଆମେ ମଧ୍ୟ ଏଣେତେଣେ ଧାଉଁଥାନ୍ତେ । ଏହି ଅସ୍ୱାଭାବିକତାର ରୂପ ଆମର ସମସ୍ତ ଆନନ୍ଦକୁ ଅପହରଣ କରି ନେଇଥାନ୍ତା । ଆଉ ଏହିପରି ଏକ ବାତାବରଣ ଭିତରେ ରହିଥିଲେ ଆମର ଜୀବନ ବିକଳ ହୋଇ ପଡିଥାନ୍ତା ।

ଆମର ସବୁ କଥା ସେହିପରି ସହଜ ହେବ, ଆମର କଥା ଆଉ କାମ ସହଜ ହେବ, ଆମର ହୃଦୟ ସହଜ ହେବ, ଆମର ବ୍ୟବହାର ସହଜ

ହେବ, ଆମର ଜୀବନ ସହଜ ହେବ । କୌଣସିଠାରେ କୌଣସି ପ୍ରକାର ପରର ପ୍ରମତ୍ତତା ଆମ ଜୀବନରେ ଆମେ ପ୍ରବେଶ କରାଇବାକୁ ଦେବା ନାହିଁ । ଆମ ହୃଦୟ ଭିତରେ କୌଣସି ଗଣ୍ଠି ରହିବ ନାହିଁ । ଉପନିଷଦର କଥାପରି ହୃଦୟର ସବୁ ଗଣ୍ଠି ଫିଟିଯିବ, ମନର ସବୁ ସଂଶୟ ଆମର ଛାଡ଼ିଯିବ । ଆମ ଏଠିକାର ଶିକ୍ଷା ସମାପ୍ତ କରି ମୂଲିଆ ହେବା । କି ମାଲିକ ହେବା, ମୂରୁଖ ହେବା କି ପାଠୁଆ ହେବା, ମୁଁ ସେ କଥା କେବେ ବିଚାରି ନାହିଁ । ଆମ ସମସ୍ତଙ୍କର ଜୀବନକୁ ମୁଁ ଗୋଟିଏ ଗୋଟିଏ ଫୁଲଗଛ ସହିତ ତୁଳନା କରିଥାଏ । ସମସ୍ତ ସାଧନା ଦେଇ ଆମେ ଏହି ଗଛଟିରେ ଆପଣାର ନିଜସ୍ୱ ଫୁଲଟି ଫୁଟାଇବା । ଏହି ଫୁଲର ଫୁଟିବା ଲାଗି କୌଣସି ପରର ଦରକାର ନାହିଁ । ପଇଁକରେ କାଟିଲେ ବା ହାତୁଡ଼ିରେ ଯେତେ ପିଟିଲେ ମଧ୍ୟ ତୁମେ କେହି ଫୁଲ ଫୁଟାଇ ପାରିବ ନାହିଁ । ଯିଏ ଫୁଟିବ, ସିଏ ଆପଣା ଛାଡ଼ରେ ଆପେ ଫୁଟିବ । କବିଗୁରୁ ରବୀନ୍ଦ୍ରନାଥ ସଂସାରର ସବୁ ଅଭିମାନୀଙ୍କୁ ଏହି ସତର୍କବାଣୀ ଶୁଣାଇଛନ୍ତି । କାଲିର ପୁଣ୍ୟତିଥିରେ ଜୀବନର ଏହି ସହଜ ତତ୍ତ୍ୱଟି ଆମେ ମନେରଖିବା ।

୨୭ । ୮ । ୫୫

ଐତରେୟ ବ୍ରାହ୍ମଣରେ (୭।୧୫।୧-୫) ଗୋଟିଏ ଚମତ୍କାର ଗପ ଅଛି । ରାଜପୁତ୍ର ରୋହିତ ବାଟ ଚାଲି ଚାଲି ଥକା ପଡ଼ିବାରୁ ବିଶ୍ରାମ ପାଇବାଲାଗି ଘରକୁ ଫେରି ଆସୁଥାନ୍ତି । ଏହି ସମୟରେ ଇନ୍ଦ୍ର ଗୋଟିଏ ବୁଢ଼ା ବ୍ରାହ୍ମଣର ରୂପ ଧରି ତାଙ୍କୁ ଦେଖାଦେଲେ । ପାଞ୍ଚଟି ଶ୍ଳୋକରେ ସେ ରୋହିତଙ୍କୁ ଅବିଶ୍ରାନ୍ତ ପଥ ଚାଲିବାର ଯେଉଁ ଉପଦେଶ ଦେଲେ, ଆଜି ଆମେ ତାହାକୁହିଁ ସଂଗ୍ରହ କରି ରଖିବା ।

> ନାନା ଶ୍ରାନ୍ତାୟ ଶ୍ରୀରସ୍ତି ଇତି ରୋହିତ ଶୁଶ୍ରୁମ,
> ପାପୋ ନୃଷଦ୍‌ ବରୋ ଜନଃ ଇନ୍ଦ୍ର ଇଚ୍ଚରତଃ ସଖା ।।
> ଚରୈବେତ, ଚରୈବେତ ।

ଚାଲି ଚାଲି ଯିଏ ଶ୍ରାନ୍ତ ହୋଇ ପଡ଼ିଲାଣି, ତାର ଉନ୍ନତି ନାହିଁ, ଏହି କଥା ମୁଁ ଚିରଦିନ ଶୁଣି ଆସିଛି । ଯିଏ ଅନବରତ ଚାଲିଛି, ସ୍ୱୟଂ ଇନ୍ଦ୍ର ଦେବତା ସଖା ହୋଇ ତାର ସଙ୍ଗେ ସଙ୍ଗେ ଚାଲିଛନ୍ତି । ଚାଲିବା ଲାଗି ଯାହାର ଇଚ୍ଛା ନାହିଁ, ଯେତେ ଶ୍ରେଷ୍ଠ ପୁରୁଷ ହୋଇଥିଲେ ମଧ୍ୟ କ୍ରମଶଃ ସେ ନୀଚ ହୋଇଯିବ । ଅତଏବ ଚାଲ, ଆଗେଇ ଚାଲ ।

ପୁଷ୍ପିଣ୍ୟୌ ଚରତୋ ଜଙ୍ଘେ ଭୂଷ୍ଣୁରାତ୍ମା ଫଲଗ୍ରାହିଃ,
ଶେରେଽସ୍ୟ ସର୍ବେ ପାପ୍ମାନଃ ଶ୍ରମେଣ ପ୍ରପଥେ ହତାଃ ॥
ଚରୈବେତି, ଚରୈବେତି ।

ଯିଏ ଚାଲିଛି, ଫୁଲ ଫୁଟିବା ପରି ତା'ର ଦେହରେ ଅପୂର୍ବ ଶୋଭା ପ୍ରସ୍ଫୁଟିତ ହୋଇଉଠେ । ତା'ର ଆତ୍ମା ଦିନକୁ ଦିନ ବିକଶିତ ହୋଇ ଚାଲେ । ଏହି ଚାଲିବା ଦ୍ୱାରା ମୁକ୍ତ ପଥ ଉପରେ ତାର ପାପମାନ ଆପେ ଆପେ ଅବସନ୍ନ ହୋଇପଡ଼େ । ପାପର ସମସ୍ୟା ଲାଗି ତାକୁ ଆଉ ବ୍ୟସ୍ତ-ଚିନ୍ତିତ ହେବାକୁ ପଡେ ନାହିଁ । ଅତଏବ ଚାଲ, ଆଗେଇ ଚାଲ ।

ଆସ୍ତେ ଭଗ ଆସୀନସ୍ୟୋର୍ଦ୍ଧ୍ୱସ୍ତିଷ୍ଠତି ତିଷ୍ଠତଃ,
ଶେତେ ନିପଦ୍ୟମାନସ୍ୟ ଚରାତି ଚରତୋ ଭଗଃ ॥
ଚରୈବେତି, ଚରୈବେତି ।

ଯିଏ ବସି ରହିଛି, ତା'ର ଭାଗ୍ୟ ମଧ୍ୟ ବସି ରହିଛି; ଯିଏ ଉଠି ଠିଆ ହେଉଛି, ତା'ର ଭାଗ୍ୟ ମଧ୍ୟ ଉଠି ଠିଆ ହେଉଛି । ଯିଏ ଶୋଇ ପଡ଼ୁଛି, ତା'ର ଭାଗ୍ୟ ମଧ୍ୟ ଶୋଇ ପଡ଼ୁଛି । ଯିଏ ଆଗକୁ ଚାଲିଛି, ତା'ର ଭାଗ୍ୟ ମଧ୍ୟ ଆଗକୁ ଚାଲିଛି । ଅତଏବ ଚାଲ, ଆଗେଇ ଚାଲ ।

କଲିଃ ଶୟାନୋ ଭବତି ସଞ୍ଜିହାନସ୍ତୁ ଦ୍ୱାପରଃ,
ଉତ୍ତିଷ୍ଠଂସ୍ତ୍ରେତା ଭବତି କୃତଂ ସମ୍ପଦ୍ୟତେ ଚରନ୍ ॥
ଚରୈବେତି, ଚରୈବେତି ।

ଶୋଇ ପଡ଼ିବାଟା ହେଉଛି କଳିଯୁଗ, ନିଦ ଭାଙ୍ଗିଗଲେ ଦ୍ୱାପର, ଉଠି ଠିଆ ହେଲେ ତ୍ରେତା, ଆଉ ଆଗକୁ ଚାଲିଲେ ସତ୍ୟଯୁଗ । ଅତଏବ ଚାଲ, ଆଗେଇ ଚାଲ ।

ଚରନ୍ ବୈ ମଧୁ ବିନ୍ଦତି ଚରନ୍ ସ୍ୱାଦୁମୁଦୁମ୍ବରମ୍
ସୂର୍ଯ୍ୟସ୍ୟ ପଶ୍ୟ ଶ୍ରେମାଣଂ ଯୋ ନ ତନ୍ଦ୍ରୟତେ ଚରନ୍ ॥
ଚରୈବେତି, ଚରୈବେତି ।

ଚାଲିବାହିଁ ଅମୃତ ଲଭ, ଚାଲିବା ହିଁ ଚାଲିବାର ସ୍ୱାଦୁଫଳ । ଏହି ସୂର୍ଯ୍ୟର ଆଲୋକ ସମ୍ପଦକୁ ଚାହିଁ ଦେଖ, ସୂର୍ଯ୍ୟ ସୃଷ୍ଟିର ଆଦିକାଳରୁ ଚାଲୁଛି, ତଥାପି ଦିନକ ସକାଶେ ମଧ୍ୟ କ୍ଳାନ୍ତ ହୋଇନାହିଁ କି ଶୋଇ ପଡ଼ିନାହିଁ । ଅତଏବ ଚାଲ, ଅଗେଇ ଚାଲ ।

୩୦ । ୮ । ୫୫

ମୀରାବାଈଙ୍କ ବିଷୟରେ ଗୋଟିଏ କାହାଣୀ ଅଛି । ଥରେ ସେ ବୃନ୍ଦାବନରେ ଜଣେ ସାଧୁଙ୍କ ସହିତ ସାକ୍ଷାତ କରିବାକୁ ବାହାରିଲେ । କବାଟ ବନ୍ଦ ଥିଲା, ସେ କବାଟ ଖଡ଼ଖଡ଼ କରି ଡାକିଲେ । ଭିତରୁ ସାଧୁଙ୍କର କର୍କଶ କଣ୍ଠରୁ ଜବାବ ଆସିଲା, ମୁଁ କୌଣସି "ସ୍ତ୍ରୀ ଲୋକର ମୁଖ ଦର୍ଶନ କରେ ନାହିଁ ।" ମୀରାବାଈ ଏଣୁ ଜବାବ ଦେଲେ, "ଆପଣ କିଏ ? ମୁଁ ତ କେବଳ ଜଣେ ପୁରୁଷଙ୍କୁ ଜାଣିଛି । ସେ ହେଉଛନ୍ତି ଈଶ୍ୱର ।" ସାଧୁ ଏ କଥା ଶୁଣି ତତ୍‌କ୍ଷଣାତ୍ କବାଟ ଖୋଲି ଦେଲେ, କହିଲେ, "ମା ! ତୁମେ ଆଜି ମୋର ଆଖି ଖୋଲିଦେଲି, ମୋର ଭ୍ରମ ଦୂର କରିଦେଲ ।"

ଅମ ସମାଜର ମା ଅଉ ଭଉଣୀ ଆଜି ମୀରାବାଈଙ୍କର ଆଦର୍ଶଠାରୁ ଅନେକ ଦୂରରେ ଅଛନ୍ତି । ଆମ ଦେଶର ପୁରୁଷ ମଧ୍ୟ ସଚ୍ଚା ପୁରୁଷର ଆଦର୍ଶଠାରୁ ବହୁଦୂରରେ ପଡ଼ିରହିଛି । ଦୁହିଙ୍କର ଦୃଷ୍ଟିକୁ ନାନା ପ୍ରକାର

ଦୁଷ୍ଟବିକାରର କାଳିମା ଆଚ୍ଛନ୍ନ କରି ରହିଛି । ପୁରୁଷ ନାରୀକୁ ସନ୍ଦେହ କରୁଛି । ନାରୀ ପୁରୁଷକୁ ଭୟ କରୁଛି । ପୁରୁଷ ନାରୀ ଉପରେ ମାଲିକ ହୋଇ ରହିବାର ଦମ୍ଭ କରୁଛି । ନାରୀ ପୁରୁଷ ପାଖରୁ ଅଧିକ ଆନୁଗତ୍ୟର ଦାବୀ କରୁଛି । ସଂସାରଟା ଦୁଇ ଭାଗ ହୋଇଗଲାଣି । ଦେଶ ଆଉ ସମାଜର ଭାଗ୍ୟ ଆଜି ରାହୁ ଆଉ କେତୁପରି ଦୁଇ ଖଣ୍ଡରେ ବିଭକ୍ତ ହୋଇଯାଇଛି । ସେଥିଲାଗି ବାହାରେ ଯେତେ ନୈତିକତା ଓ ନୀତିନିୟମର ବାଡ଼-ବନ୍ଧ ଟେକିଥିଲେ ମଧ୍ୟ ଭିତରେ ଆମେ ସମସ୍ତେ ଅପବିତ୍ର ହୋଇ ରହିଛୁ । ଭିତରେ ଆମେ ସମସ୍ତେ ଆପଣା ରାକ୍ଷସୀ-ପ୍ରବୃତ୍ତିର ଦୌରାତ୍ମ୍ୟରେ ପୀଡ଼ିତ ହୋଇ ରହିଛୁ । ବାହାରକୁ ଆମର ସମାଜ ବେଶ୍ ଚାଲିଛି । ସମାଜରେ ସବୁ ଠିକ୍ ଅଛିବୋଲି ବାହାର ମନକୁ ଆମେ ବେଶ୍ ବୁଝାଇକରି ରଖିଛୁ । କିନ୍ତୁ ଆମର ନିୟମ ଆମକୁ ଶକ୍ତି ଦେଇପାରୁ ନାହିଁ । ପୋକପରି ଆମର ପ୍ରାଣଶକ୍ତିକୁ ଖାଇ ଦେଉଛି । କଣ୍ଟି ର ପରି ଆମର ଶୁଦ୍ଧ ବିବେକକୁ ବାନ୍ଧି ପକାଉଛି । ଭିତରେ ଆମେ ଅତି ନିର୍ବଳ ଆଉ ନିଃସମ୍ବଳ ହୋଇ ପଡ଼ିରହିଛୁ ।

ପ୍ରତ୍ୟେକ ପୁରୁଷ ପୁରୁଷ ଥାଇ ମଧ୍ୟ—ସ୍ତ୍ରୀ ହୋଇ ଥାନ୍ତା ଓ ପ୍ରତ୍ୟେକ ସ୍ତ୍ରୀ ସ୍ତ୍ରୀ ଥାଇ ମଧ୍ୟ—ପୁରୁଷ ହୋଇଥାନ୍ତା, ତା'ହେଲେ ଆଦର୍ଶ ସମାଜର ବ୍ୟବସ୍ଥା ହୋଇପାରନ୍ତା । ଏହିକଥା ଗାନ୍ଧିଜୀ ଥରେ ସେବାଗ୍ରାମ ଆଶ୍ରମର ଭଉଣୀମାନଙ୍କୁ ଲେଖିଥିଲେ । ଆଗେ ଆମ ଦେଶର ଗୁଣିଆ ମାନେ ଗୁଣିଗାରେଡ଼ି ଦ୍ୱାରା ପୁରୁଷକୁ ସ୍ତ୍ରୀ ଓ ସ୍ତ୍ରୀକୁ ପୁରୁଷ କରି ଦେଇ ପାରୁଥିଲେ । ସେ ଅଲଗା କଥା, ଗାନ୍ଧୀ ସେ ଗୁଣିଗାରେଡ଼ି କଥା କହିନାହାନ୍ତି । ପୁରୁଷ ସ୍ତ୍ରୀଠାରୁ ନମ୍ରତା, ସ୍ନେହ ଓ ବିବେକ ପ୍ରଭୃତି ଗୁଣ ଶିଖିପାରିବ ଏବଂ ସ୍ତ୍ରୀ ପୁରୁଷଠାରୁ ବଳବାନ ହେବା ଓ ଧୀରତା ଗ୍ରହଣ କରିବାର ଗୁଣ ଶିଖିପାରିବ । ତା ହେଲେ କି ପୁରୁଷ, କି ସ୍ତ୍ରୀ ସଭିଙ୍କର ଜୀବନ ପୂର୍ଣ୍ଣତର ହୋଇପାରିବ । ଆଜି ମଣିଷ ଦୁଇଖଣ୍ଡ ହୋଇଯାଇଛି । ରୋଷେଇଶାଳଠାରୁ ଅଫିସ ଘର ଅନେକ ଦୂରକୁ ହଟିଯାଇଛି । ତେଣୁ ଫଳରେ ପୁରୁଷ ପାଇଁ ସ୍ତ୍ରୀ ଓ ସ୍ତ୍ରୀ ପାଇଁ ପୁରୁଷ କେବଳ ଗୋଟାଏ ଗୋଟାଏ ବୋଝ ହୋଇ ରହିଛନ୍ତି । ଭଉଣୀ ଭାଇକୁ ଖାଲି ଈର୍ଷା କରୁଛି । ନାନା ପ୍ରଲୋଭନ ଓ ଲାଳସାର ମୋହରେ ପଡ଼ି ଭାଇ ଭଉଣୀଠି ପାଖକୁ ଆସିବାକୁ ମଧ୍ୟ ଭୟ କରୁଛି ।

ଆମର ଏଠି ଆମେ ଭାଇଭଉଣୀ ଏକାଠି ରହୁଛୁ । ଏକାଠି ହୋଇ ରହିବାକୁ ଆମେ ସୁସ୍ଥଜୀବନ ବୋଲି ସ୍ୱୀକାର କରୁଛୁ । ଆମର ଦାୟିତ୍ୱ ଆମେ ବୁଝିବା । ଯେତକ ଆମେ ସାମୂହିକ ଜୀବନ ଭିତରେ ଆମର ଉପଯୁକ୍ତ ସ୍ଥାନ ଠିକ୍ ବାଛିନେଇ ପାରିବା, ଆମେ ସେତକ ଖୁସି ହେବା । ସମସ୍ତଙ୍କୁ ମଧ୍ୟ ସେତକ ଖୁସି କରିପାରିବା । ଯିଏ ସମୂହ ଭିତରେ ନିଜେ ନିଜର ଅଧିକାର ଓ କର୍ତ୍ତବ୍ୟ ବିଷୟରେ ଯଥେଷ୍ଟ ସଚେତ ହୋଇପାରିବ, ନିଜେ ସୁସ୍ଥରହିବା ସଙ୍ଗେ ସଙ୍ଗେ ସେ ସମୂହର ସ୍ୱାସ୍ଥ୍ୟରେ ମଧ୍ୟ ସହଯୋଗ କରିବ । ଆମ ଶିକ୍ଷାଳୟର ସୁସ୍ଥଜୀବନ ଆଣିବା ପ୍ରଚେଷ୍ଟାରେ ଆମେ ସମସ୍ତେ ସହଯୋଗ କରିବା ।

୩୧ । ୮ । ୫୪

ଏଠି ସବୁ ସତେଜ । ସବୁଦିନେ ସକାଳେ ଏଠି ନୂଆ ଫୁଲ ଫୁଟୁଛି, ପର୍ବତ ସେ ପାଖର ନୂଆ ସୂର୍ଯ୍ୟର ଉଦୟ ହେଉଛି । ପ୍ରତ୍ୟେକଟି କାକରବିନ୍ଦୁ ଓ ପ୍ରତ୍ୟେକଟି ଅସରା ବର୍ଷା ଏଠି ନୂଆ ପରି ଲାଗୁଛି । ଅଜକାର ଶୁଖିଲା ଝରଣା କାଲିକି ପୂରି ଉଛୁଳି ପଡ଼ୁଛି । ଝରଣା ମଝିରେ ଆଜି ବସାଇଥିବା ବାଲିବନ୍ଧ କାଲିକୁ ନୂଆ ପାଣିର ଉଛୁଳା ସ୍ରୋତରେ ଭାଙ୍ଗି ମିଳେଇ ଯାଉଛି । ଗୋଟିଏ ପାଠଶାଳା ପାଇଁ ଠିକ୍ ଏହିପରି ବାତାବରଣ ଲୋଡ଼ା । ଯେଉଁଠି ପ୍ରକୃତି ଚିରଦିନ ନୂଆ ନୂଆ ହୋଇ ଦିଶୁଥିବ, ନୂଆ ରସ, ଗନ୍ଧ ଓ ଦୃଶ୍ୟରେ ଯେଉଁଠି ବାତାବରଣ ସଦାସର୍ବଦା ନୂତନ ହୋଇ ରହୁଥିବ, ମଣିଷର ଅପାକଳ ମନକୁ ପାକଳ କରିବାର ସାଧନା ଲାଗି ସେମିତି ଗୋଟିଏ ବାତାବରଣ ଦରକାର । ମଣିଷର ବିକ୍ଷିପ୍ତ ଓ ଅସଂଯତ ଆଗ୍ରହମାନଙ୍କୁ ଏକ ଦଉଡ଼ିରେ ବାନ୍ଧିଦେଇ ସବୁଟିକୁ ସୁସ୍ଥ ବାଟରେ ନିର୍ଦ୍ଦିଷ୍ଟ କରିଦେବା ଲାଗି ଏହିପରି ଗୋଟିଏ ଜାଗା ଦରକାର । ଆଗକାଳେ ଆମ ଦେଶର ଶିକ୍ଷକ ଋଷିମାନେ ଏହିପରି ସ୍ଥାନରେ ପାଠଶାଳା କରିଥିଲେ । ସେଠି ନଈଟିଏ ବହି ଯାଉଥିଲା, ଗୃହପାଖରେ ପାହାଡ଼ ଓ ଅରଣ୍ୟ ଶ୍ୟାମଳ କୋଳ ବିଛାଇ ରଖିଥିଲା ।

ସେଠି ଫୁଲ ଫୁଟିବାରେ ବିରାମ ନ ଥିଲ, କି ନୂଆ ପତର କଅଁଳିବା ବନ୍ଦ ହେଉ ନ ଥିଲା । ଏହିପରି ଏକ ବର୍ଦ୍ଧିଷ୍ଣୁ ଓ ବିକାଶ-ଧର୍ମୀ ବାତାବରଣ ଭିତରେ ରହିଲେ ଶିକ୍ଷାର୍ଥୀ ମନର ବିକାଶ-ଧର୍ମୀକାଙ୍କ୍ଷା ବଜାୟ ରହି ପାରିବ; ବଣର ଫୁଲ ପତର ଓ ଫଳ ପରି ସେ ମଧ୍ୟ ନିର୍ମଳ ଆଲୁଅ ଓ ଖୋଲା ପବନରେ ଝୁରି ହୋଇ ବଢ଼ିବ; ବଣର ଚଢ଼େଇ ପରି ସେ ମଧ୍ୟ ନିର୍ଭୟ ହୋଇ ଆପଣାର ନୀଡ଼ ରଚନା କରିପାରିବ, ଝୁସି ହୋଇ ଗୀତ ଗାଇପାରିବ ।

ଏପରି ଏକ ବାୟୁମଣ୍ଡଳ ଭିତରେ ଆମେ ରହିବେ । ତଥାପି ଆମେ କାହିଁକି ସେହି ପୁରୁଣା ହୋଇ ପଡ଼ି ରହିଥିବା ? ଏଠି ପ୍ରତିଦିନ ପ୍ରକୃତି ନୂଆ କଳେବର ଆଉ ନୂଆ ପ୍ରେରଣା ଦେଖାଇ ଆତ୍ମପ୍ରକାଶ କରୁଛି । କାହିଁକି ଆମେ ସେଇ ସୁନ୍ଦରୀ ପ୍ରକୃତିର ଲାଳନ ପାଇ ତଥାପି ନିର୍ଜୀବ ହୋଇ ରହିଥିବା ? ପ୍ରତ୍ୟେକ ଦିନର ସକାଳ କାହିଁକି ଆମକୁ ନୂଆ ପ୍ରାଣରେ ଭରିଦେଇ ଯିବ ନାହିଁ ? ପ୍ରତ୍ୟେକ ଦିନର ସନ୍ଧ୍ୟା କାହିଁକି ଆମକୁ ପ୍ରାର୍ଥନାରେ ବସି ପାରିବାର ସହଜ ଶ୍ରଦ୍ଧା ଦେଇଯିବ ନାହିଁ ? କାହିଁକି ଆମେ ଏ ପୃଥିବୀରେ ଖାଲି ଅନ୍ୟ ସମସ୍ତଙ୍କର ଦୋଷ ଉଖାରି ବୁଲୁଥିବା ? ଆପଣାର ପର୍ବତ ପ୍ରମାଣ ଦୋଷକୁ ଲୁଚାଇବା ପାଇଁ କାହିଁକି ଆମେ ଅପରର ତିଳ ବା ସୋରିଷପ୍ରମାଣ ଦୋଷକୁ ପ୍ରଚାର କରିବାରେ ଆନନ୍ଦ ପାଉଥିବା ? ସକାଳର ଶୀତଳ ପବନ ଆଉ ସୂର୍ଯ୍ୟଚନ୍ଦ୍ରଙ୍କର ଆଶୀର୍ବାଦ ପାଇ ତଥାପି କାହିଁକି ଆମର ଆଖି ନିର୍ମଳ ହୋଇଯିବ ନାହିଁ ? କାହିଁକି ଆମେ ପରସ୍ପରକୁ ଭାଇଭଉଣୀର ସହଜ ଦୃଷ୍ଟିରେ ଦେଖି ପାରିବା ନାହିଁ ? ମୁଁ ଅନେକ ସମୟରେ ଏଇକଥା ଭାବେ । ସଂସାରରେ ସବୁଠି ଅଜସ୍ର ଶକ୍ତି ପୂରି ରହିଛି । ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରାଠାରୁ ଆରମ୍ଭ କରି ପତ୍ରପୁଷ୍ପଫଳ ପର୍ଯ୍ୟନ୍ତ ସବୁଠାରେ ଆଜି ଶକ୍ତିର ପ୍ରକାଶ ହୋଇ ଚାଲିଛି । ଆମ ପ୍ରତ୍ୟେକଙ୍କ ମଧ୍ୟରେ ମଧ୍ୟ ଅକଳନ୍ତ ଶକ୍ତି ରହିଛି । କାହିଁକି ଆମେ ସେ ଶକ୍ତିକୁ ନାନାପ୍ରକାର ବାଡ଼ ଏବଂ ଆୟତନ ଭିତରେ ବାନ୍ଧି ରଖିଥିବା ? ସବୁଠାରେ ସବୁଦିନ ତାରୁଣ୍ୟର ପ୍ରକାଶ-ଲୀଳା ଚାଲିଥିବାବେଳେ ଆମେ ଆମ ମନର ବାର୍ଦ୍ଧକ୍ୟରେ ଜର୍ଜର ହୋଇ ରହିଥିବା ?

"ମା ପୁରା ଜରସୋ ମୃଥାଃ"—ହେ ମନୁଷ୍ୟ, ତୁ ବୁଢ଼ାହେବା ଆଗରୁ କଦାପି ମରିବୁ ନାହିଁ—ଅଥର୍ବ ବେଦର ଋଷି (୫।୩୦।୧୭) ଆମକୁ ଏହି ସତର୍କବାଣୀ ଶୁଣାଇଛନ୍ତି । ମଣିଷର ସୁନ୍ଦର ଶରୀର, ସୁନ୍ଦର ମନ ଓ ସୁନ୍ଦର ହୃଦୟ ନେଇ ଆମେ ଏ ସଂସାରକୁ ଆସିଛେ । ଏଠି ଆମେ ପ୍ରତ୍ୟେକେ ବିକଶିତ ହେବା, ପ୍ରତ୍ୟେକ ଆପଣା ଆପଣାର ବିଶିଷ୍ଟ ପଥରେ ଚାଲି ଭଗବାନଙ୍କର କାମରେ ଆପଣାକୁ ସମର୍ପିତ କରିଦେଇ ପାରିବା । କିନ୍ତୁ ହଠାତ୍ ଅଧବାଟ ନ ହେଉଣୁ ଆମର ଏ ବାର୍ଦ୍ଧକ୍ୟ କାହିଁକି ? ବୁଢ଼ାହେବା ପୂର୍ବରୁ ମନରେ ବୁଢ଼ାହୋଇ ମରିଯିବା ଯଦି ଆମ ଜୀବନର ଉଦ୍ଦେଶ୍ୟ ହୋଇଥାନ୍ତା, ତେବେ ଏତେ ଶକ୍ତି, ଏତେ ସୁନ୍ଦର ହାତ, ଗୋଡ଼, ମୁହଁ, ଗଭୀର ଅନୁଭବ କରିପାରିବାର ହୃଦୟ ଓ ସମସ୍ତ ବିଶ୍ୱକୁ ଦୃଷ୍ଟି ଆଗରେ ଧରି ପାରିବାର ବିଚାର ଧରି କାହିଁକି ଆମେ ଏ ସଂସାରକୁ ଆସିଥାନ୍ତେ ?

—୩—

୧।୯।୫୫

ମନଆନନ୍ଦରେ କାମକୁ ଗଲେ କାମ କରିବାକୁ ଭଲଲାଗେ, ମୋଟେ ଥକିଯିବା ପରି ମାଲୁମ ହୁଏ ନାହିଁ, ଏପରି ଅନୁଭବ ଆମ ଭିତରେ ଜଣେ ଭାଇଙ୍କର ହୋଇଛି । ମୁଁ କହିବି ତାଙ୍କର କାମ କରିବା ସାର୍ଥକ ହୋଇଛି । ପାଇଖାନା ସଫା କରିବାଠାରୁ ଆରମ୍ଭ କରି ପରିବା କାଟିବା ପର୍ଯ୍ୟନ୍ତ ଯାହା ଆମେ କରିବା, ସେଠାକୁ ଆମେ ଜିଜ୍ଞାସୁର ମନ ନେଇ ଯିବା । ସବୁଠି ଆମେ ଶିଖିବାର ପ୍ରବୃତ୍ତି ନେଇ ଯିବା । ଜିଜ୍ଞାସୁ ଲାଗି ସଂସାରରେ ସବୁ ଗୁରୁ ହୋଇ ପାରିବ । ତା' ଲାଗି ସାରା ସଂସାର ପାଠଶାଳା ହୋଇପାରିବ । ଆଉ ଯିଏ ଅନ୍ତର ଭିତରେ ଜାଣିବାର, ବୁଝିବାର ଓ ଉପଲବ୍ଧି କରିବାର ଆବଶ୍ୟକତା ହିଁ ଅନୁଭବ କରୁ ନାହିଁ, ଶିକ୍ଷାର ଯେତେ ଆୟୋଜନ ଖଞ୍ଜିଲେ ମଧ୍ୟ ସିଏ କଦାପି ଶିକ୍ଷାର୍ଥୀର ମନ ନେଇ ବସି ପାରିବ ନାହିଁ । ଏକାଦଶସ୍କନ୍ଧ ଭାଗବତରେ ଅବଧୂତ ମୁନିଙ୍କର ଉପାଖ୍ୟାନରେ ଏହି ଶିକ୍ଷାର୍ଥୀ ମନର ସୂଚନା ମିଳେ । ଗଛ ଆଉ ପବନଠାରୁ ଆରମ୍ଭ କରି ସୂର୍ଯ୍ୟ ଆଉ ଅଜଗର ସାପ ପର୍ଯ୍ୟନ୍ତ ଅବଧୂତ

ମୁନ ଚବିଶ ଜଣଙ୍କୁ ଗୁରୁ ବୋଲି ମାନୁଥିଲେ । ଜୀବନରେ ଯେଉଁଠି ଯେଉଁ ଜନିଷ ଦ୍ୱାରା ତାଙ୍କର ଅନ୍ତରଦ୍ୱାର ଖୋଲି ଯାଉଥିଲା, ସେହି ଜନିଷକୁ ସେ ଆପଣାର ଗୁରୁ ବୋଲି ସ୍ୱୀକାର କରୁଥିଲେ ।

ତା'ପରେ ମନ ଆନନ୍ଦରେ କାମ କରିବା କଥା । ଆମ ଦେଶରେ ଲକ୍ଷ ଲକ୍ଷ ଲୋକ ଆଜି ବାଧ୍ୟହୋଇ କାମ କରୁଛନ୍ତି । ଭାଗ୍ୟକୁ ଆଦରି ସେମାନେ ଜମିକୁ କାମୁଡ଼ି ପଡ଼ିଛନ୍ତି । କାରଖାନା ଭିତରେ ଲୁହା ବାଡ଼ଉଛନ୍ତି । ଖଣି ଭିତରେ ଧାତୁଦ୍ରବ୍ୟ ଖୋଳୁଛନ୍ତି । ସେଠି କାମ୍ ଅଛି, ଆନନ୍ଦ ନାହିଁ । ଆମେ ଏଠି ରୋଜ କାମ ବାଣ୍ଟୁଛୁଁ, ରୋଜ କାମ କରିବାକୁ ଯାଉଛୁଁ । ଚଉଦ୍ଭାଇ କାମରେ ଥିବାଦିନ ଯେତେ କାମ ହେଉଛି ଚିଉଭାଇ ନ ଥିବା ଦିନ ତାହାର ଗୁରି ଭାଗରୁ ଭାଗେ କାମ ହେଉ ନାହିଁ, ଏପରି ଅଭିଯୋଗ ଆମ ଭିତରୁ ଅନେକ କରୁଛନ୍ତି । ଏହା ଆମର ଦୁର୍ଭାଗ୍ୟ । ଚିଉ ଭାଇଙ୍କର ମଧ୍ୟ ଦୁର୍ଭାଗ୍ୟ । ହୁଏତ ଚଉଦ୍ଭାଇ ଆମକୁ ଗୋରୁ କି ଗଧ ବୋଲି ବିଚାରୁଛନ୍ତି । ହୁଏତ ତାଙ୍କର ଯୋଜନାରେ ଧମକ ଓ ଜବରଦସ୍ତି ରହିଛି ଏବଂ ସେଥିଲାଗି କାମକୁ ଭଲପାଇ ନୁହେଁ, ଚଉ ଭାଇଙ୍କର ଧମକକୁ ଡରି ଆମେ ସମସ୍ତେ କାମକୁ ଯାଉଛେ । ଆମେ ଆଉ ଆମ ଅଲକ୍ଷଣା ଦେଶର ଦୁର୍ଗତ ମୂଲ୍ଆଠାରୁ କି ଉଚ୍ଚସ୍ତରରେ ରହିଛୁଁ ?

କେତେବେଳେ ମନ ଆନନ୍ଦରେ କାମରେ ବୁଡ଼ିଯାଇ ହେବ ? ମୋତେ ଜଣେ କରାଉଚି, ମୁଁ କରୁଛି; ଜଣେ ରଜ୍ଜୁ ଧରି ମୋତେ ଚଳାଉଛି, ମୁଁ ଚାଲୁଛି । ଏହିପରି ମନୋଭାବ ନେଇ କାମ କରୁଥିବା ପର୍ଯ୍ୟନ୍ତ କାମରୁ ଆମେ କଦାପି ଆନନ୍ଦ ପାଇ ପାରିବା ନାହିଁ । ପୁଅର ପେଟରେ ଭୋକ ନାହିଁ, ଅଥଚ ବାପମାଆ ଗେଲବସର କରି ପୁଅକୁ ଭୁଞ୍ଜାଇବାରେ ଲାଗନ୍ତି । ଏଥିରେ କ'ଣ ଭୋଜନର ଆନନ୍ଦ ମିଳିପାରିବ ? ଆମେ ପ୍ରତ୍ୟେକେ କୌଣସି ନା କୌଣସି ପ୍ରକାର ଶରୀର-ଶ୍ରମ କରିବା ଆବଶ୍ୟକ କି ନାହିଁ, ପ୍ରତ୍ୟେକ ଆଜି ଏହି କଥା ବିଚାର କରନ୍ତୁ । ଆମ ସମାଜରେ ଶରୀର-ଶ୍ରମ ପ୍ରତି ହତାଦର ରହିଛି । ହାତଗୋଡ଼ ଆଉ ମାଂସପେଶୀ ଚଳାଇବାକୁ ଆମ ଦେଶର ଅନେକେ

ଲଜ୍ଜାଜନକ ବୋଲି ମନେ କରୁଛନ୍ତି । ତେଣୁ ଏ ଦେଶର ବୁଦ୍ଧ ମଧ୍ୟ ନକମା ହୋଇପଡ଼ୁଛି, ସ୍ୱାର୍ଥପର ହୋଇପଡ଼ୁଛି । ବସିବା ଲୋକ ଆଜ ନାନା ବୁଦ୍ଧି ଖରଚ କରି ଚଷିବା ଲୋକକୁ କବଳ ଭିତରେ ରଖିଛି । ଆମେ ଏଇ ସମାଜ ଭାଙ୍ଗି ପକାଇବା; କାରଣ ଆମେ ପ୍ରତ୍ୟେକ ମଣିଷ ଲାଗି ନ୍ୟାଯ୍ୟ ଚାହୁଁଛୁ, ସମାନ ବ୍ୟବହାର ଚାହୁଁଛୁ । ସେଇଥିଲାଗି ଆମର ଏଇ ନୂଆ ଶିକ୍ଷାର ଗୁମ୍ଫ । ଆଜ ଯେତେ ଜଣ ଶିକ୍ଷକ ଓ ଶିକ୍ଷାର୍ଥୀ—ଉଭୟଙ୍କୁ ଉଦ୍ଦେଶ୍ୟ କରି ମୁଁ କହୁଛି—ଯେତେଜଣ ଆମେ ଏଇ ଗୁମ୍ଫ ଭିତରେ ପଶିଛେ, ଏହାରି ଭେକ ପିନ୍ଧିଛେ, ଆମେ ସମସ୍ତେ ଚାଲ୍ ଆପଣାକୁ ପଚାରିବା, ଆମେ କ'ଣ ସତରେ ଏ ସମାଜକୁ ବଦଳାଇବାକୁ ଚାହୁଁଛୁ ? ପୁରୁଣା ମଣିଷର ସବୁ ଅନ୍ଧ ବିଶ୍ୱାସ ଓ କୁଣ୍ଠିତ-ପଣିଆକୁ ଦୂର କରି ସତରେ ଆମେ ନୂଆ ମଣିଷ ଗଢ଼ିବାକୁ ଚାହୁଁଛୁ ? ନା ବାହାରେ ଯେତେ ନୂଆ ଭେକ ପିନ୍ଧିଥିଲେ ମଧ୍ୟ ଆମ ଭିତରେ ଏପର୍ଯ୍ୟନ୍ତ ସେହି ସୁବିଧାଭୋଗୀ ପରାନ୍ନଭୋଜୀ ପ୍ରଚ୍ଛନ୍ନ ହୋଇ ରହିଛି ? ଏହି ପ୍ରଶ୍ନର ଉତ୍ତର କେବଳ ଆମେ ଆପଣାଠାରୁ ପାଇପାରିବା । ଏହାରି ଉତ୍ତର ଉପରେ ହିଁ ମନ ଆନନ୍ଦରେ କାମ କରିବା ଓ କାମରୁ ଆନନ୍ଦ ପାଇବା ପୂରାପୂରି ନିର୍ଭର କରୁଛି । ଯେ ଉତ୍ତରର ସହିତ ଜୀବନର ସିଦ୍ଧାନ୍ତମାନ କରେ କେବଳ ସେହି ଜୀବନ ବଞ୍ଚିବାରୁ ଯଥାର୍ଥ ଆନନ୍ଦ ପାଏ ।

୬ । ୯ । ୪୪

ଝରଣା ପାଖରେ ବସି ପାଣିର କୁଳୁ କୁଳୁ ଶବ୍ଦ ଶୁଣିବାକୁ ସମସ୍ତଙ୍କୁ-ଏତେ ଭଲ ଲାଗେ କାହିଁକି ? ଆମ ଘରପାଖ ଝରଣାରେ ଦିନରାତି ଆମେ ସେହି କୁଳୁ କୁଳୁ ଶବ୍ଦ ଶୁଣୁଛୁ । ପଥରର କଳା ଦେହ ଉପରେ ପାଣି ଅବିରତ ବୋହିଚାଲିଛି । ପର୍ବତ ଅଉ ଜଙ୍ଗଲର କେଉଁ କନ୍ଦରେ କେଉଁଠି ପାଣିଭଣ୍ଡାର ରହିଛି କେଜାଣି, ପାଣିର ଧାରା ଆମର ଏଠୁ ସରୁନାହିଁ । ସେ ଅବିରତ ବୋହିଚାଲିଛି ।

ଏହି ଗତିରେ ହିଁ ସମସ୍ତଙ୍କର ଆନନ୍ଦ । ଯେ ଗତିକରେ ତା'ର ଆନନ୍ଦ, ଯିଏ ସେହି ଗତିକୁ ଦେଖେ ସେ ମଧ୍ୟ ସେଥିରୁ ଆନନ୍ଦ ପାଏ । ଏଠି ଆମ ଝରଣାରେ ଗୁଡ଼ାଏ ପାଣି ଆବଦ୍ଧ ହୋଇ ରହିଥିଲେ ଆମେ ତାକୁ ଦେଖି ଏତେ ଆନନ୍ଦ ପାଉ ନ ଥାନ୍ତୁ । କିନ୍ତୁ ପଥର ଉପରେ ଝୋଟେ ପାଣି କେଡ଼େ ଆନନ୍ଦରେ ବୋହିଯାଉଛି, ଆଉ ଆମେ ମଧ୍ୟ ସେଇ ଅବିରତ ଧାରାର ପ୍ରତ୍ୟକ୍ଷ କରି ଆନନ୍ଦ ପାଉଛୁଁ, ସତେ ଅବା ଆମ ଅନ୍ତରଭିତରେ କେତେ ଆକାଂକ୍ଷା ଓ ଆଶାର ନିର୍ଝରଣୀ ବହିଚାଲିଛି । ଅପଣା ଜୀବନର ଏକାନ୍ତ କୂଳରେ ବସି ସତେ ଅବା ଆମେ ତାର କୁଳୁ କୁଳୁ ଶବ୍ଦ ଶୁଣିପାରୁଛୁଁ । ପ୍ରକୃତିର ଚଞ୍ଚଳ ବହମାନ ରୂପ ମନକୁ ଏମିତି ସଚଳ କରିଦେଇ ଯାଏ । ସୁଁ-ସୁଁ ହୋଇ ବର୍ଷା ମାଡ଼ିଆସିଲେ ବା ହଠାତ୍ ସବୁ ଉଡ଼ାଇ ନେଇ ତୋଫାନ ମାଡ଼ିଆସିଲେ ସତେ ଅବା ଆମ ଅନ୍ତରର ସମସ୍ତ କବାଟ ଖୋଲିଯାଏ । ଯେତେ ଯେଉଁଠି ବାଡ଼ ବନ୍ଧ ଦିଅ ହୋଇ ଆମର ବାସନା ଓ ଆଗ୍ରହକୁ ଆମେ ଅଟକାଇ ରଖିଥାଉ ସେସବୁ ବାଡ଼ ବନ୍ଧ ଏକାବେଳକେ ଭାଙ୍ଗିଯାଏ । ଏଇ ଭାଙ୍ଗିଯିବାରେ, ଉଡ଼ିଯିବାରେ ଓ ବହିଯିବାରେ ଆମେ ଭାରି ଆନନ୍ଦ ପାଉଁ । ପ୍ରକୃତିର ଏହି ବର୍ଷାକାଳ ସେଇଥି ପାଇଁ କବି, କଳାବିତ୍ ଓ ଚିନ୍ତାଶୀଳ ମଣିଷକୁ ଏତେ ଆକୃଷ୍ଟ କରେ, ଏତେ ଆନନ୍ଦ ଦିଏ । ବର୍ଷାକାଳ ଆମ ଭିତରର ସବୁ ଶିଥିଳତାକୁ ଭାଙ୍ଗିଦିଏ । ଆମ ଜୀବନ ଶାଖାର ସବୁ ଜୀର୍ଣ୍ଣ ପତ୍ରକୁ ଏହା ଝାଡ଼ି ଦେଇଯାଏ । ବର୍ଷାକାଳର ବିଜୁଳୀ, ଘଡ଼ଘଡ଼ି, ମେଘ, ପବନ ଆଉ ତୋଫାନ, ସବୁଥିରେ ଏହି ଚଞ୍ଚଳ ବେଗ ଆମକୁ ମଧ୍ୟ ଚଞ୍ଚଳ କରାଇଦେଇ ଯାଏ । ମଲିନଛି ଭରିଉଠେ କଳକଳିଁ, ପାଣି ଉଛୁଳି ପଡ଼େ, ଶୁଖିଲା ପଥରର ବକ୍ଷ ବୁଡ଼ାଇ ପାଣିର ସୁଅ ଚାଲେ ।

ଇଏତ ଗଲା ବାହାର ପ୍ରକୃତିର କଥା । ଆମ ଅନ୍ତର ଭିତରେ ମଧ୍ୟ ଅମେ ଆଜ ଏହି ବର୍ଷାକାଳର . ଗତିଶୀଳତାକୁ ନିମନ୍ତ୍ରଣ କରିଅଣିବା । ଅମର ସବୁ ଆବଦ୍ଧ ପଚାଜଳ ନୂତନ ଧାରାର ସମ୍ମୁଖିରେ ସୁଅପରି ବହିଯାଉ,—ସେଇ ବହିବାରେ ସେ ଶୁଦ୍ଧ ହୋଇଯାଉ । ଅମ ବନ୍ଧୁରର ଡାଳରେ ଏପର୍ଯ୍ୟନ୍ତ ଲେଖି ରହିଥିବା ସବୁ ପୁରୁଣା ପତ୍ର ଅଜ ଗୋଟାଏ ଝଡ଼ର ଦୋହଲରେ

ବାଲ୍‌କୁଲ ଉଡ଼ି ଚାଲିଯାଉ । ସେଠି ଆଜି ନୂଆପତ୍ର ଓ ଫୁଲର ସ୍ୱପ୍ନ ସଞ୍ଚରିଯାଉ । ଆମେ ଆମର ଶିଥିଳତାକୁ ଦୂରକୁ ଫିଙ୍ଗି ଦେବା । ଏଇ ବର୍ଷାଦିନର ଅସରନ୍ତି ପାଣି ଭଣ୍ଡାର ପରି ଆମ ଜୀବନର ଭଣ୍ଡାରରୁ ଉତ୍ସାହ ଓ ଆଗ୍ରହର ନିତ୍ୟଧାରା ଝରୁଥିବ ।

ନିଜ ଜୀବନର ଏକାନ୍ତ କୂଳରେ ବସି ଆମେ କେବେ ଏହିପରି କୁଳୁ କୁଳୁ ଶବ୍ଦ ଶୁଣିଛେ କି ? ଯଦି ଶୁଣିଥିବା ତେବେ ତାହାହିଁ ଏ ଜୀବନର ପରମ ଆନନ୍ଦ । ଆମେ ଚାଲିଛୁ, ସବୁ ଆସ୍ୱତନର ଆବଦ୍ଧ ଜଳାଶୟକୁ ଏକାଠି କରି ଆମେ କୁଳୁ କୁଳୁ କରି ବହି ଚାଲିଛୁ । ଆମର ସ୍ନେହ, ପ୍ରେମ, ଦୁଃଖସୁଖ,ହସକାନ୍ଦ, ଆମର କାମନା, ବାସନା ଓ ପ୍ରାର୍ଥନା ସବୁ ସେହି ଏକ ଜୀବନର ଅବିରତ ଧାରାରେ କୁଳୁ କୁଳୁ ଶବ୍ଦ କରି ଚାଲିଛି । ଏହି ଅନୁଭୂତିକୁ ଆମେ ଯେତିକି ଗଭୀର ଭାବେ ଅପଣାଇ କରିପାରିବା, ଆମ ଜୀବନ ବହିବାର ଗଭୀରତା ସେତିକି ବେଶୀ ହେଉଥିବ । ଅଉ ଯେଉଁଦିନ ଆମେ ଆପଣାର ବହିଯିବାର ବିକଶିତ ହେବାର ଏହି ସୂଚନା ପାଇପାରିବା ନାହିଁ, ସେହିଦିନ ବାହାରେ ଯେତେ କୋଳାହଳ କରୁଥିଲେ ମଧ୍ୟ ଆମକୁ ମୃତ ବୋଲିହିଁ କହିବାକୁ ହେବ ।

୭ । ୯ । ୫୫

ସେଇ ଦିନର ଝଡ଼ ବର୍ଷାଠାରୁ ଆଜିଯାଏ ଅନେକ ବର୍ଷା ହୋଇଲେଣି । ଖାଲି ଆମ ଏଠିକାର ସ୍ରୋତ ଝରଣାଟିରେ ନୁହେଁ, ଓଡ଼ିଶାର ଅଧିକାଂଶ ନଈନାଳ ଆଜି ଦୁଇକୂଳ ଉଛୁଳାଇ ଧାଉଁଛନ୍ତି । କେତେ ଜାଗାରେ ବନ୍ଧ ଭାଙ୍ଗିଛି, କେତେ ଜାଗାରେ ଘାଇ ମେଲି ହୋଇଯାଇଛି । କେତେ ଗାଆଁ ଭାସିଯାଇଛି । କେତେ ପରିବାର ଉଚ୍ଛିନ୍ନ ହୋଇଯାଇଛି । ଆମର ଏଇ ସ୍ରୋତିଆ ସଂସାରରେ ରାଜ୍ୟରେ ଘଟୁଥିବା ଦୁର୍ବିପାକର ଆଘାତ କେତେଦୂର ଲାଗୁଛି ସେ କଥା ମୁଁ କହିପାରୁନାହିଁ । ଅନେକ ସମୟରେ ଦୂରର ବିପଦ ଅନୁଭବ କରିହୁଏ ନାହିଁ । ଦୂର ଜଙ୍ଗଲରେ ନିଆଁ ଲାଗିଲେ ଦୂରଲୋକେ କେବଳ ତାର ସୌନ୍ଦର୍ଯ୍ୟଟା

ଉପଭୋଗ କରନ୍ତୁ । କିନ୍ତୁ ନିଆଁ ର ତାପ ସେମାନଙ୍କୁ ସନ୍ତପ୍ତ କରିପାରେ ନାହିଁ । ଆଜି ଦଲେଇଘାଇ ଭାଙ୍ଗିଗଲା କି ଧର୍ମଶାଳା ଥାନାରେ କେତେଟା ଗାଆଁ ଭାସିଗଲା, ହୁଏତ ଆମ ମନରେ ସେସବୁ ଦୁର୍ବିପାକକୁ ଯେତିକି ଅନୁଭବ କରିବା କଥା ତାହା ଆମେ କରିପାରୁ ନାହୁଁ ।

ଏହାର କାରଣ ହେଉଛି, ଆମ ଅନୁଭୂତିର ସୀମା ଆଜି ମଧ୍ୟ ସୀମାବଦ୍ଧ ହୋଇ ରହିଛି । ଆମ ସମ୍ବେଦ ବିପଦର ପରିଧି ଅତି ସଙ୍କୀର୍ଣ୍ଣ ହୋଇ ରହିଛି । ଆମ ନିଜ ନିଜର ଲାଭକ୍ଷତି, ଆପଣା ଆପଣାର ଭବିଷ୍ୟତ ଚିନ୍ତା, ଆମର ବିଚାର ଓ ଆମର ଅନୁଭୂତିକୁ ଏପରି ଆଚ୍ଛନ୍ନ କରି ରଖିଛି ଯେ ଆମେ ସଂସାରରେ ପ୍ରତିଦିନ ଘଟୁଥିବା ଅଜସ୍ର ବିପଦ ଓ ଅଜସ୍ର ଦୁଃଖକୁ ପୂର୍ଣ୍ଣକରି ଅନୁଭବ କରିପାରୁ ନାହୁଁ । ସଂସାରର ସବୁ ଦୁଃଖ ଆମକୁ କେବଳ ଖବର କାଗଜର କାହାଣୀପରି ଲାଗୁଛି । ତାହା ଆମ ମନକୁ ଏତେ ଟିକିଏ ଚହଲାଇ ବା ଦୋହଲାଇ ଦେଉ ନାହିଁ । ଆମ ନିଦକୁ ଭଙ୍ଗାଇ ପାରୁ ନାହିଁ ।

ଏ ମରୁଡ଼ି, ଏ ନଈବଢ଼ି, ଏସବୁ କ'ଣ ଭଗବାନଙ୍କ ଅଭିଶାପ ? ଅତି ଆଦିମକାଳରେ ସଂସାରରେ ବଣମଣିଷ ଠିକ୍ ଏହିପରି ଭାବୁଥିଲା । ଆକାଶରେ ଘଡ଼ଘଡ଼ି ମାଇଲେ ସେ ଡରୁଥିଲା । ଜଙ୍ଗଲରେ ନିଆଁ ଲାଗିଲେ ସେ ପ୍ରାଣ-ବିକଳରେ ଦଉଡ଼ି ପଳାଉଥିଲା । ଝରଣାରେ ବଢ଼ି ମାଡ଼ି ଆସୁଥିଲେ ବାଘ ଭାଲୁଙ୍କ ପରି ସେ ପଥର ଖୋଲରେ ଲୁଚି ରହୁଥିଲା । ଆମେ ଆଜି ମଧ୍ୟ ସେଇ ବଣମଣିଷର ଦଶାରେ ରହିଛୁଁ । ଏହାହିଁ ଏ ଦେଶର ସବୁଠାରୁ ବଡ଼ ଦୁଃଖ । ଜଳ ବର୍ଷା ନ ହେଲେ ଆମେ ଦୁଃଖ ପାଉଛୁ, ଜଳ ବର୍ଷା ହେଲେ ମଧ୍ୟ ଆମେ ଦୁଃଖ ପାଉଛୁ । ଏପରି କାହିଁକି ହେବ ? ମଣିଷ ତା'ର ବିକାଶର ପଥରେ ମାଡ଼ି ମାଡ଼ି ଆଜି ଅନେକ ଆଗକୁ ଆସିଲାଣି । ପ୍ରକୃତିର ଯେଉଁ ଯେଉଁ ଶକ୍ତି ଦିନେ ତାକୁ ଭୟତ୍ରସ୍ତ କରି ରଖିଥିଲେ ଆଜି ସେ ସେହି ସକଳ ଶକ୍ତିକୁ ଆପଣାର ବ୍ୟବହାରରେ ଲଗାଇ ପାରିଲାଣି । ବିଜ୍ଞାନ ବଳରେ ଆଜି ସାରା ସାଂସାରରୁ ଶୋକ ଆଉ ଦୁଃଖ ଦୂର ହୋଇପାରିବ—ଏପରି ଏକ ଦମ୍ଭକଥା କହି ପାରିବାର ବଳ ଓ ସାମଗ୍ରୀ ମଣିଷ ଅର୍ଜନ କରିପାରିଛି । ମଣିଷର

ବୁଦ୍ଧିବଳରେ ଆଜି ମରୁଭୂମିରେ ଫସଲ ଫଳୁଛି, ଟାଙ୍ଗରା ପାହାଡ଼ ଉପରେ ଦଶ ବର୍ଷରେ ଶ୍ୟାମଳ ଜଙ୍ଗଲ କଅଁଳଉଠୁଛି । ବରଫ ଦେଶରେ ବାରମାସୀ ଚାଷ ହେଉଛି । ନଈ ନାଳର ପାଣିକୁ ଅଟକାଇ ଦଶବର୍ଷ ତଳେ ମରୁଭୂମି ପଡ଼ିଥିବା ଇସରାଏଲ ଦେଶରେ ଆଜି କମଳାଲେମ୍ବୁର ବିସ୍ତୃତ ବଗିଚ୍ଚମାନ ହୋଇ ପାରିଲଣି । ଆମକୁ ମଧ୍ୟ ଦିନେ ବିଜ୍ଞାନର ସାହାଯ୍ୟରେ ଆମ ଦେଶର ନଈ ନାଳକୁ ଆମର ଉପକାର ପାଇଁ ବ୍ୟବହାର କରି ଶିଖିବାକୁ ପଡ଼ିବ । ଏ ଦାୟିତ୍ୱ ସମସ୍ତଙ୍କର । ଆଜି ନଈବଢ଼ି ଧନୀ ଗରିବର ହିସାବ ରଖୁ ନାହିଁ । ସମସ୍ତଙ୍କୁ ଏକା ଦୁଃଖର ଖାତ ଭିତରେ ପଡ଼ିବାକୁ ହେଉଛି । ଠିକ୍ ସେମିତି ଦିନେ ସମସ୍ତଙ୍କୁ ଏକାଠି ମିଶି ଦେଶର ସମୃଦ୍ଧି ଓ କଲ୍ୟାଣ ଲାଗି କାମ କରିବାକୁ ହେବ । ଯେତକ ଅମେ ଅମର ଚ୍ଛୋଟିଆ ଜୀବନର ସମସ୍ୟାଗୁଡ଼ିକୁ ଅଲଗା କରି ଅପଣା ଅପଣା ଗୁହା ଭିତରେ ବସିଥିବା, ସଂସାରର ଦୁଃଖ ସେତକ ଦିନ ପର୍ଯ୍ୟନ୍ତ ଅମକୁ କାମୁଡ଼ି ଧରିଥିବ ।

ଆମେ ଆଜି ପାଠ ପଢ଼ୁଛେ; ନିଜ ନିଜର ଚରିତ୍ର ଓ ବଳକୁ ଗଢ଼ିମାଜି ଅମେ କାଲିକାର ପୃଥିବୀ ଲାଗି ତିଆରି ହେଉଛେ । ଏ ଦେଶରେ ଅଉ ନଈବଢ଼ି ବା ମରୁଡ଼ି ମଣିଷକୁ କୌଣସି ଭୟ ଦେଖାଇପାରିବ ନାହିଁ, ଏପରି ଏକ ପ୍ରତିଜ୍ଞା ଅମ ସମସ୍ତଙ୍କର ମନ ଭିତରେ ଆସିବା ଉଚିତ । ଆଜି ଆମେ ଯାହା ଅର୍ଜନ କରି ଚାଲୁଛେ, ଯାହା ଅମେ ସଂଗ୍ରହ କରୁଛେ, ସେ ସବୁଥିରେ ବିଜ୍ଞାନର ହତିଆର ଲଗାଇ ସମାଜର ସବୁ ଦୁଃଖ ଦୂରକରିବା ଲାଗି ଉପଯୁକ୍ତ ସଂକଳ୍ପ ଅମର ରହିବା ଉଚିତ ।

୮ । ୯ । ୫୫

ଅଗଷ୍ଟ ପନ୍ଦର ଅଜି ଅନେକ ପଛରେ ପଡ଼ିଗଲଣି । ସେଦିନ ଆମେ ମଧ୍ୟ ଏଠାରେ ଅଳ୍ପ ବହୁତ ଉତ୍ସବ କରିଥିଲେ । ପତାକା ଉଡ଼ାଇଲେ, ଭୋଜିଭାତ କଲେ, ଆଉ ମନକୁ ଖୁସି କରିବା ଲାଗି ମନୋରଞ୍ଜନ କାର୍ଯ୍ୟକ୍ରମ ରଖିଥିଲେ । ହେଇଥାଇ କେତେ ଜାଗାରେ ସେଦିନ ଏମିତ ଭୋଜି ହୋଇ-

ଥିବ, ପତାକା ଉଡ଼ୁଥିବ, ମନକୁ ଖୁସି କରିବା ଲାଗି ମନୋରଞ୍ଜନ କାର୍ଯ୍ୟକ୍ରମର ବ୍ୟବସ୍ଥା ହୋଇଥିବ । ଦିଲ୍ଲୀରେ ଉପର ମହଲରେ ହୁଏତ ସେଦିନ ଇନ୍ଦ୍ରପୁରୀର ବ୍ୟଞ୍ଜନ ବନ୍ଧ ଚାଲିଯାଇଥିବ ।

ଏବେ ବି ମନେ ଅଛି । ସେଦିନ ସକାଳେ ମୁଁ ସାଇକେଲରେ ଅନୁଗୋଳରୁ ଏଠାକୁ ଆସୁଥାଏ । ଅନୁଗୋଳ ବଜାରରେ କେତେ ଜଣ ମାଷ୍ଟର ଆଉ ପିଲାଙ୍କୁ ପତାକା ଧରି ଚକ୍କର କରି ଯାଉଥିବାର ଦେଖି ଆସିଥିଲି । କିନ୍ତୁ ଅନୁଗୋଳ ଛାଡ଼ି ଯେମିତି ଗାଉଁଲି ରାଜ୍ୟକୁ ଆସିଲି, ସ୍ୱାଧୀନତା ଉତ୍ସବର କୌଣସି ଚିହ୍ନବର୍ଣ୍ଣ ସେଠି ଦେଖିପାରିଲି ନାହିଁ । ବର୍ଷା ଝିପି ଝିପି ପଡ଼ୁଥାଏ । ସବୁଦିନ ପରି ରାସ୍ତା ଲଇ ଗାଁରେ ମାଟି ରାସ୍ତା ଉପରେ କାଳିଆ ଲଙ୍ଗଳା ପିଲା କେଇଟା କାଦୁଅ ବଳିବଳି ହୋଇ ବୁଲୁଥାନ୍ତି । ଜମି ପାଚିଛି ବୋଲି କୋଉଠି ଧାନ ରୁଆ ହେଉଥାଏ । କୋଉଠି ଚାଷୀଘରର ଲକ୍ଷ୍ମୀ ଦରଓଦା ହୋଇ ଧାନ ତଳି ମୁଣ୍ଡାଇ ପଧାନ ଘରୁ ଆସୁଥାଏ । ନିତିଦିନର ସଂସାର-ଜଞ୍ଜାଳରେ ସମସ୍ତେ ବ୍ୟସ୍ତ ଥାନ୍ତି । ମୁଁ ଭାବୁଥିଲି, ଆମର ଏ ସ୍ୱାଧୀନତା ଅନୁଗୋଳ ସହରର ଛଡ଼ି ନାହିଁ । ସ୍କୁଲ କଲେଜରେ ପଢ଼ୁଥିବା ପିଲାଙ୍କ ଛଡ଼ା ଦେଶର ଅଉ କୌଣସି ପିଲା ଏହି ଦିନଟିର ଆନନ୍ଦରେ ଭାଗ ନେବାକୁ ଆସି ନାହାନ୍ତି ।

ଇଉରୋପରେ ସ୍ୱାଧୀନତା ଦିବସର ରୀତିନୀତି ଅଲଗା ଢଙ୍ଗର । ସେଠି ସେଦିନ ସମସ୍ତେ ମଜା କରନ୍ତି, ସମସ୍ତେ ଭୋଜି କରନ୍ତି, ପତାକା ଉଡ଼ାନ୍ତି । ରାତିରେ ମଉଜ ମଜଲିସ ହୁଏ, ନାଚ ଗୀତ ହୁଏ । ମଦ ଆଉ ମାଦକତାରେ ସେଦିନ କୁଟିଳିଳସୀ ମଣିଷ ଗୃହଦଉଡ଼ି ଛିଣ୍ଡାଇଦିଏ । ଇଂରାଜୀ ଭାଷାରେ independence ହେଉଛି ଆମ ସ୍ୱାଧୀନତାର ପ୍ରତିଶବ୍ଦ । କୌଣସି ପ୍ରକାର ନିର୍ଭରଶୀଳତା ନ ରହିବା ହେଉଛି in-dependence. ସେଥିଲାଗି independence ପାଳନ କରିବାକୁ ହେଲେ ସେଠି ମଣିଷ ଖୁସି କରେ, ସବୁ ବନ୍ଧନ ଛିଣ୍ଡାଇ ଦିଏ । ଗୃହିଦଉଡ଼ି କାଟିଦିଏ ।

ପଶ୍ଚିମ ସଭ୍ୟତାର independence ଆଉ ଆମ ସଭ୍ୟତାର ସ୍ୱାଧୀନତା ବା ସ୍ୱତନ୍ତ୍ରତା ଭିତରେ ଆକାଶ ପାତାଳ ପ୍ରଭେଦ ରହିଛି ।

ସ୍ୱାଧୀନ ହେବାର ଅର୍ଥ ହେଉଛି ସ୍ୱ ବା ଆପଣାର ଅଧୀନ ହେବା । ସ୍ୱତନ୍ତ୍ର ହେବାର ଅର୍ଥ ହେଉଛି ଆପଣାର ତନ୍ତ୍ର ବା ଆତ୍ମସଂଯମର ନିର୍ଦ୍ଦେଶକୁ ମାନିବା । ଆମର ସ୍ୱାଧୀନତା ଶବ୍ଦଟି ମଧ୍ୟରେ ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ସମସ୍ତ ପ୍ରକାର ବ୍ୟଞ୍ଜନା ରହିଛି । ମଣିଷର ଶରୀର ମଣିଷର ଅସଲ ପରିଚୟ ନୁହେଁ । ମଣିଷର ଲୋଭ, ମୋହ, ସ୍ୱାର୍ଥ ଓ ଅହଙ୍କାର ମଣିଷ ମନର ସତ୍ୟରୂପ ନୁହେଁ; ତେଣୁ ଆପଣାର ଶାସନ ଅର୍ଥ ଶରୀର, କାମ ଲାଳସା ବା ସଂଯମହୀନ ସ୍ୱାର୍ଥର ଶାସନ ନୁହେଁ । ମଣିଷର ଅସଲ ପରିଚୟ ହେଉଛି ତା'ର ଆତ୍ମା—ଯିଏ ସବୁ ସମ୍ଭାର ରଖିଛି, ଏଇ ଦେହ ଭିତରେ ରହି ଦେହକୁ ଚଳାଉଛି, ମନ ଭିତରେ ରହି ମନକୁ ଉଦ୍ବେଳିତ କରି ରଖୁଛି । ଯିଏ ସବୁରି ସହିତ ଏକପ୍ରାଣ କରିପାରୁଛି, ସେଇ ଆତ୍ମାଦ୍ୱାରା ହିଁ ମଣିଷର ଶ୍ରେଷ୍ଠ ପରିଚୟ ମିଳିପାରିବ । ଆମର ଧର୍ମଶାସ୍ତ୍ର ଓ ଦର୍ଶନଶାସ୍ତ୍ରରେ ଏହି ଆତ୍ମାର ନିର୍ଭୀକ ଘୋଷଣା କରାଯାଇଛି । ଏହି ଆତ୍ମାର ମହାନ ପରିଚୟଦ୍ୱାରା ମଣିଷକୁ ଭଗବାନଙ୍କ ସାନ୍ନିଧ୍ୟ ଯାଏ ଉଠାଇ ନିଆଯାଇଛି । ଆମେ ପ୍ରାୟ ସବୁଦିନେ ବ୍ୟବହାର କରୁଥିବା 'ସ୍ୱରାଜ୍ୟ' ଶବ୍ଦଟିର ମଧ୍ୟ ଏହି ଅର୍ଥ ରହିଛି । ସ୍ୱରାଜ—ସ୍ୱରାଟ୍, ଅର୍ଥାତ୍ ଆପଣା ରାଜ୍ୟ, ଅର୍ଥାତ୍ ଆତ୍ମାର, ଶାସନ । ଏଠି ଶୋଷଣ ନାହିଁ, ଏଠି ଅନ୍ୟାୟ ନାହିଁ, ଏଠି ମଣିଷର ମୂଲ୍ୟ କ୍ଷୁନ୍ନ କରିବାର ଦମ୍ଭ ନାହିଁ । ଏଠି ମଣିଷକୁ ଗୋଠରେ ପୂରାଇ ଅଡ଼ାଇନେବାର କୌଣସି ଉତ୍ତେଜନା ନାହିଁ । ଛାନ୍ଦୋଗ୍ୟ ଉପନିଷଦରେ ଯୋଗସିଦ୍ଧ ପୁରୁଷଙ୍କୁ 'ସ୍ୱରାଟ୍' ବୋଲି କୁହାଯାଇଛି । ସେଦିନ ଉତ୍ସବର ଆନନ୍ଦ ବିହ୍ୱଳତା ଭିତରେ ଆମେ ସ୍ୱରାଜ୍ୟ ବା ସ୍ୱାଧୀନତାର ପ୍ରକୃତ ମର୍ମକୁ କେତେଦୂର ସ୍ମରଣ କରିଥିଲେ, ସେ କଥା ମୁଁ ଜାଣେ ନାହିଁ । କିନ୍ତୁ ଆତ୍ମ-ସଂଯମର ସାଧନା ଉପରେ ହିଁ ଯେ ଆମ ସ୍ୱାଧୀନତାର ସ୍ଥାୟିତ୍ୱ ନିର୍ଭର କରୁଛି, ଏକଥା ଅଧିକ କହିବା ଦରକାର ପଡ଼ିବ ନାହିଁ ।

୯ । ୯ । ୪୫

ସଂସାରରେ କେତେ ମଣିଷ ମରୁଥିଲେ, କେତେ ନାନା ପ୍ରକାର ଦୁଃଖ ଦୁର୍ବିପାକ ମଣିଷର ଜୀବନକୁ ଗ୍ରାସ କରି ପକାଉଥିଲା । ଗୋଟାଏ ଗୋଟାଏ

ଯୁଦ୍ଧରେ ହଜାର ହଜାର ମଣିଷ ମରୁଥିଲେ । ଯୁଦ୍ଧ ଲାଗି ବିଜ୍ଞାନର ବୁଦ୍ଧି ଖରଚ ହେବା ଦିନଠାରୁ ଏବେ ତ ଗୋଟାଏ ଗୋଟାଏ ଦିନର ଯୁଦ୍ଧରେ ହଜାର ହଜାର ମରୁଛନ୍ତି । ହଜାର ହଜାର ବର୍ଗମାଇଲପରିମିତ ଲୋକ-ବସତି ଛାରଖାର ହୋଇଯାଉଛି । ଏହା ଛଡ଼ା ରୋଗ, ମଡ଼କ, ଭୂମିକମ୍ପ ତ ପୁଣି ରହିଛି । ମାଛି ପୋକ ପରି କେତେ ମଣିଷ ମରୁଛନ୍ତି । ବାର ବର୍ଷ ତଳେ ଗୋଟାଏ ଦୁର୍ଭିକ୍ଷରେ ବଙ୍ଗଳାରେ ତିରିଶ, ଚାଳିଶ ଲକ୍ଷ ଲୋକ ମଲେ । ମାସକ ତଳେ ବନ୍ୟାବିପ୍ଳାବରେ ବିହାର ଆଉ ଆସାମରେ କେତେ ମଣିଷ ମଲେ, କେତେ ସଂସାର ଛାରଖାର ହୋଇଗଲା ।

ଏବେ ସେମିତି ଗୋଟାଏ ବିପଦ ଆମ ଘର ପାଖରେ ଆମ ଭିତରୁ ଅନେକଙ୍କର ଘର ଉପରେ ପଡ଼ିଛି । ନଈବନ୍ଧ ଭାଙ୍ଗି କଟକ ଜିଲ୍ଲାଟା ସାରା ଆଜି ଜଳାର୍ଣ୍ଣବ ହୋଇଯାଇଛି । ସେପାଖ ଏପାଖ ଭିତରେ ସମସ୍ତ ପ୍ରକାର ଯୋଗାଯୋଗ ବନ୍ଦ ହୋଇଯାଇଛି । ଏଠି ଆମେ ସମସ୍ତେ ସେଥିଲାଗି ଅସ୍ଥିର ହୋଇ ପଡ଼ିଲୁଣି । ଆମେ ଭାବୁଛୁଁ ଗାଁ, ଦେଶସାରା ଏଡ଼େ ବଡ଼ ବିପଦରେ ଭାସି ଯାଉଥିବା ବେଳେ ଆମେ ଆଉ ଏଠି ଚୁପ ହୋଇ ବସି ରହିବା ନାହିଁ । ଏହା ଅତି ଭଲ କଥା । ଗୃହପାଖରୁ ନିର୍ବାସିତ ନିଶ୍ଚିନ୍ତ ହୋଇ ରହିବା ଲାଗି ଆମେ ଏଠିକି ଆସି ନାହୁଁ । ସେ ପାଖରେ ବୃହତ୍ତର ସମାଜର ଆମର ବାପ, ମାଆ, ଭାଇ, ଭଉଣୀ ଅଛନ୍ତି । ଆମ ଜୀବନର କେତେ ସ୍ନେହ-ପ୍ରେମର ଉତ୍ସ ସେହି ପାଖରେ ରହିଛି । ସେପାଖେ ବିପଦ ପଡ଼ିଥିବା ବେଳେ ଆମେ ସମସ୍ତେ କିଛି ନା କିଛି ସାହାଯ୍ୟ କରିବାକୁ ବାହାରିପଡ଼ିବା, କିଛି ନା କିଛି ସେବାରେ ଲାଗିବାକୁ , ବାହାରି ପଡ଼ିବା, ଏହା ଅତି ସ୍ୱାଭାବିକ କଥା । କିନ୍ତୁ ଖାଲି ଉତ୍ତେଜନା ବା ମୋହଜନିତ ଉଦ୍‌ବେଗର ବଶବର୍ତ୍ତୀ ହୋଇ ଆମେ ଏପରି ହେଉ ନାହୁଁ ତ ? ଏକଥା ଆମେ ଆପଣାକୁ ପଚାରିବା ଉଚିତ । ସଂସାର ଉପରେ ଆଜି ଯେଉଁ ଦୁଃଖ ପଡ଼ିଛି, ତାହାର ଆଘାତକୁ ଆପଣା ହୃଦୟରେ ଅନୁଭବ କରିବା ; ହଜାର ହଜାର ଘର ଉଚ୍ଛନ୍ନ ହୋଇ ଯାଉଥିବା ବେଳେ ସେ ଦୁଃଖକୁ ଆପଣାର ଦୁଃଖ ପରି ଅନୁଭବ କରିବା ; କେବଳ ଉତ୍ତେଜିତ ବା ଦୁଃଖବିବଶ ହୋଇଯିବାରୁ ଏଥିଲାଗି ଅନେକ

ଧୈର୍ଯ୍ୟ ଦରକାର । ସୁଖର ମୋହ ପରି ଦୁଃଖର ମଧ୍ୟ ମୋହ ରହିଛି । ସୁଖ ଯେମିତି ଅନ୍ଧ କରାଏ, ଦୁଃଖ ମଧ୍ୟ ସେମିତି ଅନ୍ଧ କରାଇଦିଏ । ଦୁଃଖର ମୋହରୁ ଆମକୁ ସାବଧାନ ହେବାକୁ ପଡ଼ିବ ।

ଆଧ୍ୟାତ୍ମିକ ଜୀବନରେ ଦୁଃଖର ମୂଲ୍ୟବାନ ସ୍ଥାନ ରହିଛି । ଦୁଃଖ ମଣିଷକୁ ଚେତାଇଦେବାକୁ ଆସେ । ମଣିଷ ଯେତେବେଳେ ମୋହନିଦ୍ରାର କବଳରେ ପଡ଼ି ସୁଖ ବା ଭୋଗର ଅଳସ ସ୍ୱପ୍ନ ଦେଖୁଥାଏ, ସେତିକିବେଳେ ଦୁଃଖ ହଠାତ୍ ଆସି ନିଦ ଭାଙ୍ଗିଦେଇ ଯାଏ । ଭୋଗର ନିଶା ଭାଙ୍ଗିଯାଏ, ସ୍ୱାର୍ଥ-ଲାଳସାର କୁହୁଡ଼ି କାକର ହୋଇ ଝରିପଡ଼େ । ଭଗବାନଙ୍କ ସହିତ ପୁଣି ମଣିଷର ଖିଅ ଯୋଡ଼ି ହୋଇଯାଏ । ଆଜିର ଏ ଦୁଃଖ ଦିନରେ ଆମେ ସେହିପରି ଆମର ନିଦ ଭାଙ୍ଗିଦେବା । ସଂସାରରେ ଆଜି ଅନେକ ଦୁଃଖ । ସବୁଆଡ଼େ ଆଜି ଅସହାୟ ମଣିଷର ଆଶା ଓ ଆକାଂକ୍ଷା ଅଥଳ ଜଳ ଭିତରେ ଉବୁଟୁବୁ ହେଉଛି । ଆମେ ତ ଛିପ କାଗାଡ଼ିଏ ଧରି ସଂସାରରେ ବେଶ ରହିଛେ । ଏଠି ଭୋଗର ସ୍ୱପ୍ନ ଦେଖୁଛେଁ । ନାନା ଆନନ୍ଦ ବିନୋଦରେ ଯୌବନର ମିଠାଝଣ୍ଟା ଗୃଖିବା ଲାଗି ବେଶ୍ ପ୍ରସ୍ତୁତ ହୋଇ ରହିଛେ । ଶରୀର ଓ ମନର ନାନା ସାମଗ୍ରୀ ବାଢ଼ି ବେଶ୍ ଆମର ଭୋଗର ଉତ୍ସବକୁ ଆମେ ଜମାଇ ରଖିଛେଁ । ସେ ପାଖରେ ଆମରି ଆପଣାର ଲୋକେ ଜୀବନ ମରଣର ମଝି ଧାରରେ ପଡ଼ି ହାହାକାର କରୁଅଛନ୍ତି । ସେଠି ଆମରି ଜମିର ଶସ୍ୟସମ୍ପଦ ଉପରେ ଅକାଳ ପାଣି ଗର୍ଜନ କରୁଛି । ଆମର ବାପଭାଇ ସମ୍ଭାର ରଖିଥିବା ସଂସାର ଆଜି ଉଜୁଡ଼ିଯାଉଛି । ସେଠି ଆଜି କେତେ ପିଲାଙ୍କ ପେଟରେ ହୁଏତ ଟୋକେ ଦାନା ପଡ଼ି ନାହିଁ । ଏ ଦୁଃଖକୁ ଆମେ ଆପଣାର ହୃଦୟରେ ଅନୁଭବ କରିବା ।

ଆମର ସହାନୁଭୂତି ଯେପରି କ୍ଷଣସ୍ଥାୟୀ ନ ହେଉ, କ୍ଷଣକର ଅସ୍ଥିରତା ଦେଖାଇ ଯେପରି ତାହା ପୁଣି ଥଣ୍ଡା ହୋଇ ନ ଯାଉ । ପାଞ୍ଚ ଟଙ୍କା ପଠାଇ ଦେଇ ଯେପରି ଆମର ଦରପାକଲା ମନ ପୁଣି ଭୋଗ ଆଉ ବିନୋଦନର ଶେଯ ଉପରେ ଅଚେତ ହୋଇ ଶୋଇ ନ ପଡ଼ୁ । ଆମେ ଆମ ଜୀବନର ପରିବର୍ତ୍ତନ

କରିଦେବା । ଆଜିର ଦୁଃଖ ଆମ ଭିତରେ ପୋକପରି ରହିଥିବା, ସମସ୍ତ ପ୍ରକାର ଭୋଗାଦର୍ଶକୁ ପୋଡ଼ି ପାଉଁଶ କରିଦେଉ । ପାଞ୍ଚ ଜଣଙ୍କ ଦୁଃଖରେ ଭାଗୀ ହୋଇପାରିବା ଭଳି ଆମର ହୃଦୟ ଉଦାର ହୋଇଯାଉ । ଆମ ଜୀବନର ଦୃଷ୍ଟିକୋଣ ବଦଳିଯାଉ । ଆଜି ପ୍ରାର୍ଥନାରେ ବସି ଜୀବନର ହିସାବ ଜୀବନର ମାଲିକ ପାଖରେ ବୁଝାଇବାବେଳେ ଆମେ ଏଇ ସଂକଳ୍ପ କରିନେବା ।

୧୬ । ୯ । ୪୪

ଏ କେତେ ଦିନ ହେଲା ସେଇ ଗୋଟାଏ କଥା ଛଡ଼ା ଆମେ ଆଉ କିଛି ଚିନ୍ତା କରିପାରୁ ନାହୁଁ । ଖବରକାଗଜ ଦେଖିଲେ ଆମେ କେତେ ଆକୁଳ ହୋଇ ଧାଇଁ ଯାଉଛୁ । ଆମର ଆଖି ଆଗରେ ନଈବଢ଼ିର ଭୟଙ୍କର ଦୃଶ୍ୟମାନ ସତତ ଭାସି ଭାସି ଗ୍ଲୁଲିଛି । କୋଉଠି ବିଲ, ଟୋଟା, ଦୁଆର ଆଉ ଘରଗୁଡ଼ିକୁ ଏକ କରି ପାଣିର ସୁଅ ଚାଲିଛି । କୋଉଠି ଘର ଭିତରେ ପାଣି ପଶି ଅସହାୟ ମଣିଷକୁ ଭସାଇ ନେଇଯାଉଛି । କୋଉଠି ଛୋଟିଆ ଟାପୁ ଉପରେ ହଜାର ହଜାର ମଣିଷ ତନଧନ ଉପାୟରେ ବାସ୍ତହୋଇ ପଡ଼ିଲେଣି । ଆମର ଘର, ଆମର ମା ବାପା, ଭାଇ ଭଉଣୀ ଆଜି ସେହି ବିପଦରେ ପଡ଼ିଛନ୍ତି । ସେଠି ସେମାନଙ୍କର କି ଦଶା ହୋଇଛି, ତା ଆମେ କଳ୍ପନା ମଧ୍ୟ କରିପାରୁନାହୁଁ । ସେମାନଙ୍କଠାରୁ ଶହେ ମାଇଲ ଦୂରରେ ଥାଇ ମଧ୍ୟ ସେମାନଙ୍କର ଦୁର୍ଦ୍ଦଶାର କଳ୍ପନା କରି ଦେହ ଶୀତେଇ ଉଠୁଛି । ପାଖରେ ଥିଲେ ଆଉ କ'ଣ ହୋଇଥାନ୍ତା କେଜାଣି ?

ଭୁବନବ୍ୟାପୀ ଆଜି ଆମେ ଖାଲି ଦୁଃଖର ପ୍ରତ୍ୟକ୍ଷ କରୁଛୁ । ଖାଲି ଦୁଃଖ ଆମର ସମସ୍ତ ଅନ୍ତରକୁ ଅଭିଭୂତ କରି ରଖିଛି । ଦୁଃଖର ଏ କି ଅପୂର୍ବ ଶକ୍ତି ରହିଛି ! ସୁଖବେଳେ ଏପରି ଏକାତ୍ମର ଅନୁଭବ ସାଧାରଣତଃ ହୋଇ ନ ଥାଏ । ସେତେ ଉପଭୋଗ ଭିତରେ ବୁଡ଼ି ରହିଲେ ମଧ୍ୟ ଭବିଷ୍ୟତରେ କାଳେ ଭୋଗ ଆଉ ସୁଖ ଚାଲିଯିବ, ସେଥିଲାଗି ସୁଖ ବେଳେ ମନ ସତତ ଆଶଙ୍କାରେ ସଶଙ୍କ ହୋଇ ରହିଥାଏ । କିନ୍ତୁ ଦୁଃଖ ଅନୁଭବ କଲାବେଳେ ମନ ଭିତରେ ସେପରି

କୌଣସି ଆଶଙ୍କା ନ ଥାଏ, କୃପଣତା ମଧ୍ୟ ନ ଥାଏ । ଦୁଃଖ ମନକୁ ଶୁଦ୍ଧ କରେ, ଦୁଃଖ ସମସ୍ତ ପ୍ରକାର ଭୋଗ ସ୍ୱପ୍ନରୁ ମନକୁ ତାର ଆପଣା ନୀଡ଼କୁ ସଂଗୃହୀତ କରି ନେଇଆସେ । ସଂସାରର ଦୁଃଖରେ ସମଦୁଃଖୀ ହେଲାବେଳେ ମଣିଷ ସବୁ ସ୍ୱାର୍ଥବୁଦ୍ଧି ପାଶୋରିଦିଏ, ଆପଣା ଜୀବନର ସବୁ ମାୟା ଓ ମଳିନତା ଧୋଇ ହୋଇଯାଏ । ସେତେବେଳେ ଆପଣାର ସବୁ ସମର୍ପଣ କରିଦେବାକୁ ଇଚ୍ଛା ହୁଏ, ଆପଣାର ଯାହା ଅଛି ସବୁ ଦେଇ ଆଉ ଜଣଙ୍କର ଅଭାବର କଣେ ଭରି ଦେଇ ଆସିବା ଲାଗି ମନ ଉଦ୍‌ବିଗ୍ନ ହୋଇଉଠେ । ମନରେ ନୂଆ ଶକ୍ତି ଭରିଯାଏ, ନୂଆ ସଂକଳ୍ପ ଆସେ । ସୁଖ ମଣିଷ ଭିତରେ ଭୟ ପୂରାଇଦିଏ, ଦୁର୍ବଳତା ପୂରାଇଦିଏ; କିନ୍ତୁ ଦୁଃଖ ମଣିଷର ଭୟ ହରାଇନିଏ, ମଣିଷକୁ ଶକ୍ତିଶାଳୀ କରିଦେଇଯାଏ ।

ଦୁଃଖ ଆସି ପହଞ୍ଚିବା ପୂର୍ବରୁ ଆମେ ବାରପ୍ରକାର ଅନୁରକ୍ତି ବିରକ୍ତି ନେଇ ବାର ଜାଗାରେ ପଡ଼ିରହିଥାଉ । ଜୀବନର କେନ୍ଦ୍ରର ଅନେକ ଦୂରକୁ ବିଚ୍ୟୁତ ହୋଇଯାଇଥାଉ । ପର୍ବତଶିଖରର ବର୍ଷାଜଳ ପରି ଆମର ଚିତ୍ତ ନାନାଆଡ଼େ ବିକ୍ଷିପ୍ତ ହୋଇ ଆପଣାର ସଂହତି ହରାଇ ପକାଇଥାଏ । ଏତିକିବେଳେ ଦୁଃଖର ଗୋଟାଏ ଆଘାତ ପୁଣି ଆମକୁ ଆମର ଅସଲ ଆଶ୍ରୟ ପାଖକୁ ଫେରାଇ-ଆଣେ । ଆମେ କେନ୍ଦ୍ର ପାଖକୁ ବାହୁଡ଼ିଆସୁ, ସାରା ସଂସାର ସହିତ ସମଦୁଃଖୀ ହେବାର ବଳ ଆମର ଆସେ । ଆପଣା ସ୍ୱାର୍ଥକୁ ପଛରେ ରଖି ଆର ଅପରକୁ କିଛି ସାହାଯ୍ୟ କରିପାରିବାର ମଣିଷପଣିଆ ପୁଣି ଆମ ଭିତରେ ଜୀବନ ପାଇ ଉଠେ । ଏଇଥିଲାଗି ଯୁଗେ ଯୁଗେ ମହାପୁରୁଷମାନେ ଦୁଃଖର ଏତେ ପ୍ରଶଂସା କରିଛନ୍ତି । ଏଇ ଦୁଃଖ ନେଇ ସଂସାରର ଅଧେ କାବ୍ୟକବିତାର ସୃଷ୍ଟି ହୋଇଛି । କାରଣ ଦୁଃଖ ଆମକୁ ସାରା ସଂସାର ସହିତ, ସମସ୍ତ ସୃଷ୍ଟି ସହିତ ଏକାତ୍ମ ହେବାକୁ ଶିଖାଏ । ଯଥାର୍ଥ ଗଭୀର ଭାବରେ ଅନୁଭବ କରି ଶିଖିଲେ ଦୁଃଖ ଆମକୁ ଭଗବାନଙ୍କ ଆଡ଼କୁ ମୁହାଁଇନିଏ; ଭଗବାନଙ୍କର ଯୋଗ୍ୟ ହେବା ଭଳି ଆମକୁ ପବିତ୍ର ଓ ନିର୍ମଳ କରିଦିଏ ।

ଆଜିକାର ଦୁଃଖ ଆମକୁ ସେଇ ଗଭୀର ଅନୁଭୂତି ଆଣି ଦେଉ । ସବୁବେଳେ, ଜୀବନର ପ୍ରତ୍ୟେକ କାର୍ଯ୍ୟରେ ଆମେ ସାରା ସଂସାରର ବିସ୍ତୃତ

କ୍ଷେତ୍ର ଉପରେ ଆପଣାର ବସ୍ତୁର କରି ଶିଖୁ । ଆମର ସ୍ୱାର୍ଥ ଓ ମୋହର ସବୁ ଲାଲସା ଦୂର ହୋଇଯାଉ । ଆମ ଭିତରେ ଆମର ଅନ୍ତରକୁ କାମୁଡ଼ି ଧରିଥିବା ଭୋଗ ଓ ଭୀତିର ସମସ୍ତ କୀଟ ଆଜି ମରିଯାଆନ୍ତୁ । ଖୋଲି ନିର୍ମଳ ଜ୍ଞାନ ଓ ନିର୍ମଳ ସେବାର ଜୀବନ-ପାତ୍ରଟି ଧରି ଭଗବାନଙ୍କ ପାଖରେ ଠିଆ ହୋଇପାରିବାର ସାହସ ଆମେ ଯେପରି ଅନ୍ଧକାର ଦୁଃଖ ଭିତରୁ ପାଇପାରୁ । ଆଉ କେତେ ଦିନ ଗଲେ ନଈରୁ ପାଣି ଶୁଖିଯିବ, ଭଙ୍ଗା ସଂସାର ପୁଣି ନୂଆହୋଇ ହସିଉଠିବ, ଆଜିର ବିକଟ ଦୁଃଖ କାଲିକୁ ରହିବ ନାହିଁ । କିନ୍ତୁ ଆଜିର ଦୁଃଖ ନିର୍ମଳ ଓ ଶୁଦ୍ଧ ହେବାର ଯେଉଁ ଶକ୍ତି ଆଜି ଆମକୁ ଦେଇଯାଉଛି, ପୁଣି ଭୋଗରେ ମଜ୍ଜି ଆମେ ଯେପରି ସେହି ଶକ୍ତିଟିକକ ହରାଇ ନ ବସୁ ।

୧୩ । ୯ । ୫୫

ଆଜି ସକାଳୁ ଆମର ଭିତରୁ ଜଣେ ଭାଇଙ୍କର ବ୍ୟକ୍ତିଗତ ଖାତା ମୁଁ ପଢ଼ୁଥିଲି । ସେପ୍ଟେମ୍ବର ଏଗାର ତାରିଖ ଦିନ ବିନୋବାଜୀଙ୍କର ଜନ୍ମତିଥିକୁ ସେ ଏକ ନୂଆ ପ୍ରକାରେ ପାଳନ କରିଛନ୍ତି । ପିଲାଦିନରୁ ଆଜିପର୍ଯ୍ୟନ୍ତ ସେ ଯେତେ କୁକାର୍ଯ୍ୟ କରି ଆସିଛନ୍ତି, ଯେତେ ଥର ସଂଯମ ଓ ଆତ୍ମନିର୍ମାଣର ପଥ ଛାଡ଼ି ଯାଇଛନ୍ତି, ଯେତେଥର ସେ ଭୋଗଲାଲସାରେ ପଡ଼ି ଆପଣାକୁ ବାନ୍ଧି ପକାଇବାର ମୋହଜାଲ ତିଆରି କରିଛନ୍ତି ସେ ଦିନର ପୁଣ୍ୟ ତିଥିରେ ସେ ସବୁକଥା ଖୋଲି ଲେଖି ପକାଇଚନ୍ତି । ଅନ୍ତରର ଅନୁଭୂତିରେ ଯେଉଁଠି ଯେତେ ପଚୁସଡ଼ା ସ୍ମୃତିର କାଦୁଅ ଲାଗିରହିଥିଲା, ସବୁ ପୋଛିପକାଇ ସେ ନିର୍ମଳ ହୋଇ ଯାଇଛନ୍ତି । ମୁଁ କହିବି ସେ ଯଥାର୍ଥ ଭାବରେ ବିନୋବାଜୀଙ୍କର ଜନ୍ମତିଥି ପାଳନ କରିଚନ୍ତି ।

ମହାପୁରୁଷମାନଙ୍କର ଜନ୍ମତିଥି ପ୍ରଧାନତଃ ଆମକୁ ଏହିପରି ଚେତେଇ ଦେବାକୁ ଆସେ, ଏହିପରି ଆମର ନିଦ ଭଙ୍ଗାଇଦେବାକୁ ଆସେ । ନାନା ଲୋଭ ଛିଡର ଲାଲସା ଓ ଆଶଙ୍କାରେ ଆମେ ଜର୍ଜର ହୋଇ ପଡ଼ିଥିଲାବେଳେ

ତାହା ଧକ୍କାଦେଇ ଆମର ବନ୍ଦ ଦୁଆରକୁ ଖୋଲି ଦେବା ଲାଗି ଆସେ । ଚିରାଚରିତ ଜୀବନଯାତ୍ରାରେ ଅନେକ ଅସାର ଆବର୍ଜନାକୁ ନାନା ଆଡ଼ମ୍ବରରେ ସାଇତିଧରି ଯେତେବେଳେ ଆମେ ସୁଖୀ ଜୀବନ ଯାପନ କରିବାର ମୋହରେ ପଡ଼ିଥାଉ, ସେତିକିବେଳେ ଏହିପରି ଗୋଟିଏ ଗୋଟିଏ ଦିନ ଏକ ଅଦ୍ଭୁତ ଆହ୍ୱାନ ନେଇ ଆମ ଆଗରେ ପହଞ୍ଚେ । ଆମର ସବୁ ଶାନ୍ତି ଆଉ ସାନ୍ତ୍ୱନା ଚାଲିକୁ ଯାଏ । ଆମର ସବୁ ବେଶ ପଦାରେ ପଡ଼ିଯାଏ, ମୋହ ଉପରେ ବିବେକର ଜୟ ହୁଏ । ମଇଳା ଲୁଗାକୁ ତଳେ ପକାଇଦେଇ ଆସିଲା ପରି ଆମେ ଘୋଡ଼ାଇ ରଖିଥିବା ସବୁ ମଇଳାକୁ ଖୋଲି ବାହାର କରିଦେବାକୁ ଅପୂର୍ବ ବଳ ପାଉ । ଆମ ଆପଣା ଭିତରେ ଲୁଚି ରହିଥିବା ଶକ୍ତିର ସାକ୍ଷାତ ପରିଚୟ ମିଳିଯାଏ । ସଂସାରରେ ନୂଆ ହୋଇ ଜନ୍ମଲଭ କଲା ପରି ଲାଗେ । ନିଜର ଲଜ୍ଜା ଓ ଗ୍ଲାନିଗୁଡ଼ାକ ଲୁଚାଇ ରଖିବାକୁ ଆଉ ଭଲ ଲାଗେ ନାହିଁ । ସବୁପ୍ରକାର ଢାଙ୍କୁଣି ଖୋଲିଦେଇ ନଗ୍ନ ପବିତ୍ର ଶିଶୁଟି ପରି ଆମେ ବାହାରିଆସୁ । ସଂସାରକୁ ନୂଆ ଆଖିରେ ଦେଖିଲା ପରି ମନେହୁଏ । ସଂସାରର ଓ ଆପଣାର ନୂଆ ପରିଚୟ ମିଳେ । ଭଗବାନଙ୍କୁ ଅତି ପାଖରେ ପାଇଲାପରି ଲାଗେ ।

ଏମିତି ଆମର ନବଜନ୍ମ ହେଉ । ଏଇଥିରେ ହିଁ ଆମର ଶିକ୍ଷାକ୍ରମ ସାର୍ଥକ ହେବ । ବାହାରର କଞ୍ଚା ଆବରଣଟାକୁ ପୋଡ଼ି ଭିତରର ଖାଣ୍ଟି ସୁନାକୁ କାଢ଼ି ଦେଖାଇଦେବା ହେଉଛି ପ୍ରକୃତ ଶିକ୍ଷାର କାମ । ଆମ ଉପରେ ସଭ୍ୟତା, ସମ୍ମାନ ଓ ସଂସ୍କାରର ନାନା ଆବରଣ ରହିଛି । କୁଶିକ୍ଷାର ମୋହରେ ପଡ଼ି ଏହି ଆବରଣକୁ ଆମେ ନାନା ପ୍ରକାର ବାହାନା ଦେଖାଇ ସହିବାରେ ଅଭ୍ୟସ୍ତ ହୋଇପାଉଛୁ । ଏସବୁ ଅତ୍ୟାଚାରର ଫଳରେ ଆମର ଅସଲ ମନ, ଆମର ଅସଲ ଶକ୍ତି ଆଉ ଅସଲ ସୌନ୍ଦର୍ଯ୍ୟ କେତେ ଆବରଣ ତଳେ କୋଉଠି ଚାପା ପଡ଼ି ରହିଯାଉଛି । ଆମର ପ୍ରକୃତ ଜନ୍ମ ହୋଇ ପାରୁନାହିଁ । ନିଜର ଶକ୍ତି, ନିଜର ସାମର୍ଥ୍ୟ ଓ ସୌନ୍ଦର୍ଯ୍ୟର ପ୍ରକୃତି ପରିଚୟ ଆମେ ପାଇପାରୁ ନାହୁଁ । ସଂସାରର ହାଟବଜାର ଲାଗି ଆପଣାକୁ ସଜାଇବାରେ ଦିନରାତି ବ୍ୟସ୍ତବିବ୍ରତ ରହି ଆମେ ପଛରେ ଅନ୍ତରାଳରେ ପଡ଼ିରହୁଛୁ । ଏଇଠି ସବୁ ଶିକ୍ଷାର ପରାଜୟ ହେଉଛି । ନାନାପ୍ରକାର ବିଦ୍ୟା

ନା କାରିଗରିରେ ହୁଏତ ଆମର ଦକ୍ଷତା ବଢ଼ୁଛି, କିନ୍ତୁ ଆପଣାର ଶକ୍ତିକୁ ଆବିଷ୍କାର କରିବା ଲାଗି ଆମର ବଳ ହଟିଯାଉଛି ; ବିଶ୍ୱାସ ମରିଯାଉଛି । ସୃଷ୍ଟିର ଅପାର ଆନନ୍ଦ-ଝରର ଅତି ନିକଟରେ ରହି ମଧ୍ୟ ଆମେ ତାଠୁଁ ବହୁ ଦୂରରେ ବଞ୍ଚିତ ହୋଇ ରହୁଛୁ ।

ଧର୍ମ-ଜୀବନରେ ପୋଷାକୀ ଆଉ ଆଟପହରିଆର ଭେଦ ନାହିଁ । ଧାର୍ମିକ ଲୋକ ବାହାରେ ଯେମିତି, ଭିତରେ ମଧ୍ୟ ସେମିତି । ମଧ୍ୟଯୁଗର ୟୁରୋପୀୟ ଧର୍ମସାଧକ କେମ୍ପିସ୍ (Kempis) ଏକଥା କହିଛନ୍ତି । ଧର୍ମ-ଜୀବନରେ କେବଳ ଗୋଟାଏ ସିଂହାସନ ରହିଛି, ତାହା ଭଗବାନଙ୍କ ପାଇଁ, ସତ୍ୟ ପାଇଁ । ସେଠି ଗୋଟାଏ ଅନୁରକ୍ତି, ସେଠି କେବଳ ଜଣକର ଭୟ । ତାହା ଭଗବାନଙ୍କର, ସତ୍ୟର । ନାନା ପ୍ରକାର ଲଜ ଓ ଅପମାନର ଆତଙ୍କିତ ଯୁକ୍ତିରେ ଆମେ ଜୀବନକୁ ଦୁଇ ଖଣ୍ଡ କରି ପକାଇଛୁ । ଆମର ଧର୍ମ, ଆମର ଦୃଷ୍ଟିକୁ ଏହିପରି ଆମେ କଳୁଷିତ କରି ରଖିଛୁ, ଏଇ ଦୁଇଖଣ୍ଡକୁ ସାହସର ସହିତ ଯିଏ ଯୋଡ଼ି ଜୀବନ-ପଥରେ ନିର୍ମଳ ହୋଇ ଠିଆହେବାର ଉଦ୍ୟମ କରୁଛି, ସେ ଆମ ସମସ୍ତଙ୍କର ଅଭିନନ୍ଦନର ଯୋଗ୍ୟ । ତାହାର ଜୟ ହେଉ, ତାହାରି ମଧ୍ୟଦେଇ ସତ୍ୟର ଜୟ ହେଉ ।

୨୪ । ୯ । ୫୫

ଇଉରୋପର ଧର୍ମ-ଇତିହାସରେ ଥିବା ଗୋଟିଏ ଅଦ୍ଭୁତ କାହାଣୀ ମୋର ଆଜି ଖାଲି ମନେପଡ଼ୁଛି । ଆମେ ସମସ୍ତେ ଏଇ କେତେଦିନ ହେଲା ଦୁଃଖରେ ସନ୍ତପ୍ତ ହୋଇ ରହିଛୁ । ସେଇ ଏକ ଦୁଃଖ ଭାବନାଟି ଛଡ଼ା ଆମ ମୁଣ୍ଡରେ ଆଉ କିଛି ପ୍ରବେଶ କରିପାରୁ ନାହିଁ । ଦୁଃଖକୁ ଗଭୀର ଭାବରେ କିପରି ହଜମ କରାଯାଇପାରିବ, ତାର ଏକ ଦୃଷ୍ଟାନ୍ତ ଆମେ ଆଜି ଶୁଣିବା । ଆଜିକୁ କେତେ ଶହ ବର୍ଷ ତଳେ ଇଟାଲୀ ଦେଶର ସିଏନା ସହରରେ କାଥେରିନ୍ ନାମରେ ଜଣେ ସନ୍ନ୍ୟାସିନୀ ଥିଲେ । ନାଜାରେଥର ଯୀଶୁଖ୍ରୀଷ୍ଟଙ୍କୁ କିପରି କ୍ରୁସ୍ ଉପରେ କଣ୍ଟା ଫିଟାଇ ମାରି ଦିଆଯାଇଥିଲା, ସେହି ନିର୍ମମ କାହାଣୀ

ଆମେ ସମସ୍ତେ ଜାଣୁ । କାଥେରିନ୍ ପିଲାଟି ଦିନରୁ ଏହି କଥା ଭାବୁଥିଲେ । ଯୀଶୁଙ୍କର ଜୀଅନ୍ତା ଶରୀର ଉପରେ କଣ୍ଟା ପିନ୍ଧାହୋଇ ରକ୍ତ ବୋହୁଥିବାବେଳେ ସେ ଯେ କେତେ ପ୍ରାଣାନ୍ତକ କଷ୍ଟ ପାଇଥିବେ, ଏହି କଥା ଭାବି କାଥେରିନ୍ଙ୍କର ଦେହ ଶୀତେଇ ଉଠୁଥିଲା । ସାରା ସଂସାରର ପରିତ୍ରାଣ ଲାଗି ଭଗବାନ-ପୁତ୍ର ଯୀଶୁଖ୍ରୀଷ୍ଟ କେତେ କଷ୍ଟ ପାଇଲେ, ସଂସାରର ସବୁ ପାପକୁ ଧୋଇନେବା ଲାଗି କେତେ ଦୁଃଖ ଓ ଯନ୍ତ୍ରଣାକୁ ସେ ଆପେ ବରଣ କରିନେଲେ, ଏହି ଚିତ୍ରମାନ ନିରନ୍ତର ସନ୍ନ୍ୟାସିନୀ କାଥେରିନ୍ଙ୍କର ମନକୁ ଅଭିଭୂତ କରି ରଖିଥିଲା । ଯୀଶୁଙ୍କ ଜୀବନର ଏହି ଘଟଣାଟି ତାଙ୍କ କଳ୍ପନାକୁ ସବୁବେଳେ ପୂର୍ଣ୍ଣକରି ରଖିଥିଲା ! ହଠାତ୍ ଦିନେ ଦେଖାଗଲା, ଯୀଶୁ ଶରୀରର ଯେଉଁଠି ଜାଗାରେ କଣ୍ଟା ପିନ୍ଧାହୋଇ ରକ୍ତ ବୋହିଥିଲା, ସନ୍ନ୍ୟାସିନୀ କାଥେରିନ୍ଙ୍କର ଶରୀରରେ ଠିକ୍ ସେହି ସେହି ଜାଗାରେ ଗୋଟିଏ ଗୋଟିଏ କ୍ଷତଚିହ୍ନ ଦେଖାଗଲା । ସତେ ଅବା କାଥେରିନ୍ ନିଜେ କ୍ରୁଶ୍‌ବିଦ୍ଧ ହୋଇ ତଜ୍ଜନିତ ଯନ୍ତ୍ରଣା ନିଜେ ମଧ୍ୟ ସହିଛନ୍ତି । ଏହି ଘଟଣା ପରେ କାଥେରିନ୍ଙ୍କର ଧର୍ମାନୁଭୂତ ସାରା ଦେଶରେ ପ୍ରଖ୍ୟାତ ହୋଇଗଲା । ସନ୍ନ୍ୟାସିନୀଙ୍କ ଜୀବନର ନାନା ସ୍ମୃତିକୁ ନିଜେ ଦେଖିବାର ଆଗ୍ରହ ନେଇ ମୁଁ ମଧ୍ୟ ଦୁଇବର୍ଷ ତଳେ ସିଏନା ସହରକୁ ଯାଇଥିଲି । ସେଠି କାଥେରିନ୍ଙ୍କର ତପସ୍ୟା-ମନ୍ଦିର, ବାସ-ଭବନ ଓ ଗୀର୍ଜା ସବୁ ଏପର୍ଯ୍ୟନ୍ତ ସୁରକ୍ଷିତ ହୋଇ ରହିଛି ।

ଧର୍ମର ଇତିହାସରେ ଏପରି ଏକାଧିକ ଦୃଷ୍ଟାନ୍ତ ରହିଛି । ଜଗତର ଦୁଃଖକୁ ଠିକ୍ ଆପଣାର ଦୁଃଖପରି ଅନୁଭବ କରି ଜଗତର କେତେ ଧର୍ମ-ପରାୟଣ ମହାତ୍ମା ସବୁ ସୁଖ, ସବୁ ଭୋଗବିଳାସ ଛାଡ଼ି ଜଗତ ଲାଗି ନିସ୍ତାର ବାଟ ଖୋଜି ବୁଲୁଛନ୍ତି । ସଂସାରର ରୋଗ, ସଂସାରର ବାର୍ଦ୍ଧକ୍ୟ, ଆଉ ସଂସାରର ମରଣ କେତେ କେତେ ମଣିଷଙ୍କୁ ଦାଣ୍ଡକୁ ବାହାରକରି ଆଣିଛି । ଖାଲି ସେହିପରି ଗଭୀର ଭାବରେ ଅନୁଭବ କରିବାର ଶକ୍ତି ଆମର ରହିଥିଲେ ହେଲା । ତାହେଲେ ଦୁଃଖଦ୍ୱାରା ଆମ ଜୀବନରେ ଅନେକ ପରିବର୍ତ୍ତନ ସମ୍ଭବ ହୋଇପାରିବ । ଦୁଃଖ ଆମ ସାରା ଜୀବନର ଭୂମିକୁ ବଦଳାଇ ଦେଇପାରିବ । କିନ୍ତୁ ଖାଲି ଅସ୍ଥିର ବା ଖାଲି ବିହ୍ୱଳ ହୋଇପଡ଼ିଲେ, ଖାଲି ଆତୁର

କାତର ହୋଇ ଚିତ୍କାର କରିବାକୁ ଆରମ୍ଭ କଲେ ଆମେ ଉଲେହେଲେ ଉପକୃତ ହୋଇପାରିବା ନାହିଁ । ଅସ୍ଥିରତା ଆଉ ଆତୁରତା ଅତି କ୍ଷଣସ୍ଥାୟୀ, ଠିକ୍ ଆଜିକାର ବଢ଼ିପାଣି ପରି । ସାତ ଦିନ ପରେ ବଢ଼ିପାଣିର ପ୍ରକୋପ କମିଗଲେ ଆଜିର ଅସ୍ଥିରତା ଆମକୁ ଯୋଉ ପୁରୁଣାକୁ ସେଇ ପୁରୁଣା ମଣିଷ ରଖିଦେଇ ଚାଲିଯିବ । କ୍ଷଣିକ ଉତ୍ତେଜନା ଚାଲିଗଲେ ଆମେ ଯୋଉ କ୍ଷୁଦ୍ରକୁ ସେଇ କ୍ଷୁଦ୍ର ହୋଇ ପଡ଼ି ରହିଥିବା ।

ଆଜିର ଦୁଃଖ ଆମ ସମସ୍ତଙ୍କୁ ଅନେକ ଶିକ୍ଷା ଦେଇଯାଉଛି । ଭୋକ ଉପାସରେ ଆକାଶତଳେ ପଡ଼ିରହିଥିବା କେତେ ମଣିଷର ଦୁଃଖରେ ଆମେ ସମଦୁଃଖୀ ହୋଇପାରୁଛୁ । ଆମେ ଆମର ସବୁ କାର୍ଯ୍ୟକ୍ରମ ଛାଡ଼ି ସେହିମାନଙ୍କ ଲାଗି କଣାଏ କିଛି କରିପାରିବାକୁ ବଳବାନ୍ଧି ବାହାରିଛୁ; କିଛି କରିପାରିଲେ ଆନନ୍ଦ ପାଉଛୁ । ଆମର ହୃଦୟ ଆଜି ଆପଣାର ସଂକୀର୍ଣ୍ଣ ହିସାବ ଖାତା ଛାଡ଼ି ଅନେକଙ୍କ ଲାଗି ପ୍ରସାରିତ ହୋଇପାରିଛି । ଏହିପରି ଶୁଦ୍ଧ ପ୍ରସାରିତ ହୃଦୟ ଆମର ସବୁ ଦିନର ସମ୍ପଦ ହୋଇ ରହିଥାଉ । ଆମେ ଆଜି ସରଳତାର ଦୀକ୍ଷା ନେବା, ଜୀବନଶୁଦ୍ଧିର ଦୀକ୍ଷା ନେବା । ଆମର ପଡ଼ୋଶୀ ଛୁଅପଇସାର ସନ୍ଧାନ ପାଇପାରୁ ନ ଥିବା ସ୍ଥଳେ ଆମେ ଆଉ ଛ'ଅଣାର ସୁଖସମ୍ଭୋଗକୁ ମନ ବଳାଇବା ନାହିଁ । ଆଜିକାର ଦୁଃଖ ଆମ ପ୍ରତ୍ୟେକଙ୍କର ଅନ୍ତରରେ ଯେଉଁ କ୍ଷତ କାଟିଦେଇଛି, ସେହି କ୍ଷତ ଆମର ସେହି ସେହି ଦିନଯାଏ ରହିଥାଉ, ଯେପର୍ଯ୍ୟନ୍ତ ସଂସାରରୁ ଭୋକ ଉପାସର ଦୁଃଖ ଦୂରୀ ନ ଯାଉଛି ।

୧୫ । ୯ । ୫୫

ଆମ ଗ୍ରେଟିଆ ସମାଜଟିରେ ପରସ୍ପର ଭିତରେ ଯେତିକି ସଦ୍‌ଭାବ ରହିବାର କଥା, ସେତେ ସଦ୍‌ଭାବ ନାହିଁ । ନାନାପ୍ରକାର ବ୍ୟକ୍ତିଗତ ବାଦବିବାଦକୁ ଟାଣି କରି ଧରି ଆମ ଭିତରୁ କେତେକ ସମସ୍ତଙ୍କ ସହିତ ଠିକ୍ ସାମାଜିକ ସମ୍ପର୍କ ରଖିପାରୁ ନାହାନ୍ତି । ମାସକ ତଳେ ସମସ୍ତେ ମିଶି ଏହି

କଥାର ଆଲୋଚନା କରିଥିଲେ । ମୁଁ ସେ ଆଲୋଚନାରେ ଉପସ୍ଥିତ ନ ଥିଲି । ଆଲୋଚନାରେ କରାଯାଇଥିବା ନିଷ୍ପତ୍ତିମାନ ପରେ ଶୁଣିବାକୁ ପାଇଥିଲି । ପ୍ରତ୍ୟହ ସକାଳୁ ଉଠିବା ପରେ ଆମେ ଭାଇଭଉଣୀ ପରସ୍ପରକୁ ନମସ୍କାର କରିବା ଏପରି ଗୋଟିଏ ନିଷ୍ପତ୍ତି ସେତିକବେଳେ କରାଯାଇଥିଲା । ବ୍ୟକ୍ତିଗତ ଭାବରେ ନିଷ୍ପତ୍ତିଟି ମୋତେ ଖୁବ୍ ଭଲ ଲାଗିଥିଲା । ସେହି ନିଷ୍ପତ୍ତିଟି ହେବା ମାସେ ହୋଇଗଲାଣି । ମୁଁ ଲକ୍ଷ୍ୟ କରିଛି ପ୍ରଥମେ କେତେଦିନ ଯାଏ ଆମ ଭିତରୁ କେତେ ଜଣ ସେହିଟିକୁ ମାନିଲେ । ପ୍ରତ୍ୟେକ ଦିନ ସକାଳୁ ଅନେକ ନମସ୍କାର ଶବ୍ଦ ଶୁଣାଗଲା । କିନ୍ତୁ କାଳକ୍ରମେ ଅନେକ ସେସବୁ ପାଶୋରିଦେଲେ । ତଥାପି ଦୁଇ ତିନି ଜଣ ଭାଇ ଏପର୍ଯ୍ୟନ୍ତ ସେହି ଅଭ୍ୟାସ ରଖିଛନ୍ତି । ମାଆଙ୍କ ତଳେ ସାରା ସମାଜ ଯେଉଁ ନିଷ୍ପତ୍ତି କରିଥିଲା, ସେହିମାନଙ୍କର ଅଭ୍ୟାସ ମଧ୍ୟରେ ଏପର୍ଯ୍ୟନ୍ତ ତାହା ବଞ୍ଚିରହିଛି । ଆମେ ନିଜେ ନିୟମ କରୁ, ନୂଆ ନୂଆ ବେଳେ ଭାରି ଉତ୍ସାହର ସହିତ ସେହି ନିୟମ ପାଳନ କରୁ । ପୁରୁଣା ହୋଇଗଲେ ଆମେ ହିଁ ସେହି ନିୟମକୁ ଭାଙ୍ଗୁ । ଏଇଟା ତ ସଂସାରର ନିୟମ ପରି ହୋଇଗଲାଣି । ତେଣୁ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ୟୁରୋପର ପାରିବାରିକ ଓ ସାମାଜିକ ଜୀବନରେ ଏହିପରି ଏକ ନିୟମ ରହିଛି । ସେହି ପରିବାରରେ ବିଛଣାରୁ ଉଠିଲେ ସମସ୍ତେ ପରସ୍ପରଙ୍କୁ ନମସ୍କାର କରନ୍ତି । ପରିବାରର ଆନନ୍ଦ ଓ ଆତ୍ମୀୟତା ବଢ଼ାଇବାରେ ଏହା ଯଥେଷ୍ଟ ସାହାଯ୍ୟ କରେ । ଇଉରୋପର ମଣିଷକୁ ମୁଁ ଦେବତା ବୋଲି କହୁ ନାହିଁ । ସେମାନଙ୍କ ଭିତରେ ଏପରି ବହୁସଂଖ୍ୟକ ଲୋକ ଅଛନ୍ତି ଯେଉଁମାନେ କେବଳ ଏକ ସାମାଜିକ ସଂସ୍କାରର ଅଭ୍ୟାସରେ ପଡ଼ି ପରସ୍ପରକୁ ନମସ୍କାର କରନ୍ତି, ଯେଉଁମାନେ କେବଳ ଯନ୍ତ୍ରବତ୍ ଏହି ନିୟମର ପାଳନ କରନ୍ତି । ତଥାପି ମୁଁ କହିବି, ଯେତେ ଯନ୍ତ୍ର ପରି ହୋଇ ଏହି ପ୍ରଥାଟି ଚଳାଇ ଆସୁଥିଲେ ମଧ୍ୟ ଏହାଦ୍ୱାରା ପରିବାରର ଖୁସି ବଢ଼େ, ପରସ୍ପର ମୁହଁରେ ଅନ୍ତତଃ କ୍ଷଣକ ଲାଗି ହସ ଫୁଟିଉଠେ, ଅନ୍ତତଃ କିଛି ସମୟ ଲାଗି ମଣିଷ ମଣିଷରେ ଆପଣାର ହୋଇଯାଏ । କିନ୍ତୁ ଆମର ଏଠି କ'ଣ ହୁଏ ? ସକାଳୁ ଉଠି ଆମେ ଅଧୁଆ ମୁହଁରେ ମୁହଁ ଫଣ ଫଣ ଆଖି ବଲ ବଲ କରି ବାହାରକୁ

ଆସୁ । ରାତ୍ରିର ଦୁଃସ୍ୱପ୍ନ ସେ ପର୍ଯ୍ୟନ୍ତ ଆମର ମିଜାଜଟାକୁ ପିତା କରି ରଖିଥାଏ । ନିଜର ଆଳସ୍ୟ ତଥାପି ଭାଙ୍ଗେ ନ ଥାଏ । ଆମେ ଏଇପରି ଭାବରେ ଆମର ଦିନ ଆରମ୍ଭ କରୁ । ସକାଳୁ ହସଖୁସିରେ ପରସ୍ପରକୁ ସ୍ନେହ ସମ୍ଭାଷଣ କରୁ କରୁ ଦିନଟି ଆରମ୍ଭ କରିଥିଲେ ଆମର ଜୀବନ ଓ ଦିନମାନର କାର୍ଯ୍ୟକଳାପ ଉପରେ କ'ଣ ତାର କୌଣସି ପ୍ରଭାବ ପଡ଼ୁ ନ ଥାନ୍ତା ?

ବିଭିନ୍ନ ଶରୀର ଧାରଣ କରି ଜଗତରେ ବିଚରଣ କରୁଥିଲେ ମଧ୍ୟ ଆମର ହୃଦୟ-ଗୁହାରେ ଆତ୍ମା ରହିଛି । ବିଭିନ୍ନ ବୟସର ଓ ବିଭିନ୍ନ ଘରର ହୋଇଥିଲେ ମଧ୍ୟ ଆତ୍ମା ଆମ ସମସ୍ତଙ୍କ ଜୀବନମାଳକୁ ଏକ ସୂତାରେ ଗୁନ୍ଥି ରଖିଛି । ପରସ୍ପରକୁ ନମସ୍କାର କଲାବେଳେ ଆମ ପରସ୍ପର ଭିତରେ ଥିବା ଆତ୍ମାକୁ ନମସ୍କାର କରୁ । ଆପଣା ଭିତରେ ପ୍ରଚ୍ଛନ୍ନ ହୋଇ ରହିଥିବା ଆତ୍ମାର ପରିଚୟ ଆମେ ପାଉ । ଶରୀର ଜଞ୍ଜାଳ ଓ ମୋହଗ୍ରସ୍ତ ମନ ଜନିତ ନାନା ଭେଦବିକାର ଆମକୁ ଜର୍ଜ୍ଜରିତ ସନ୍ତପ୍ତ କରି ରଖିଥାଏ । ପରସ୍ପରକୁ ନମସ୍କାର କଲାବେଳେ ଏସବୁ ଭେଦବିକାରକୁ ଜୟ କରିବା ଲାଗି ଆମେ ଯଥେଷ୍ଟ ବଳ ପାଉ । ସମସ୍ତଙ୍କ ସହିତ ଏକାତ୍ମତାରେ ବାନ୍ଧି ହୋଇଯିବା ଲାଗି ଆମେ ଅନେକ ଉତ୍ସାହ ପାଉ । କୌଷୀତକି ଉପନିଷଦରେ ରାଜା ଚିତ୍ର ପୁରୋହିତ ଶ୍ୱେତକେତୁଙ୍କୁ ବୁଝାଇଛନ୍ତି—ତ୍ୱମାତ୍ମାସି, ଯସ୍ତ୍ୱମସି ସୋଽହମସ୍ମୀତି । ତୁମେ ହେଉଛ ଆତ୍ମା । ଏଇ ଆତ୍ମାର ପରିଚୟକାଠିରେ ଦେଖିଲେ ତୁମେ ଯେଉଁ ଆତ୍ମା, ମୁଁ ମଧ୍ୟ ସେହି ଆତ୍ମା । ଆମ ଭିତରେ କୌଣସି ପ୍ରଭେଦ ନାହିଁ । ଆମେ ଆମ ଭିତରେ ନିହିତ ଥିବା ଏହି ଆତ୍ମାର ଅନୁଭବ କରୁଛୁ କି ? ଆପଣାକୁ ଓ ଅପରକୁ ଦେଖିଲାବେଳେ ଆମେ ପରସ୍ପର ସହିତ ଗୋଟିଏ ଜୀବନର ମାଳା ହୋଇ ଗୁନ୍ଥା ହୋଇଛୁ ବୋଲି ସ୍ୱୀକାର କରୁଛୁ କି ? ଆମର ଗ୍ରେଟିଆ ସମାଜର ସ୍ନେହ ଓ ସହୃଦୟତା ରଖିବା ଲାଗି ଆମକୁ ଏହି ବିଷୟରେ ଚିନ୍ତା କରିବାକୁ ହେବ ।

୨୭ । ୯ । ୫୫

ଦିନେ ସକାଳୁ ଆମର ଏଠି ଉଠିବାର ଘଣ୍ଟା ବାଜିଲା । ଜଣେ ଭାଇଙ୍କର ନିଦ ଭାଙ୍ଗିଲା ନାହିଁ । ବାହାରେ ଚଟ ପଡ଼ିଲା । ଅନେକ ଭାଇଭଉଣୀ ପ୍ରାର୍ଥନାରେ ଯୋଗଦେବା ଲାଗି ଆସି ପିଣ୍ଡାରେ ବସିଲେ । କିନ୍ତୁ ସେ ଭାଇ ତଥାପି ଶୋଇରହିଲେ । ସେଦିନ ସେ ପ୍ରାର୍ଥନାରେ ଯୋଗ ଦେଇପାରିଲେ ନାହିଁ । ତା'ପରେ ଆହୁରି କେତେ ସମୟ ଗଡ଼ିଗଲା । ପ୍ରାର୍ଥନା ସରିଲା । ଆମ ଭାଇଜଣକ ଧଡ଼ପଡ଼ ହୋଇ ଉଠି ଦେଖିଲେ ଯେ ପ୍ରାର୍ଥନା ସରିଗଲାଣି । ସେ ଉଠି ଆପଣା କାମରେ ଚାଲିଗଲେ ।

ଏବେ ଦିନେ ସେହି ଭାଇଙ୍କର ଦିନଲିପି ପଢୁଥିଲି । ସେ ଲେଖିଛନ୍ତି, "ମୁଁ ଦେଖିଲି ପ୍ରାର୍ଥନା ସରିଗଲାଣି, ସମସ୍ତେ ଆପଣା ଆପଣା କାମରେ ଲାଗିଗଲେଣି । ମନ ଭାରି ଖରାପ ହୋଇଗଲା । ସମସ୍ତେ ଉଠି ପ୍ରାର୍ଥନାରେ ଯୋଗଦେଲେ; ଅଥଚ ମୁଁ ଅଳସୁଆ ହୋଇ ଶୋଇରହିଲି । ଭାରି ଲାଜ ଲାଗିଲା ।" ଏହି ଘଟଣାଟି ବିଷୟରେ ସେ ପୁଣି ଲେଖିଛନ୍ତି, "ଆରବର୍ଷ ମୁଁ ଯୋଉଠି ପଢୁଥିଲି ସେଠି ମଧ୍ୟ ପ୍ରାର୍ଥନା ହେଉଥିଲା । କିନ୍ତୁ ସେଠି ସମସ୍ତେ ପ୍ରାର୍ଥନାକୁ ଆସିବେ ବୋଲି କଡ଼ା ନିୟମ ଥିଲା । କେହି କୌଣସି ଦିନ ପ୍ରାର୍ଥନାକୁ ଆସି ନ ପାରିଲେ ପରେ ଗୁରୁଜୀଙ୍କଠାରୁ ତାକୁ ଗାଳି ଖାଇବାକୁ ପଡ଼ୁଥିଲା । ତେଣୁ ଡରିହରି ଗାଳି ଭୟରେ ଆମେ ପ୍ରାର୍ଥନାକୁ ଆସୁଥିଲୁ । ଏଠାରେ ଆରବର୍ଷ ପରି କୌଣସି ନିୟମ ନାହିଁ । ଦିନେ ଅଧିକ ଶୋଇରହି ପ୍ରାର୍ଥନାକୁ ନ ଆସିଲେ ଗୁରୁଜୀ ଆମକୁ କିଛି କହନ୍ତି ନାହାନ୍ତି । ଆପଣା ଖୁସିରେ ଆମେ ପ୍ରାର୍ଥନାକୁ ଆସୁଛୁ । ସେଥିଲାଗି ଦିନେ କୌଣସି ବ୍ୟତିକ୍ରମ ଘଟି ପ୍ରାର୍ଥନାରେ ଯୋଗ ଦେଇ ନ ପାରିଲେ ଭାରି ଖରାପ ଲାଗୁଛି । କେହି କିଛି ନକହିଲେ ମଧ୍ୟ ମନେ ମନେ ଭାରି ଲାଜ ଲାଗୁଛି ।" ଅତି ସରଳ ନିର୍ମଳ ଭାବରେ ଆପଣା ମନର କଥା ଲେଖିଥିବାରୁ ମୁଁ ଆମର ଭାଇଙ୍କୁ ଧନ୍ୟବାଦ ଦେଉଛି ।

ପ୍ରାର୍ଥନା ବିଷୟରେ ଆମେ ଅନେକ ଶୁଣିପାରିଛେଁ, ଆମେ ଲେଖାମାନ ବି ଲେଖିପାରିଛେ । ପ୍ରାର୍ଥନା ଯେ ପ୍ରଧାନତଃ ଆପଣାର ଆଗ୍ରହ-ପ୍ରସୂତ, ଏକଥା ଆମେ ସମସ୍ତେ ବୁଝିପାରିଛେ । ପ୍ରାର୍ଥନା ବିଷୟରେ ଆମେ କୌଣସି ଜବରଦସ୍ତି ରଖିବା ନାହିଁ । ଜବରଦସ୍ତି ରଖିବା ଅର୍ଥ ମଣିଷର ଶରୀରଟାକୁ ଆଣି ପ୍ରାର୍ଥନାର ଧାଡ଼ିରେ ବସାଇବା । କେବଳ ନିଜର ଆଗ୍ରହ ଥିଲେ ହିଁ ଜଣେ ପରିପୂର୍ଣ୍ଣ ଭାବରେ ପ୍ରାର୍ଥନାରେ ଯୋଗ ଦେଇପାରିବ । ଭଗବାନଙ୍କ ପାଖରେ ଶୁଦ୍ଧ ଚିତ୍ତରେ ଯାଇ ଥରେ ବସିଆସିବା ଓ ବାଧ୍ୟ ହୋଇ କାରଖାନାକୁ ଯିବା ଭିତରେ ଅନେକ ଫରକ ରହିଛି । ଭଗବାନଙ୍କର କାରଖାନାରେ ଆମେ ସମସ୍ତେ ମାଲିକ । ସକାଳ ସରସ ସୁଶାନ୍ତ ପବନ, ଦିଗଫୁଟିଲା ଆଲୁଅ, କେତେ ମହିମାକୁ ଗଦାକରି ରଖିଥିବା ଏଇ ପର୍ବତ—ଏସବୁ ଅମର ସମ୍ପଦ । ଯୋଉ ଦିନ ଆମେ ସେସବୁକୁ ଆପଣାର କରିବା ଲାଗି ଯୋଗ୍ୟତା ହାସଲ କରିପାରିବା, ଯୋଉ ଦିନ ଏଇ ବିରାଟ ଉତ୍ତରାଧିକାର ଲାଗି ଆମର ହୃଦୟ ପ୍ରସ୍ତୁତ ହୋଇପାରିବ, ସେହି ଦିନ ଆମର ସବୁ ଦୁଆର ଖୋଲିଯିବ, ସୃଷ୍ଟିର ସବୁ ଗନ୍ତାଘରର ସବୁ ସୌନ୍ଦର୍ଯ୍ୟ ସେଦିନ ଆମର ହୋଇଯିବ ।

ପ୍ରାର୍ଥନା ଘଣ୍ଟା ହୋଇଗଲାଣି; ତଥାପି ମୁଁ ମୋ ବିଛଣାରେ ଶୋଇ-ରହିଛି । ମୋତେ ହୋ'ଧୋ ଉଠାଇବା ଆଦୌ ଉଚିତ ନୁହେଁ । କେବଳ ମୋର ଆଗ୍ରହ ନେଇ ମୁଁ ପ୍ରାର୍ଥନାକୁ ଯିବି । ମୋର ଇଚ୍ଛାହେଲେ ମୁଁ ଉଚିତ ବେଳେ ପ୍ରାର୍ଥନାରେ ଯୋଗଦେବାକୁ ହାଜିର ହେବି । ଆଜି ମୋତେ ମୋର ଇଚ୍ଛାରେ ଛାଡ଼ି ଦିଆଯାଉ । ଆଜି ମୁଁ ପ୍ରାର୍ଥନାରେ ଯୋଗଦେବାର ସୁଯୋଗ ହରାଇଲି । ସେଥିଲାଗି କାହାର ଏତେ ବେଶୀ ଭାବିବା ଦରକାର ନାହିଁ । ମୋ ଭିତରେ ଆଜି ଅନ୍ଧାର ପୂରିରହିଛି । ମୋର ଇଚ୍ଛା ଆଉ ଆଗ୍ରହକୁ ବୁହାଇ ଦେବାକୁ ମୁଁ ଏପର୍ଯ୍ୟନ୍ତ କୌଣସି ନିର୍ଭରଯୋଗ୍ୟ ରାସ୍ତା ପାଇପାରି ନାହିଁ । ତେଣୁ ବାସି ବିଛଣାରେ ପଡ଼ିରହି ମୁଁ ଖାଲି ଅଧେ ସତ ଓ ଅଧେ ମିଛର ସ୍ୱପ୍ନ ଦେଖୁଛି । ଏମିତି କିନ୍ତୁ ନିଶ୍ଚୟ ଗୋଟାଏ ଦିନ ଆସିବ, ଯୋଉଦିନ ମୁଁ ଆପଣା ମନକୁ ଉଠି ବସିବି । ସମସ୍ତଙ୍କ ସହିତ "ଏକାଠି ହୋଇ" ଭଗବାନଙ୍କ ପାଖକୁ ଯାଇପାରିବି । ମୋର ବିବେକ ଦିନେ ମୋତେ ଠିକ୍ ବାଟ ଦେଖାଇ

ନେଇଯିବ । ସେଦିନ ମୋର ଦୁଆର ଖୋଲିଯିବ । ସେଦିନ ସକାଳର ଆକାଶ ଅରଣ୍ୟ ଓ ଆଲୋକ ମୋତେ ଆପଣାର ମନେହେବ । ଆଜି ମୁଁ ଶୋଇ ରହିବାକୁ ଯେମିତି ଭଲ ପାଉଛି, ସେଦିନ ପ୍ରାର୍ଥନା କରିବାକୁ ମଧ୍ୟ ସେମିତି ଭଲ ପାଇବ ।

୧୯ । ୯ । ୪୫

ସେଦିନ କଥା ପଡ଼ିଥିବା ବେଳେ ଜଣେ ଭାଇ କହିଲେ—ଚଉଭାଇଙ୍କର ସବୁ ଭଲ, ଖାଲି ରାଗଟାକୁ ଛାଡ଼ିଦେଲେ । ଆଉ ଦିନେ ଆଉ ଜଣେ ଭାଇ ବଡ଼ ଆହତ ହୋଇପଡ଼ିଲା ପରି କହୁଥିଲେ—ଚଉଭାଇଙ୍କର ରାଗ ଦେଖି ବେଳେ ବେଳେ ଏଠୁଁ ଛାଡ଼ି ପଳାଇବାକୁ ମନ ହେଉଛି । ହଁ, ରାଗ ମାତ୍ରକେ ସେହିପରି । ରାଗ କାହାରିକୁ ରହିବାକୁ ଦିଏ ନାହିଁ । କାହାରି ଲାଗି ହୃଦୟରେ ଏତେ ଟିକିଏ ସ୍ଥାନ ରଖିପାରେ ନାହିଁ । ଯେତେ ଆଡ଼େ ରାଗ ଯାଏ, ସେ ସେତେ ଆଡ଼ୁ ଜାଳି ପୋଡ଼ି ଦିଏ, ସମସ୍ତଙ୍କୁ ଅସ୍ତବ୍ୟସ୍ତ କରିପକାଏ ।

କିନ୍ତୁ ଯୋଉ ମଣିଷ ରାଗେ, ସେ ଅନ୍ୟକୁ ଜାଳି ପୋଡ଼ି ମାରିବା ସଙ୍ଗେ ସଙ୍ଗେ ଆପେ ମଧ୍ୟ ଜଳି ପୋଡ଼ି ହୋଇ ମରେ । ଅଷ୍ଟ୍ରେଲିଆର ଆଦିବାସୀ-ମାନେ ବୁମେରାଙ୍ଗ୍ ବୋଲି ଗୋଟାଏ ଅସ୍ତ୍ର ବ୍ୟବହାର କରନ୍ତି । ତାହା ଏପରି ଭାବରେ ପ୍ରୟୋଗ କରାଯାଏ ଯେ, ଶିକାରକୁ ଆଘାତ କରି ପୁଣି ତାହା ଶିକାରୀ ପାଖକୁ ଲେଉଟିଆସେ । ସ୍ୱାର୍ଥ କ୍ରୋଧ ଓ ସଂଶୟ ପ୍ରଭୃତି ଯେଉଁସବୁ ଅସତ୍ ପ୍ରବୃତ୍ତି ମଣିଷ ଭିତରେ ଥାଏ, ସେସବୁ ଠିକ୍ ଏଇ ବୁମେରାଙ୍ଗ୍ ପରି କାମ କରେ । ଆପଣାର ସ୍ୱାର୍ଥବୁଦ୍ଧିଦ୍ୱାରା ମଣିଷ ସଂସାରରେ ସମସ୍ତଙ୍କୁ ସଙ୍କୁଚିତ କରି ନିଜେ ପ୍ରସାରିତ ହେବାକୁ ପାଞ୍ଚେ; କିନ୍ତୁ ପରିଣାମରେ ସମସ୍ତଙ୍କଠାରୁ ବିଚ୍ଛିନ୍ନ ହୋଇ ସେ ଆପେ ସଂକୁଚିତ ହୋଇ ପଡ଼ିରହେ । ନିଜେ କ୍ରୋଧ ଦେଖାଇ ସେ ସଂସାରରେ ସମସ୍ତଙ୍କୁ ଦଗ୍ଧ କରିବାକୁ ଯାଏ । କିନ୍ତୁ ଏଣେ ଆପଣାର ହୃଦୟ ମୂଳରେ ସେ ଆପଣାକୁ ଦଗ୍ଧ କରି ମାରେ । ସଂସାରଟାକୁ ସନ୍ଦେହ କରି, ଅବିଶ୍ୱାସ କରି ସେ ଆପଣାର ଏକଛତ୍ର ସଂସାର ଗଢ଼ିବାରେ ଦମ୍ଭ

ଦେଖାଏ । କିନ୍ତୁ ପରିଣାମରେ ସେ ଆପଣାକୁ ମଧ୍ୟ ବିଶ୍ୱାସ କରିପାରେ ନାହିଁ ।

ସେବା ଗ୍ରାମରେ ଯେଉଁ କୁଡ଼ିଆଟିରେ ଗାନ୍ଧିଜୀ ରହୁଥିଲେ, ସେଠି ସେ ଇଂରେଜୀ ଭାଷାରେ ଗୋଟିଏ ନୀତିବାକ୍ୟ ତାଙ୍କ କାନ୍ଥରେ ଝୁଲାଇ ରଖିଥିଲେ । ଏପର୍ଯ୍ୟନ୍ତ ମଧ୍ୟ ତାହା ସେଇଠି ସେହିପରି ଝୁଲୁଛି । ନୀତିବାକ୍ୟଟିର ଅର୍ଥ ହେଉଛି—ଯଦି ତୁମେ ଯାହା କରୁଛ ଭୁଲ କରୁଛ, ତେବେ ରାଗିବାର କୌଣସି ଅବକାଶ ତୁମର ନାହିଁ ଏବଂ ଯଦି ତୁମେ ଯାହା କରୁଛ ଠିକ୍ କରୁଛ ତେବେ ତୁମେ ରାଗକୁ ବେଶ୍ ଆପଣା ଆୟତ୍ତରେ ରଖିପାରିବ । ରାଗିବା ଉଭୟ ପକ୍ଷରେ ହିଁ କେବଳ ଅନିଷ୍ଟ ଘଟାଇବ । ବଡ଼ ସାନ, ଶିକ୍ଷକ ଓ ଛାତ୍ର ଉଭୟ ଲାଗି ଏହା ଅସୁନ୍ଦର । ଯୋଉଠି ରାଗକୁ ପ୍ରଶ୍ରୟ ଦିଆଯାଏ, ସେଠି ତାହା ଜୀବନର ସବୁ ସୌନ୍ଦର୍ଯ୍ୟକୁ ଗ୍ରାସ କରିପକାଏ ।

ମୋର ରାଗ କାହାରିକୁ ବିଚଳିତ କରିବା ଉଚିତ ନୁହେଁ । ରାଗ ତ ଗୋଟାଏ ରୋଗ । କେମା, କୁଜା ବା ଅନ୍ୟ କୌଣସି ରୋଗରେ ରୁଗ୍‌ଣ ବ୍ୟକ୍ତିକୁ ଦେଖିଲେ ଆମେ ବିଚଳିତ ହେବା କାହିଁକି ? ତାକୁ ତ ଆମର ସହାନୁଭୂତି ଦେଖାଇବା କଥା ! ପରିଶ ଜଣ ଯେତିକି ଶାନ୍ତ ହୋଇପାରିବେ, ଆପଣା ସ୍ୱଭାବରେ ଯେତିକି ସହିଷ୍ଣୁତା ଅବଲମ୍ବନ କରିପାରିବେ, ତାଙ୍କର ଭିତରେ ରହିଥିବା ଆଉ ଜଣଙ୍କର ରାଗ ସେତିକି ମିଳେଇ ମିଳେଇ ଯିବ । ଆଜି ଏ ବିଷୟରେ ମୁଁ ଗୋଟିଏ କଥା କହିଦେବି । ତୁମମାନଙ୍କ ଭିତରୁ କାହାରି ଉପରେ ମୁଁ ରାଗେ ନାହିଁ । କାହାରି ସହିତ ମୋର କୌଣସି ଶତ୍ରୁତା ନାହିଁ । କାହାରି ପ୍ରତି ମୋର କୌଣସି ବିଦ୍ୱେଷ ନାହିଁ । ମୁଁ ବିଶ୍ୱାସ କରେ, ଭକ୍ତି ଓ ଜିଜ୍ଞାସୁର ହୃଦୟ ନେଇ ଆମେ ଏ ବିଦ୍ୟାମନ୍ଦିରକୁ ଆସିଛେ । ମୁଁ ଯେମିତି ଆସିଛି, ତୁମେମାନେ ସମସ୍ତେ ମଧ୍ୟ ସେହିପରି ଆସିଛ । ଏହି ପ୍ରଧାନ କଥାଟା ହିଁ ଏଠିକାର ଶିକ୍ଷକ ଆଉ ଛାତ୍ର ସମସ୍ତଙ୍କୁ ଏକ ଶିବିରର ଛତ୍ରତଳେ ଆଣି ଏକତ୍ର କରାଇଛି । ଏଠି କେହି କାହାରି ଉପରେ ବିଦ୍ୱେଷ କଲେ ବା ମୋହ ରଖିଲେ ଆମର କାହାରି ମଙ୍ଗଳ ହେବ ନାହିଁ । ଯେତେବେଳେ ମୁଁ ବିରକ୍ତି ପ୍ରକାଶ କରେ, ତୁମ୍ଭମାନଙ୍କର କୌଣସି ଖରାପ କାମ ଉପରେ,

କୌଣସି ବିଶୃଙ୍ଖଳା ଉପରେ ହିଁ ବିରକ୍ତି ପ୍ରକାଶ କରେ । କୌଣସିଠାରେ କୌଣସି ଅସଦ୍‌ବୁଦ୍ଧିର ସୂଚନା ପାଇଲେ ତାହାରି ନିରାକରଣ ଲାଗି ଅଧୈର୍ଯ୍ୟ ହୋଇ ହୁଏତ ମୁଁ ବେଳେ ବେଳେ ରାଗିଲା ପରି ହୁଏ । ମୁଁ ଭଲକରି ଜାଣେ, ସେତକ ମଧ୍ୟ କରିବାର କୌଣସି ଅଧିକାର ମୋର ନାହିଁ । ଆମେ ପରସ୍ପରର ବିକାଶମୁଖୀ ଓ ନିର୍ମାଣଧର୍ମୀ ଜୀବନରେ କୌଣସି ପ୍ରକାର ହସ୍ତକ୍ଷେପ କରିବା ନାହିଁ, ଏହା ହିଁ ଆମର ଧ୍ୟେୟ ହୋଇ ରହିବା ଉଚିତ । ଆମେ ପରସ୍ପରର ଦୀପକୁ ତେଜଦେବା; ପରସ୍ପରର ଆଲୋକ ଆଉ ଆନନ୍ଦ ବଢ଼ାଇବାକୁ ଚେଷ୍ଟା କରିବା । ପରସ୍ପରର ଆଲୋକ ଆଉ ଆନନ୍ଦର ମୂଳରେ ବାଧା ହୋଇ ଠିଆହେବାର ବିନାଶ ବୁଦ୍ଧି ଯେପରି ଆମର କେଉଁଦିନ ନ ହୁଏ । ଏଠିକାର ବ୍ରତଧାରୀ ଶିକ୍ଷକ ଓ ବ୍ରତଧାରୀ ଛାତ୍ର ଉଭୟଙ୍କର ବିଗ୍ରହ ଓ ସ୍ୱଭାବରେ ଏହିପରି ଏକ ଦୃଢ଼ତା ଆସୁ । ଏଇଥିଲାଗି ଆମେ ସମସ୍ତେ ପ୍ରାର୍ଥନା କରିବା ।

୨୪ । ୯ । ୫୫

ନିତି ଏମିତି ପଞ୍ଚାଏ ମଣିଷ ଦେଉଥିବେ, ଆଉ ପଞ୍ଚାଏ କାଙ୍ଗାଳ ତଳୁ ହାତ ପତାଇ ନେଉଥିବେ । ଏଇ କଥାଟା ଯେପରି ଆମର ସଂସ୍କୃତିଗତ ହୋଇଗଲାଣି । ଉପରେ ଥୋକେ ଲୋକ ଅନୁଗ୍ରହ କରି ଭରି ଆତ୍ମପ୍ରସାଦ ପାଉଛନ୍ତି; ଏଣେ ତଳେ ଆହୁରି ଅନେକ ଅନୁଗ୍ରହ ପାଇ ତୃପ୍ତ ହୋଇ ରହୁଛନ୍ତି । ଗୋଟାଏ ପାଖରେ ଉଗ୍ରତା, ଅନୁଗ୍ରହ କରିବାର ଗୋଟାଏ ଅତି ଅସ୍ୱାଭାବିକ ଉଦାରତା; ଏଣେ ଅପର ପାଖରେ ଶିଥିଳତା—ଅକିଞ୍ଚନତା ; ଏ ସମାଜ ଓ ସାମାଜିକ ଗଠନକୁ ମାନିନେଇ ଅପରର ଦୟାରେ ଯେତିକି ମିଳିଲା, ସେଇଥିରେ ଆପଣାକୁ କୃତାର୍ଥ ମନେ କରିବାର ଅକ୍ଷମତା ।

ଆଜି ସନ୍ଧ୍ୟାବେଳେ ଗୁଡ଼ଉଲ ବଣ୍ଟାହେବା ବେଳେ ମୁଁ ଏହିକଥା ଭାବୁଥିଲି । କେତେ ଶହ ମଣିଷ କେତେ କେତେ ଗାଁରୁ ଆସି ଜମାହୋଇ ରହିଥିଲେ । ପିଲା, ବୁଢ଼ା, ମାଇପେ ସମସ୍ତେ ଭିକ୍ଷା ମୁଠି ପାଇବାର ଲୋଭରେ

ଧାଡ଼ିବାନ୍ଧି ବସିଥିଲେ । ଜଣକ ଦେହରେ ବି ସଫାଲୁଗା ନ ଥିଲା । ଜଣଙ୍କ ଦେହରେ ବି କମିଜ ଖଣ୍ଡେ ନ ଥିଲା । ଚିରାଲୁଗା ଓ ଦଉଡ଼ିଆଁ ଗାମୁଛାରେ ମଣିଷମାଳର ସେ ଦାରୁଣ ଦୃଶ୍ୟ କାଲି ଆମର ଦେଶର ବାସ୍ତବ ପରିଚୟ ଦେଇ ଯାଉଥିଲା । ସରକାରୀ କେନ୍ଦ୍ରରେ ବସ୍ତା ବସ୍ତା ଗୁଡ଼ଲ ମୁଢ଼ି ଥୁଆ ହୋଇଛି । ଶ୍ରେଷ୍ଠ ବଡ଼ ହାକିମ ସମସ୍ତେ ମିଶି ସେମାନଙ୍କୁ ଦୟା କରିବାକୁ ବାହାରିଲେ । ଆଜି ଯୋଉ ଉଦାର ବାବୁ ଲୋକଙ୍କର ଛୁଞ୍ଚା ଅଞ୍ଚଳିରେ ମାଣେ ମାଣେ ଗୁଡ଼ଲ ଫୋପାଡ଼ିଦେଇ ଯାଉଥିଲେ, ମୁଁ ତାଙ୍କର କାଇଦା ଲକ୍ଷ୍ୟ କରୁଥିଲି । ଏତେ ମଣିଷଙ୍କର ପିନ୍ଧି ଲୁଚୁ ନ ଥିବାବେଳେ ସେ କାମିଜ୍ ଲୁଙ୍ଗି ମଡ଼ାଇ ଆସିଛନ୍ତି । କାଙ୍ଗାଳ ମେଳାର ଧୂଳିକୁ ତାଙ୍କ ଗୋଡ଼ର ଜୋତା ମଚ୍ ମଚ୍ ମାଡ଼ି ଚାଲିଯାଉଛି । ଡାହାଣ ହାତରେ ଗୁଡ଼ାଖୁ ଘଷି ଘଷି ବାଆଁ ହାତରେ ସେ ମାଣ ମାଣ ଗୁଡ଼ଲ ଲୋକଙ୍କର ଅଞ୍ଜଳିରେ ଢାଳି ଚାଲିଛନ୍ତି । ଉଦାରତା କହିଲେ ଆମ ଦେଶର ସଂସ୍କୃତିରେ ଯାହା ବୁଝାଏ, ଏଥିରୁ ତାର ଏକ ଚମତ୍କାର ଦୃଷ୍ଟାନ୍ତ ମିଳିଲା । ଆଜି ଏରସମା ଥାନାର ଗୁର୍ଖୀକୁଲ ବାଡ଼ିରେ ଉଜୁଡ଼ିଗଲେ ବୋଲି ଯେ ଏକଥା ହେଲା ତା' ନୁହେଁ, ଆମ ଦେଶରେ ଚିରଦିନ ଏକଥା ଲାଗିଅଛି । ଉପରର ଗୋଟିଏ ମଣିଷ ଏମିତି ଉଦାରତା ଚିରଦିନ ଦେଖାଇଆସିଛି । ତଳେ ଥିବା ଅକଞ୍ଚନ ଅଜ୍ଞଜନ ଚିରଦିନ ଏଇ ଉଦାରତାଟିକକ ପାଇବା ସକାଶେ ଅତି ନିକୃଷ୍ଟ ଭାବରେ ହାତ ପତାଇ ଆସିଛନ୍ତି । ଆଉ ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଉଛି ତଳେ ଉପରେ ରହିଥିବା ଆମେ ସମସ୍ତେ ଏହାକୁ ମାନିନେଇ ସାରିଲୁଣି । ଏ ବ୍ୟବସ୍ଥା ଆମକୁ ଆଉ ଖରାପ ଲାଗୁନାହିଁ । ଏହି ବ୍ୟବସ୍ଥାକୁ କାୟମ ରଖିବା ଲାଗି ବାପ ମାଆ ପିଲାକୁ ତାଲିମ କରୁଛନ୍ତି । ସେହି ବ୍ୟବସ୍ଥାକୁ କାୟମ ରଖିବାକୁ ଆଜି ସ୍କୁଲ କଲେଜରେ ପାଠପଢ଼ା ହେଉଛି । ଧର୍ମକଥା କୁଅଡ଼େ ଉଡ଼ିଗଲେଣି । ନୀତି ଆଉ ନୈତିକତା କୋଉ ଶାସ୍ତ୍ର ଭିତରେ ବୁଡ଼ିରହିଛି । ମଣିଷପଣିଆ କୋଉ ଦିନରୁ ବାଟ ହୁଡ଼ିଗଲାଣି । ଏଥିରେ ଆମେ ସମସ୍ତେ ଅଳପ ବହୁତ ସାହାଯ୍ୟ କରୁଛେ ।

ଏଠିକାର କାଣ୍ଡ କାରଖାନା ଦେଖି ମନେ ହେଉଛି, ଯୋଉମାନେ ଭୋକବିକଳରେ ମୁଢ଼ି ଗଣ୍ଡାଏ କି ଗୁଡ଼ଲ ଟୋପାଏ ମାଗିବାକୁ ଆସିଛନ୍ତି,

ଆଜିକାର ଦୁଃଖ ଯେପରି କେବଳ ତାଙ୍କର । ଯିଏ ସଫାଲୁଗା, ପିନ୍ଧୁଛି, ଚୀନା ବାସନରେ ମୋଣ୍ଡା ଖାଇବା ଖାଉଛି, ଗାଡ଼ିଘୋଡ଼ାରେ ଯା' ଆସ କରୁଛି, ସେ ଯେପରି ଏ ଦୁଃଖରେ ଭାଗୀ ହେବାକୁ ପ୍ରସ୍ତୁତ ନୁହେଁ । କୌଣସି ସଭ୍ୟ ଦେଶରେ ଏପରି ହୁଅନ୍ତା ନାହିଁ । କୌଣସି ସଭ୍ୟ ମଣିଷ ଏପରି କରନ୍ତା ନାହିଁ । କାଲି ଯୋଉମାନେ ଏଠି ହାତର ଝାଳ ଦେଇ ମାଟି ଚଷି ସୁନା ଧାନ ଫଳାଉ ଥିଲେ, ଆଜି ପ୍ରକୃତି ସେହିମାନଙ୍କ ଉପରେ ଦାଉ ସାଧୁଛି । ଯେ ଆପଣା ହାତର ଶ୍ରମ ଛଡ଼ା ଆଉ କାହାରି ଉପରେ ନିର୍ଭର କରି ନ ଥିଲେ, ପ୍ରକୃତିର ପ୍ରକୋପ ଆଜି ସେହିମାନଙ୍କୁ କାଙ୍ଗାଳ କରିଦେଇଛି । ବାଧ୍ୟହୋଇ ସେମାନେ ଭିକମାଗି ଆସିଛନ୍ତି । ଅତି ନମ୍ରତାର ସହିତ ଆମକୁ ଏକଥା ସ୍ୱୀକାର କରିବାକୁ ହେବ । ତେଣୁ ଅତି ତାଚ୍ଛିଲ୍ୟ ଭାବରେ ଆମ ଆସନରେ ଆମେ ଠିକ୍ ରହି ଏ ଦୁର୍ଦ୍ଦିନ-କାଙ୍ଗାଳଙ୍କୁ ଆମର ଦୟା ଦେଖାଇବାକୁ ଆସିଲେ ଆମେ ଅତି ଅମଣିଷପଣିଆ ଦେଖାଇବା । ଏ ଦୁଃଖ ସେମାନଙ୍କର ଯିମିତି ଆମର ମଧ୍ୟ ସିମିତି । ଏ ଦେଶରେ ଯେତେ ମଣିଷ ଅଛନ୍ତି, ଜାତି ଅଜାତି, ପଣ୍ଡିତ ମୂର୍ଖ, ଆଉ ସଫା ମଇଳିଆ ନିର୍ବିଶେଷରେ ଆମେ ସମସ୍ତେ ଆଜିକାର ଦୁଃଖକୁ ଗଭୀର ଭାବରେ ଅନୁଭବ କରି ଶିଖିବା, ଆମେ ସମସ୍ତେ ଆଜି ସମଦୁଃଖୀ ହେବା । ତା ନ ହେଲେ ଏ ଦେଶକୁ ଓ ଏ ସଂସ୍କୃତିକୁ କୌଣସି ନିସ୍ତାର ନାହିଁ । ଏ ଦୁଃଖରେ ଖାଲି ଦାନର ବା ବଡ଼ଲୋକଙ୍କର ପରୀକ୍ଷା ହେବ ନାହିଁ, ଏ ଦୁଃଖରେ ଆଜି ହୃଦୟର ପରୀକ୍ଷା ହେବ । ଆଜି ଭିକ୍ଷାମୁଠିର ଗଣତି ହେବ ନାହିଁ, ହୃଦୟର ଗଣତି ହେବ ।

୨୬ । ୯ । ୪୪

ଆମର କେଡ଼େ ସୌଭାଗ୍ୟ, ଆମେ ଏ ଦେଶରେ ସମସ୍ତେ ଧନୀ ! ଯିଏ ଆପଣାକୁ ଅନ୍ୟମାନଙ୍କ ତୁଳନାରେ ଦରିଦ୍ର ବୋଲି କହୁଛି, ତାଠାରୁ ମଧ୍ୟ ଅଧିକ ଦରିଦ୍ର ଏ ଦେଶରେ ଅଛନ୍ତି । ଆଜି ରାସ୍ତା ଘାଟରେ ଯେଉଁମାନେ ଭିକ ମାଗି ବୁଲୁଛନ୍ତି, ହୋଟେଲର ଅଇଁଠା କୁଣ୍ଡରୁ ଯେଉଁମାନେ ଭାତ ଝୁଣ୍ଟି ଖାଉଛନ୍ତି, ଆମେ ପୁରୀ ମିଠେଇ ଖାଉଥିଲାବେଳେ ଯୋଉଁ ଅରକ୍ଷିତମାନେ

ଅଧଲାଏ ପଇସାଏ ପାଇଁ ଆମକୁ ହାତ ପତାଇ ରହୁଛନ୍ତି, ଆମେ ତ ସେହି-ମାନଙ୍କ ତୁଳନାରେ ଯଥେଷ୍ଟ ଧନୀ । ସେମାନଙ୍କ ତୁଳନାରେ ତ ଭଗବାନ ଆମକୁ ଯଥେଷ୍ଟ ଅଧିକ ଦେଇଛନ୍ତି । ଆମେ ତ ନିତ ମୁଠାଏ ଖାଇବାକୁ ପାଉଛୁ । ଲଜ ଲୁଗ୍ରଇବାକୁ ତ ଆମର ଖଣ୍ଡେ ଦି'ଖଣ୍ଡ ମହିଜୁଦ୍ର ରହିଚି । ଆମର ସଂସାରରେ ଆଚ୍ଛାଦ୍ୟ ଖଣ୍ଡେ ଅଛି । ଦି'ଗାର ପାଠ ପଢ଼ିବାର ସୁଯୋଗ ଆମେ ପାଉଛୁ । ଏ କାଙ୍ଗାଳ ନିରାଶ୍ରୟ ଦେଶରେ ଭଗବାନ ଆମ ଲାଗି ଏତକ ଦେଇଛନ୍ତି । ଏହି ସୌଭାଗ୍ୟ ସକାଶେ ଭଗବାନଙ୍କୁ ଆମର ଧନ୍ୟବାଦ ଦେବା ଉଚିତ ।

କିନ୍ତୁ ଆମ ଦେଶରେ ଏପରି ଅନେକ ଦୁର୍ଭାଗା ଲୋକ ଅଛନ୍ତି, ଯେଉଁମାନେ ଆପଣାକୁ କେବଳ ଦରିଦ୍ର ବୋଲି ଭାବନ୍ତି । ନାନାପ୍ରକାର କଳ୍ପିତ ଦାରିଦ୍ର୍ୟରେ ସେମାନେ ଆପଣାକୁ ଅତି ଦରିଦ୍ର କରି ରଖିଥାନ୍ତି । କାହାର ପୁଅ ହାଇସ୍କୁଲରେ ପାଠ ପଢ଼ିବାକୁ ପଇସା ନାହିଁ, ସେ ଆପଣାକୁ ଦରିଦ୍ର କହୁଛି । କାହାର ହାତରେ ଘଣ୍ଟା ନାହିଁ, ସେ ଆପଣାକୁ ଦରିଦ୍ର କହୁଛି । କାହାର ମଟରଗାଡ଼ି ଖଣ୍ଡେ ନାହିଁ, ସେ ବିଚରା ମନେ ମନେ ଅତି ଦରିଦ୍ର ହୋଇ ବସି ଆପଣାର ଭାଗ୍ୟକୁ ନିନ୍ଦୁଛି । ଏ ତ ଗଲା ବଡ଼ ବଡ଼ ଦରିଦ୍ରଙ୍କ କଥା । ଶ୍ରେଷ୍ଠ ଦରିଦ୍ର ତ ଆହୁରି ଅନେକ ଅଛନ୍ତି । କାହାର ଧୋତି ଖଣ୍ଡେ କି କାମିଜ ଖଣ୍ଡେ ଚିରିଗଲା, ସେ ଆପଣାକୁ ଦରିଦ୍ର ବୋଲି କହୁଛି । କିଏ ଖାଲି ଡାଲି ଲଗାଇ ତୁଚ୍ଛା ଭାତ ଖାଉଛି, ସେ ଆପଣାକୁ ଦରିଦ୍ର ବୋଲି କହୁଛି । ମୋର ଉପର ସ୍ତରରେ ଯେଉଁମାନେ ଅଛନ୍ତି, ସେମାନଙ୍କ ଭାଗ୍ୟ ସହିତ ଆପଣା ଭାଗ୍ୟର ଈର୍ଷାନ୍ୱିତ ତୁଳନା କରୁଥିବା ପର୍ଯ୍ୟନ୍ତ ମୁଁ ଆପଣାକୁ ନିରନ୍ତର ଦରିଦ୍ର ବୋଲି କହୁଥିବି । ଉପରକୁ ଅଧିକ ଧନୀକୁ ଦେଖି ମୁଁ ମୋର ଆବଶ୍ୟକତାକୁ ବଢ଼ାଇ ଚାଲିଥିବା ପର୍ଯ୍ୟନ୍ତ ମୋର ଅଭାବ ଓ ଦାରିଦ୍ର୍ୟ କେବେହେଲେ ଘୁଞ୍ଚିପାରିବ ନାହିଁ । ଏହି ଦୃଷ୍ଟିରୁ ଦେଖିଲେ ଧନୀ ଦେଶ ଆମେରିକାରେ ମଧ୍ୟ ଦରିଦ୍ର ଅଛନ୍ତି । ସହସ୍ରପତି ଲକ୍ଷପତି ତୁଳନାରେ ନିଜକୁ ଦରିଦ୍ର ବୋଲି କହୁଛି । ପୁଣି ଲକ୍ଷପତି କୋଟିପତି ତୁଳନାରେ ନିଜକୁ ଦରିଦ୍ର ବୋଲି କହୁଛି । ଆପଣା ଅଭାବର ମୋହ ଜାଲ ଭିତରେ

ଆମେ ସମସ୍ତେ ଦରିଦ୍ର ହୋଇପଡ଼ିଛୁ । ଏଇଥିଲାଗି ଆମେ ଦାରିଦ୍ର୍ୟ ଅପସାରଣର ମାରଣ-ମନ୍ତ୍ର ନେଇ ସଂସାରରେ ଉଣ୍ଟିକିଆ ପ୍ରତିଯୋଗିତା ଚଳାଇଛୁ । ଏହି ପ୍ରତିଯୋଗିତାର ସୁଅରେ ଭାସି ସଂସାର ଆଜି ଅନେକ ଦୂର ଭସିକି ଗଲାଣି ।

ଏଇଟା ହେଲା ଗୋଟାଏ ଦୁର୍ବଳ ଜୀବନ-ଦୃଷ୍ଟି । ଏ ଆମର ମଣିଷ-ପଣିଆକୁ ମାରିଦିଏ, ଆମ ଜୀବନର ଆନନ୍ଦକୁ ଜାଳି ପୋଡ଼ିଦିଏ । ସଂସାରରେ ସବୁରି କଲ୍ୟାଣ ଲାଗି ନାନା ସେବାରେ ଆପଣାକୁ ସମର୍ପଣ କରିଦେବାକୁ ଆମେ ଆଦୌ ସୁଯୋଗ ପାଇପାରୁ ନାହିଁ । ମଣିଷଠାରୁ ମଣିଷର ଖିଅ ଛିଡ଼ିଯାଏ, ହୃଦୟ ଖଣ୍ଡ ଖଣ୍ଡ ହୋଇଯାଏ । ଆମେ ଆମର ଜୀବନଦୃଷ୍ଟିକୁ ସବଳ କରିବା, ସେବାପରାୟଣ କରିବା ।

ସଂସାରରେ ମୋଠାରୁ ହୀନତର ଓ ଅକିଞ୍ଚନତର ଆହୁରି ଅନେକ ଅଛନ୍ତି । ସମାଜରେ ଯେତିକି ସୁଖ ସୁବିଧା ମୁଁ ପାଉଛି, ସେତିକିରୁ ମଧ୍ୟ ସମାଜର ହଜାର ହଜାର ଲୋକ ବଞ୍ଚିତ ହୋଇ ରହିଛନ୍ତି । ଏହିପରି ଅନୁଭବ କରିପାରିଲେ କୌଣସି ଦାରିଦ୍ର୍ୟର ଗ୍ଳାନି ଆମକୁ କଦାପି ସ୍ପର୍ଶ କରିପାରିବ ନାହିଁ । ମୋର ରହିବା ପାଇଁ ମୋଟେ ବଖରାଏ ଘର ଅଛି, ଆଉ ଜଣଙ୍କର ଦୁଇ ବଖରା ଅଛି । ତାକୁ ଈର୍ଷା କରି ମୁଁ ଆପଣାକୁ ଦରିଦ୍ର ବୋଲି ଭାବୁଛି । କିନ୍ତୁ ସଂସାରରେ କେତେ ସଡ଼ାପଚା ଅନ୍ଧାରୁଆ ଗୋଟିଏ ଗୋଟିଏ ବଖରାରେ ହୁଏତ ଦଶ ବାର ଜଣ ସଡ଼ିପଚି ମରୁଛନ୍ତି । ମୋ ଘରକୁ ଦୁଇ ବଖରା ନ କରି ଆଗ ସଡ଼ିପଚି ରହିଥିବା ପ୍ରତ୍ୟେକ ଲୋକ ପାଇଁ ବଖରାଏ କରି ଘର ଯୋଗାଇବାର ପ୍ରତ୍ୟେକ ରଚନାତ୍ମକ ଯୋଜନାରେ ମୋର ଭାଗନେବା ଉଚିତ । ଏପରି ଅନୁଭବ କରିପାରିଲେ ଆପଣାକୁ ଦରିଦ୍ର ବୋଲି କହିବାର କୌଣସି ଅବସର ଆମେ ପାଇପାରିବା ନାହିଁ । ସମାଜରେ ଯିଏ ସବୁଠାରୁ ଅଧମ, ସବୁଠାରୁ କ୍ଷତିଗ୍ରସ୍ତ, ଆଗେ ତାହାରି ଉନ୍ନତି ପାଇଁ ମୁଁ କାମ କରିବି । ମୋଠାରୁ ତଳେ ପଡ଼ିଥିବା ମଣିଷଙ୍କୁ ମୁଁ ଆଗ 'ମୋରି ସ୍ତରକୁ ଆଣିବାର ସଂକଳ୍ପ ନେବି । ଏହିପରି ଏକ ଜୀବନ-ଦୃଷ୍ଟି ଅର୍ଜନ କରିପାରିଲେ ଆମେ

ଆମର ଦାରିଦ୍ର୍ୟ ପାଶୋରି ପକାଇବା, ଆମର ଜୀବନରେ ନୂଆ ସମ୍ଭାବନାର ପରିଚୟ ଆମେ ପାଇବା, ଆମର ମୁଖମଣ୍ଡଳରେ ଦିବ୍ୟ ଜ୍ୟୋତି ଫୁଟିଉଠିବ, ଆମର ଦିନଚର୍ଯ୍ୟାରେ ନୂଆ ସରସତା ଭରିଯିବ ।

ଅଜି ଆମେ କେତେ ଭୋକିଲା ମଣିଷ ଦେଖିଲେ । ଏହି କେତେ ଦିନ ଅନବରତ ଅମେ କେତେ କେତେ ଭୋକିଲା ମଣିଷ ଦେଖିବା । କେତେ ଦାରିଦ୍ର୍ୟ ଓ କେତେ ଦୁଃଖୀ ଦେଖିବା । ଏହିସବୁ ଆମକୁ ଅଧିକ ସେବା ଲାଗି ପ୍ରବୃତ୍ତ କରାଉ । ସବୁ ଦାରିଦ୍ର୍ୟ-ଭାବନା ଭୁଲାଇ ଅମକୁ ସବଳ ସେବାପରାୟଣ ଜୀବନ ଦିଗରେ ଆହ୍ୱାନ କରି ନେଇଯାଉ ।

୨୯ । ୯ । ୫୫

ଦିନମାନ ଏଡ୍‌ମେ ଥାନା ହତାରେ କାଙ୍ଗାଳ ମଣିଷଙ୍କର ଭିଡ ଲାଗିଛି । ସକାଳ ପହରରୁ କୋଉ କୋଉ ଗାଁରୁ ଶହ ଶହ ମଣିଷ ଆସି ଜମା ହେଉଛନ୍ତି । ଦିନଯାକ ଏଇଠି ପଡୁଛନ୍ତି । ରାତିରେ କୋଉଠି କାହା ପିଣ୍ଡା କି ଗଛମୂଳ ଦେଖି ଶୋଇ ପଡୁଛନ୍ତି । ସେମାନେ ଉପାସରେ ଘରୁ ଆସୁଛନ୍ତି । ଏଠି ତ ତାଙ୍କୁ କେହି ଭାତ ଖାଇବାକୁ ଦେଉ ନାହାନ୍ତି । ମଝିରେ ମଝିରେ ଜୁସି ହେଲେ ହାକିମ ମୁଠି ବାଣ୍ଟୁଛନ୍ତି । ଖଟ୍‌ବେଳ ହେଉ ବା ସଞ୍ଜବେଳ ହେଉ, ଖରା ହେଉ କି ବରଷା ହେଉ, ମୁଠି ବଣ୍ଟାଯିବା କଥା । 'ହୋ' ହୋଇଯିବା ମାତ୍ରକେ ଭୋକିଲା ମଣିଷର ଧାଡି ଲାଗିଯାଉଛି । ବୁଢା, ଛୋକା ମଣିଷ ସମସ୍ତେ ସେଇ ଧାଡିରେ ସାମିଲ ହୋଇ ଯାଉଛନ୍ତି । ଯଦି ଦୁଇ ଧାଡିରେ ମଣିଷଗୁଡାକ ଶୃଙ୍ଖଳାର ସହିତ ବସିଯାଅନ୍ତେ, ତେବେ ବାଣ୍ଟିବା ସହଜ ହୁଅନ୍ତା, ସବୁ ମଣିଷ ସମାନ ଭାବରେ ପାଅନ୍ତେ । ବାଣ୍ଟିଲାବାଲାମାନେ ଏପରି କହୁଛନ୍ତି; କିନ୍ତୁ ଶୃଙ୍ଖଳା ରଖୁଛି କିଏ ? ଭୋକ ମଣିଷ ଜୀବନର ସବୁ ଶୃଙ୍ଖଳା ଭାଙ୍ଗି ଦେଉଛି । ସେଥିଲାଗି କାଲି ଯେଉଁ ମଣିଷ ସମାଜରେ ସମସ୍ତଙ୍କ ସହିତ ସ୍ନେହମମତା ଓ ସଦ୍ଭାବ ରଖି ଚଳୁଥିଲା, ସେ ଆଜି ଅତି ଅଳଜୁକ ଭାବରେ ଅଣ୍ଟି ଦେଖାଇ ଯୋଉଠି ସେଠି ବସିଯାଉଛି । ଗୋଟାଏ ଜାଗାରେ

ମୁଢ଼ି ପାଇ ତାକୁ କାଖରେ ଯାକ ‌‌‌ସେ ପୁଣି ଆଉ କୋଉ ଧାଡ଼ିରେ ଫିକ୍‌ବନ୍ଧ କାଢ଼ି ବସିବାକୁ ଧାଉଁଛି । ଖାଲି ଛୁଆ ପିଲା ତ ଏ କଥା କରୁ ନାହାନ୍ତି, ବଡ଼ ବଡ଼ ବୁଢ଼ାମାନେ ମଧ୍ୟ ଏହି ଦଳରେ ଅଛନ୍ତି । 'ସିଏ ଦୁଇ ଥର ମୁଢ଼ି ନେଇଗଲା, ତା କାଖତଳେ ମୁଢ଼ିପୁଡ଼ା ଜକା ହୋଇଛି,' ଏହିପରି ସମସ୍ତେ ସମସ୍ତଙ୍କୁ ଚୋର ଧରାଇବାର ହଟ୍ଟଗୋଳ ଲଗାଇ ଦେଉଛନ୍ତି । ଏପରି ହେଉଛି କିପରି ?

ଇସ୍‌ରାଏଲର ଗୋଟାଏ ସ୍କୁଲ କଥା ମନେ ପଡ଼ୁଛି । ବାପ, ମା ବା ଘର ନ ଥିବା ପିଲାମାନଙ୍କୁ ସେଠିକାର ସ୍କୁଲ ଓ ଛାତ୍ରାବାସରେ ସ୍ୱାଭାବିକ ନାଗରିକ ଗଢ଼ିବାର ଚେଷ୍ଟା ସେଠି ହେଉଥିଲା । କେତେ ପିଲା କୁଆଡ଼େ ରାସ୍ତା ଉପରେ ଅରକ୍ଷିତ ହୋଇ ବୁଲୁଥିଲେ । ଆଜି ଖାଇବାକୁ ମିଳିଲେ କାଲି ମିଳୁ ନ ଥିଲା । ସେହିମାନଙ୍କୁ ଗୋଟାଏ ଆନୁଷ୍ଠାନିକ ସଂଗଠନ ଭିତରେ ସ୍ୱାଭାବିକ ଓ ସାଧୁ ଜୀବନ ପ୍ରସ୍ତୁତ କରାଇବାର କାମ ଯେ କେତେ କଷ୍ଟକର ହେଉଥିବ, ମଣିଷର ମନକୁ ବୁଝୁଥିବା ଯେ କୌଣସି ଲୋକ ତାହା ବୁଝିପାରିବ । ସବୁଦିନେ ଖାଇବା ସମୟରେ ସେଠି ଯଥେଷ୍ଟ ଖାଦ୍ୟ ଖାଇବାକୁ ଦିଆଯାଏ । ତଥାପି ଏପରି ଅନେକ ପିଲା ଥାନ୍ତି, ଯେଉଁମାନେ ଖାଇବା ଟେବୁଲ ଉପରୁ ଅଧିକା ଖାଦ୍ୟପଦାର୍ଥ ପକେଟରେ ଲୁଚାଇ ନେଇଯାଆନ୍ତି । କ୍ଲାସ ଘରେ ବସିଥିବା ବେଳେ ମନେପଡ଼ିଲା ତ ପାଟିଏ ଦିପାଟି ଖାଇଦିଅନ୍ତି । ପୁଣି ଖାଇବା ସମୟକୁ ଆସିଲାବେଳେ ପକେଟରେ ଯାହା ବଳିଥାଏ, ତାକୁ ଅଳିଆଗଦାରେ ପକାଇ ଦେଇ ଆସନ୍ତି । ନିତି ଏମିତି ସେଠି ଅନେକ ଖାଦ୍ୟ ନଷ୍ଟ ହୁଏ । ଏଣେତେଣେ ଅଇଁଠା ପଡ଼ି ମଇଳା ହୁଏ । ପ୍ରାୟ ପ୍ରତ୍ୟେକ ଦିନ ଶିକ୍ଷକ ଏ ବିଷୟରେ ପିଲାଙ୍କୁ ଚେତେଇ ଦିଅନ୍ତି । ଖାଇଲାବେଳେ ସିଏ ଯେତେ ଖାଇବ, ନିଶ୍ଚୟ ଦିଆଯିବ । ଏହିଭଳି ନିର୍ଭର ଜବାବ ଦିଅନ୍ତି । ନିତି ବି ପିଲାଏ ଇଚ୍ଛା ମୁତାବକ ଖାଆନ୍ତି; ତଥାପି ପକେଟରେ ଖାଦ୍ୟ ଲୁଚାଇ ନେଇଯିବା କେବେ ବନ୍ଦ ହୁଏ ନାହିଁ ।

ସେହି ପିଲାଏ ଯେତେବେଳେ ଅରକ୍ଷିତ ହୋଇ ରାସ୍ତାରେ ବୁଲୁଥିଲେ, ସେତେବେଳେ ସେମାନେ ଯେଉଁଠି ଯାହା ମିଳିଲା ଖାଇ ଭୋକ ମେଣ୍ଟାଇ

ଦେଉଥିଲେ । ଠିକ୍ ଭୋକ ବେଳେ କେଉଁଠି ଗୁଣ୍ଡାଏ ଖାଇବାକୁ ଯେ ମିଳିବ, ଏପରି ନିଶ୍ଚିନ୍ତତା କେବେ ନ ଥିଲା । କେଉଁଠି କିଛି ନ ମିଳିଲେ ଦିନେ ଦିନେ ଉପାସ ମଧ୍ୟ ରହିବାକୁ ପଡ଼ୁଥିଲା । ତେଣୁ ଆଜି ଖାଦ୍ୟ ଖାଇଲାବେଳେ କାଲି କାଲେ ଖାଇବାକୁ ନ ମିଳିବ, ଏହି ଆଶଙ୍କା ସେମାନଙ୍କୁ ସନ୍ତ୍ରସ୍ତ କରି ରଖିଥିଲା । କାଲି ମୋର ଖାଇବା ମୁଁ ନିଶ୍ଚୟ ପାଇବି, ଏପରି ଭରସା ଥିବାବେଳେ ମୁଁ କାଲି ଲାଗି କାହିଁକି ଚିନ୍ତା କରିବି ? କିନ୍ତୁ କାଲିକାର ଭୟ ମୋତେ ମାଡ଼ିବସିଥିବା ପର୍ଯ୍ୟନ୍ତ ମୁଁ ଯେଉଁଠି ଯାହା ପାଇବି ସବୁ ଅଣ୍ଟିରେ ସାଇତି ଲୁଚାଇ ଧରିବି । ମୋ ବୁଜୁଲା ବାନ୍ଧିବା ଛଡ଼ା ସଂସାରରେ ଆଉ ମୋତେ କିଛି ଦେଖାଯିବ ନାହିଁ । ଆଜି ସେହି କଥା ହେଉଛି । ଆଜି ତ ଘରେ ଭାତ ନାହିଁ, କାଲି କି ଭାତ କଥା ତେଣିକି ଥାଉ, ମୁଢ଼ି ଗଣ୍ଡାଏ ହୁଏତ ମିଳିବ ନାହିଁ । ତେଣୁ ଆଜି ମୁଠାଏ ଅଧିକ ବାନ୍ଧି ରଖିଥିଲେ କାଲି ପେଟରୁ ତ କଣେ ପୂରିବ । ଏଇ ଲୋଭରେ, ଏଇ ଆଶଙ୍କାରେ ମଣିଷ ଜଳିପୋଡ଼ି ଯାଉଛି, ତାର ସବୁ ବିବେକ ଜଳିପୋଡ଼ି ଯାଉଛି । ତା' ପେଟର କାଙ୍ଗାଳ ତାର ହୃଦୟକୁ କାମୁଡ଼ି ଧରିଛି । ସେଥିପାଇଁ ବୁଢ଼ା, ପିଲାର ବାଛ ରହୁ ନାହିଁ, ନ୍ୟାୟ ଲାଗି ବାଟ ରହୁନାହିଁ । ସମସ୍ତେ ସେଠି ଆପଣା ଲାଗି ମୁଣ୍ଡାଏ ସାଇତି ରଖିବାକୁ ଧାଇଁଛନ୍ତି । ଭୋକ ଉପାସ ଇମିତି ମଣିଷକୁ ପାଗଳ କରେ, ଭ୍ରଷ୍ଟ କରାଏ । ଏଇମିତି ଭାବରେ ବୁଢ଼ା, ପିଲା, ଟୋକା ସମସ୍ତେ ଆଜି ମୁଢ଼ି ପୋଷେ ସକାଶେ ଟଣାଟଣି ହେଉଛନ୍ତି ।

୧ । ୧୦ । ୫୫

ଦୀର୍ଘ ଆଠ ମାସ ରହଣି ପରେ ପୂଜ୍ୟ ବିନୋବାଜୀ ଆଜି ଓଡ଼ିଶାର ସୀମା ଛାଡ଼ି ଆନ୍ଧ୍ର ରାଜ୍ୟରେ ପ୍ରବେଶ କରିଥିବେ । ଗତ ଜାନୁଆରୀ ଛବିଶି ତାରିଖରେ ସେ ଓଡ଼ିଶାର ଉତ୍ତର-ସୀମା ଲକ୍ଷ୍ମଣନାଥଠାରେ ଏ ରାଜ୍ୟରେ ପଦାର୍ପଣ କରିଥିଲେ । ଆଜି କୋରାପୁଟର କେଉଁ ଅଖ୍ୟାତ ଗ୍ରାମରେ ସେ ଓଡ଼ିଶା ଛାଡ଼ି ଆନ୍ଧ୍ର ରାଜ୍ୟରେ ଯାତ୍ରା ଆରମ୍ଭ କରି ଦେଇଥିବେ । ମହାନ୍ ଯାତ୍ରୀ ସେ, ତାଙ୍କ ପାଖରେ ଏସବୁ ରାଜ୍ୟ-ରାଜ୍ୟାନ୍ତର ବା ସୀମା-ସୀମାନ୍ତରର ଖୁବ୍ ବେଶୀ ମହତ୍ତ୍ୱ

ନାହିଁ । ସେ ମହାନ୍ ପଥିକ । ସବୁ ରାଜ୍ୟ ଓ ସବୁ ମଣିଷ ତାଙ୍କ ଦୃଷ୍ଟିରେ ସେହି ଗୋଟିଏ ପରମ-ପଥରେ ଗୁନ୍ଥା ହୋଇ ରହିଛି । ଆମେ ତାଙ୍କର ଯାତ୍ରାର ବିଭିନ୍ନ ପର୍ଯ୍ୟାୟକୁ ଆମ ସୁବିଧା ଓ ଆମ ବୁଝିବା ଲାଗି ଭିନ୍ନ ଭିନ୍ନ କରି ଦେଖୁଛୁ । ଗୋଟାଏ ସୀମାରେ ସ୍ୱାଗତ କରି ଆଣି ଆଉ ଗୋଟାଏ ସୀମାରେ ତାଙ୍କୁ ବିଦାୟ ଦେଇ ଆସୁଛୁ । କିନ୍ତୁ ଠିକ୍ ସୃଷ୍ଟିର ସୂର୍ଯ୍ୟ, ଚନ୍ଦ୍ର ଓ ଦିନ ରାତି ପରି ଅତି ନିର୍ଭୀକ ଓ ଅତି ଅପ୍ରମତ୍ତ ଭାବରେ ମହାତ୍ମା ତାଙ୍କର ଅବାରିତ ଯାତ୍ରା-ପଥରେ ଚାଲିଛନ୍ତି ।

ବିନୋବାଜୀ ଓଡ଼ିଶାର ସୀମା ଭିତରେ ଥିଲାବେଳେ ଏଠି ବେଶ୍ ଗୋଟାଏ ଉତ୍ତେଜନା ସୃଷ୍ଟି ହୋଇଥିଲା । ଏହି ଉତ୍ତେଜନାରେ ଅନେକ ଲୋକଗୋଷ୍ଠି ଭୁଲିବା ସଙ୍ଗେ ସଙ୍ଗେ ସ୍ୱତନ୍ତ୍ର ଭାବରେ ବିଚାର କରିବାକୁ, ଆତ୍ମନିରୀକ୍ଷଣ କରିବାକୁ ମଧ୍ୟ ଭୁଲି ଯାଇଥିଲେ । ନଈର ସ୍ରୋତ ପରି ବିନୋବାଜୀଙ୍କର କ୍ଳାନ୍ତ-ଯାତ୍ରା ଆମ ଜୀବନର ସବୁ କାଠିକୁଟା, ମଳି ଧୂଳିକୁ ସେହି ଏକ ଉତ୍ସାହର ବେଗରେ ବୁହାଇ ନେଇ ଚାଲିଥିଲା । ମାସ ମାସ ଧରି ଆମେ ତାଙ୍କୁ ଅତି ପାଖରେ ପାଇଥିଲୁ, ଅତି ପାଖରେ ଦେଖୁଥିଲୁ, ଅତି ପାଖରେ ରହି ତାଙ୍କ କଥା ଶୁଣୁଥିଲୁ । ଗୋଟାଏ ପଞ୍ଚଗ୍ରହକୂଟ ବା କୌଣସି ପ୍ରକାର କୂଟରେ କଳିଯୁଗ ଭାଙ୍ଗି ସତ୍ୟଯୁଗ ହୋଇଗଲା ପରି ଏହି ମହାତ୍ମାଙ୍କର ଜୀବନ-ଉତ୍ସାହରେ ଆମେ ମଧ୍ୟ ସ୍ୱପ୍ନ ଦେଖୁଥିଲୁ ଯେ ଏହି ବର୍ଷ ବା ଆଉ ଦୁଇ ବର୍ଷ ଗଲେ ଏହି ସମାଜ ଭାଙ୍ଗିଯିବ । ଏ ପୁରୁଣା ଗ୍ରନ୍ଥି ଯାଇ ନୂଆ ଗ୍ରନ୍ଥି ଓ ନୂଆ ବେଭାରରେ ସଂସାର ଚାଲିବ ଆମେ ଖାଲି ଡେଇଁପଡ଼ିବା । ଆମେ ଯିଏ ଯୋଉଠି ଅଛୁ ଖାଲି ପତଙ୍ଗ ପରି ଝାସ ଦେଇ ପକାଇବା, ତେବେ ବିନୋବା ସବୁ କରିଦେବ ।

ମୁଁ କାହିଁକି ଏହିପରି ଏକ ସହଜ-ଯୁକ୍ତି ଭିତରେ ଅନେକ ପ୍ରମାଦ ଥିଲା ପରି ଅନୁଭବ କରିଥିଲି । ନିଆଁ ପାଖରେ ଥିଲାବେଳେ ଝାସ ଦେବାର ଉତ୍ତେଜନା ଭିତରେ ନିହିତ ଥିବା ପ୍ରମାଦ ସହଜରେ ଜାଣିହୁଏ ନାହିଁ । ଆଜି ବିନୋବାଜୀ ଆମଠାରୁ ଟିକିଏ ଦୂରକୁ ଚାଲିଯିବେ । ଖାଲି ଗୋଟାଏ ପ୍ରକାର ଉତ୍ତେଜନାରେ

ସ୍ରୋତଗ୍ରସ୍ତ ମୁଗ୍ଧ ମନ ନେଇ ଆମେ ବିନୋବା ସହିତ ଆପଣାକୁ ଏକ ଯାତ୍ରୀ-ଦଳରେ ସାମିଲ କରୁଥିଲେ, ନା ବିଗ୍ରହ ଓ ବିଶ୍ୱାସର ଗାମ୍ଭୀର୍ଯ୍ୟତା ସହିତ ଆମେ ବିନୋବାର ବାଣୀକୁ ଗ୍ରହଣ କରିଥିଲେ—ତାହା ବର୍ତ୍ତମାନ ଜଣାପଡ଼ିବ । ମହାପୁରୁଷ ଦୀପ ଜଳାଇବାର ବାଟ ବତାଇ ଦେଇ ଗଲେ । ଏଥର ଆମର ଯୋଗ୍ୟତା ଥିଲେ ଆମେ ଆତ୍ମଦୀପ ହୋଇ ମହାପୁରୁଷଙ୍କର ବାଣୀକୁ ଆମ ଭିତରେ ବଞ୍ଚାଇ ରଖିପାରିବା । ତାଙ୍କର ବାଣୀର ପ୍ରେରଣା ନେଇ ବ୍ୟକ୍ତିଗତ ତଥା ସାମାଜିକ ଜୀବନରେ ଆମେ ନୂତନ କରି ଜନ୍ମଲାଭ କରିପାରିବା ।

ବିନୋବାଜୀଙ୍କର ଆନ୍ଦୋଳନ ପ୍ରଧାନତଃ ମଣିଷ ବଦଳାଇବାର ଆନ୍ଦୋଳନ; ଆପଣାକୁ ବଦଳାଇବାର ଆନ୍ଦୋଳନ । ଅନ୍ୟାନ୍ୟ ନାନାପ୍ରକାର ଆନ୍ଦୋଳନ ପରି ଏଥିରେ କୌଣସି ପ୍ରକାର ଉଗ୍ରତା ବା ଉତ୍ତେଜନାର ସ୍ଥାନ ନାହିଁ । ପୁରୁଣା ବିଗ୍ରହକୁ ମାରିବାକୁ ପଡ଼ିବ, ପୁରୁଣା ଜୀବନକୁ ମାରିବାକୁ ପଡ଼ିବ, ନୂଆ ମୂଲ୍ୟର ଜୀବନ ବଞ୍ଚିବାର ସାହସ ଅର୍ଜନ କରିବାକୁ ପଡ଼ିବ । ଆପେ ବଦଳି ଆପଣାର ପରିପାର୍ଶ୍ୱକୁ ବଦଳାଇବାକୁ ପଡ଼ିବ । ଏହିପରି ଏକ ଶୁଦ୍ଧ ଜୀବନରୁ ମିଳୁଥିବା ପ୍ରେରଣାରେ ମସ୍ତ ରହିବାକୁ ପଡ଼ିବ । ଏହି ଉକ୍ତି ହେଉଛି ବିନୋବା ବାଣୀର ମୂଳ କଥା । ଏଠି ଶିଷ୍ୟ ଗୁରୁକୁ ଘେନି ହୋ ହୋ ସଂକୀର୍ତ୍ତନ କରିବାର କୌଣସି ଅଭ୍ୟାଗ୍ରହ ନାହିଁ । ଗୁରୁର ଦୋହାଇ ଦେଇ ବା ଗୁରୁ-ବାକ୍ୟର ବାନା ଉଡ଼ାଇ ଆପଣାର ଅଭିମାନୀ ଓ ଅହଂକାରୀ ଲାଳସା-ଗୁଡ଼ାକୁ ଜାରି ରଖିବାର କୌଣସି ଗନ୍ଧ ନାହିଁ । ଯୁଗେ ଯୁଗେ ନାନା ଧର୍ମ ଓ ନାନା ଧର୍ମପ୍ରବର୍ତ୍ତନର ଶୁଦ୍ଧତା ଏହି ଲାଳସା ଯୋଗୁ ନଷ୍ଟ ହୋଇଛି । ସବୁ ଆଦର୍ଶବାଦ ଏହି ଦୋଷରୁ ଚିରଦିନ ଦୂଷିତ ହୋଇପଡ଼ିଛି । ଏହି ଲାଳସାର ବାଣ ମାରି ଚିରଦିନ ଗୁରୁତିଳକ ଲଗାଇଥିବା ଚେଲାମାନେ ଗୁରୁଙ୍କୁ ଆପଣା ଭିତରୁ ମାରି ପକାଇଛନ୍ତି ।

ବିନୋବାଜୀ ଓଡ଼ିଶାରେ ଏକ ଭାଷଣରେ ଆପଣାକୁ ଜ୍ଞାନ ସହିତ ତୁଳନା କରିଥିଲେ । ଜ୍ଞାନଂ ଜ୍ଞାପୟତି—ଜଣାଇଦେବା ହେଉଛି ଜ୍ଞାନର କାମ । ଜ୍ଞାନ ଆପଣାକୁ ସତର୍କ କରିଦେବ । ଠିକ୍ ରାସ୍ତାରେ ଯିବାକୁ ଆମ ଭିତରେ ଶୁଦ୍ଧ ପ୍ରେରଣା ଦେଇଯିବ । ଆମ ଆଖିରୁ ସବୁ ମଳି ଧୋଇଦେବାରେ ଆମକୁ

ସାହାଯ୍ୟ କରିବ । କିନ୍ତୁ ପ୍ରଧାନତଃ ଆମର ବିଗ୍ରହ ଓ ବିଶ୍ୱାସଦ୍ୱାରା ଆମେ ଆମର ଜୀବନ ତଥା ସମାଜକୁ ବଦଳାଇବା । ଆପେ ଶୁଦ୍ଧ ହେବାର, ନମ୍ର ହେବାର ସଂକଳ୍ପ ନେଇ ଆମେ ଏଇଠି ଏଇ ପୃଥିବୀରେ ସ୍ୱର୍ଗରାଜ୍ୟର ନିଅଁ ପକାଇବା ।

୬ । ୧୦ । ୫୫

ଗାନ୍ଧୀ, ରାମକୃଷ୍ଣ ବା ବିବେକାନନ୍ଦଙ୍କର ଛବି ଘରକାନ୍ଥରେ ସଜାଇ ରଖିଲେ ସେମାନେ ଆମ ଭିତରେ ବଞ୍ଚି ରହିପାରିବେ ନାହିଁ । ଆଜି ମହାତ୍ମା ଗାନ୍ଧୀଙ୍କ ନାଆଁରେ ପୂଜାସ୍ତୁତିର ଧୂମ୍ ଗୁରିଆଡ଼େ ଲାଗିଛି । ଶ୍ୱେତମର୍ମର ପଥର ମୂର୍ତ୍ତିଠାରୁ ଆରମ୍ଭ କରି ଜନମହଲ ସ୍ମୃତି-ମନ୍ଦିର ପର୍ଯ୍ୟନ୍ତ ସବୁଠି ଆଜି ଗାନ୍ଧୀ ଅବତାର ଗ୍ରହଣ କରିଛନ୍ତି । ଗାନ୍ଧୀ ନାଆଁରେ ସ୍କୁଲ୍ ହେଉଛି । ପାଠାଗାର ଓ କ୍ଲବମାନ ଖୋଲୁଛି । ଗାନ୍ଧୀ ନାଆଁରେ ପଦବୀଧାରୀ ପଣ୍ଡିତମାନଙ୍କୁ ବକ୍ତୃତା ଦେବା ଲାଗି ବୃତ୍ତି ବା ଭତ୍ତା ଦିଆଯାଉଛି । କଥାରେ ଅକଥାରେ, ସଭାଘରେ ଓ ମନ୍ତ୍ରଣାଗୃହରେ ଗାନ୍ଧୀଙ୍କୁ ଜାତିର ପିତା ବୋଲି କୁହାଯାଉଛି । ତଥାପି ନାମଟାକୁ ଅତି ଉଗ୍ରତାର ସହିତ ବଞ୍ଚାଇ ରଖିବାର ଆଡ଼ମ୍ବର ହେଉଥିଲେହେଁ ଗାନ୍ଧୀ ଯେପରି ଆଜି ଏ ଦେଶର ଜୀବନରୁ ମରି ମରି ଯାଉଛି । ଆମେ ସମସ୍ତେ ଚଟାଚଇତନ ଓ କପଡ଼ା ଭିତର ଦେଇ ଗାନ୍ଧୀର ଭୂତଟାକୁ ଯେପରି ନଚାଇ ନଚାଇ ବୁଲୁଛୁ । ମୂର୍ତ୍ତି ଗଢ଼ିଦେଲେ ମହାତ୍ମାର ପୂଜା ସରିଯାଏ ନାହିଁ । ମୂର୍ତ୍ତିର ଫୁଲ ପୂଜା ଭିତରେ ଦେବତାର ମହିମାକୁ ବାନ୍ଧିରଖିଲେ ଆମେ ଯଥାର୍ଥରେ ଦେବତାର ଭକ୍ତ ବୋଲାଇବାର ଯୋଗ୍ୟତା ହରାଇବସୁ । ଗାନ୍ଧୀ ବଞ୍ଚିଥିବା-ବେଳେ ଥରେ ବିହାରରେ ଜଣେ କେଉଁ ମୂଢ଼ ଭକ୍ତ ମନ୍ଦିର ଭିତରେ ଗାନ୍ଧୀର ପ୍ରତିମା ଥାପି ପୂଜା କରିବାକୁ ଆରମ୍ଭ କରିଥିଲେ । 'ସେଠି ମୋ ଜୀବନକୁ ନେଇ ବ୍ୟଙ୍ଗ କରାଯାଉଛି'—ଗାନ୍ଧୀ ଅତି ସ୍ପଷ୍ଟଭାବରେ ଏହି କଥା ସମସ୍ତଙ୍କୁ ଶୁଣାଇ ଦେଇଥିଲେ । ସେହି କଥା ପଦକ ଆମ ସମସ୍ତଙ୍କ ଲାଗି ସତର୍କବାଣୀ ହୋଇ ରହିବା ଉଚିତ । ଆମେ ଗାନ୍ଧୀଙ୍କୁ ଅବତାର ବୋଲି ମାନି ସ୍ୱର୍ଗକୁ

ଉଠାଇଦେବାର ମୂଢ଼ ଭକ୍ତ ସାଜିବା ନାହିଁ । ମହାତ୍ମା ଆମର ହୃଦୟ ଭିତରେ ପ୍ରତିଷ୍ଠିତ ହୋଇ ରହିବ, ଆମର ଜୀବନରେ ସାମାଜିକ ସମ୍ପର୍କରେ ମହାତ୍ମାର ବାଣୀ ପ୍ରକଟିତ ହେବ । ତେବେ ଯାଇ ମହାତ୍ମାଙ୍କୁ ଆମେ ଆମର ଭିତରେ ବଞ୍ଚାଇ ରଖିପାରିବା ।

ଆଜି ଗାନ୍ଧୀଙ୍କର ଜନ୍ମଦିନ । ଆଜି କେତେ ଜାଗାରେ ତାଙ୍କର ସ୍ତୁତି ହେଉଥିବ, ତାଙ୍କର ନାଆଁରେ କେତେ ପ୍ରଗଲ୍‌ଭ ପଣ୍ଡିତ ଆଜି ବଡ଼ ବଡ଼ ସଭାରେ ବକ୍ତୃତା ଦେଉଥିବେ । ପୂର୍ବସ୍ମୃତି ଓ ପୂର୍ବକୃତି ମନେପକାଇ କେତେ ପୁଣି ଗାନ୍ଧୀଙ୍କୁ ହରାଇଲୁ ବୋଲି ରୋଦନ କରୁଥିବେ । ଆମେ ଗାନ୍ଧୀଙ୍କୁ ଦେବତା ବୋଲି ମାନିବା ନାହିଁ । ଗାନ୍ଧୀଙ୍କୁ ଆମେ ମଣିଷ ବୋଲି ଗ୍ରହଣ କରିବା । ଇତିହାସରେ ଯୁଗେ ଯୁଗେ ମଣିଷ ମହାତ୍ମାଙ୍କୁ ଦେବତା କରିଦେଇଛୁ । ଏହିପରି ସମ୍ମାନର ଅତ୍ୟାଗ୍ରହରେ ସେ ମହାତ୍ମାଙ୍କୁ ମାରିଦେଇଛୁ । ଜୀବନରୁ ଓ ସଂସାରରୁ ବିତାଡ଼ିତ କରି ଧର୍ମକୁ ସେ ମନ୍ଦିର ଭିତରେ ବନ୍ଦକରି ରଖିଛୁ । ଗାନ୍ଧୀଙ୍କୁ ଆମେ ଦେବତା ନୁହେଁ, ସାଧକ ବୋଲି ଗ୍ରହଣ କରିବା । ଗାନ୍ଧୀ ଏଇ ମାଟି ଗୋଡ଼ି, ଦୋଷ ଗୁଣର ସଂସାରରେ ଜଣେ ମଣିଷ ଥିଲେ । ଧୂଳିରେ ଜନ୍ମି ସେ ଫୁଲଟି ପରି ସ୍ୱର୍ଗୀୟ ମହିମାରେ ଫୁଟି ଉଠିଥିଲେ । ସେ ଦିନେ ପିଲାହୋଇ ଚୋରି କରିଥିଲେ, କାମାତୁର ସ୍ୱାମୀ ହୋଇ କର୍ତ୍ତବ୍ୟ ଭୁଲିଥିଲେ । ବାହ୍ୟ ସଭ୍ୟତାର ମୂଢ଼ ଅନୁକରଣ କରିବା ଲାଗି ସେ ମଧ୍ୟ ଦିନେ ବିଲାତରେ କେତେ ପରିଶ୍ରମ କରିଥିଲେ; ତଥାପି ଶତ ଦୋଷ ଓ ଦୁର୍ବଳତା ସତ୍ତ୍ୱେ ସେହି ପିଲାଟିଦିନରୁ ତାଙ୍କ ଭିତରେ ଆଲୋକପିପାସୀ ସାଧକ ବିକଶିତ ହୋଇ ଆସୁଥିଲା । ତାଙ୍କ ଭିତରର ବିପ୍ଳବୀ ସାରା ସଂସାରର ସମସ୍ତ ଘୃଣା ଓ ଅନ୍ୟାୟର ବିରୁଦ୍ଧରେ ନିର୍ଭୀକ ଉନ୍ନତଶିର ହୋଇ ଠିଆହେବା ଲାଗି ପ୍ରସ୍ତୁତ ହୋଇ ଆସିଥିଲା । ଏହି ଧୂଳି ମାଟିର ଜୀବନ-ଜାଲ ଭିତରେ ମଧ୍ୟ ତାଙ୍କରି ଭିତରର ମହାତ୍ମା ପ୍ରତିଦିନ ପଲ ପଲ କରି ବଢ଼ି ଆସୁଥିଲା । ଗାନ୍ଧୀ-ଜୀବନର ଇତିହାସ ପ୍ରଧାନତଃ ସଂକଳ୍ପ ଓ ସାଧନାର ଇତିହାସ । ଯାବତୀୟ ଦୋଷ ତ୍ରୁଟି ସତ୍ତ୍ୱେ ସତ୍ୟପ୍ରତି ଅନୁରକ୍ତିର ଇତିହାସ ।

ଆମ ସମାଜରେ ଆମେ ସମସ୍ତେ ଆଜି ଭିତରେ ଖାରୁ ଓ ବାହାରେ ପୋଲିସ ସାଜି ରହିଛେଁ । ଆମ ଭିତର ମଇଲାକୁ ଆମେ ନାନା ପ୍ରକାର ତ୍ରାସରେ ଜଡ଼ମୁଦ୍ର ଦେଇ ରଖିଛେ । ଏଣେ ବାହାରି ପୋଷାକୀ ଜୀବନରେ ଦୁନିଆଁ ଆଗରେ ଭଲ ମଣିଷ ବୋଲି ପରିଚୟ ଦେଇ ଅପରକୁ ଦୋଷୀ ପ୍ରମାଣ କରି ବାହାରିଛେ । ଏ ଜୀବନରେ କୌଣସି ସଂକଳ୍ପ ନାହିଁ, କୌଣସି ସାଧନା ନାହିଁ । ସତ୍ୟ ପ୍ରତି କୌଣସି ଅନୁରକ୍ତି ନାହିଁ, କୌଣସି ପୁରୁଷାର୍ଥ ନାହିଁ । ଏ ସଂକଳ୍ପ, ଏହି ସାଧନା ଓ ଏହି ଅନୁରକ୍ତି ନ ଆସିବା ପର୍ଯ୍ୟନ୍ତ ଆମେ କୌଣସି ଦିନ ଆପଣାର ଜୀବନକୁ ବଦଳାଇ ପାରିବା ନାହିଁ । ଚିରଦିନ ଆମେ ଆମର ଦୋଷ ଦୁର୍ବଳତାମାନଙ୍କୁ ଆପଣା ମନର ବୋଝ କରି ଧରି ଅତି ଦରିଦ୍ର ଜୀବନ ନେଇ ବୁଲୁଥିବା । ବାହାର ବକ୍ତୃତା ବା ଭେକ ଆମକୁ ଏତେ ଟିକିଏ ଶାନ୍ତି ଦେଇପାରିବ ନାହିଁ । ନାଇଁ, ସଂସାରରେ ସେ ଶସ୍ତା ବାଟ ଆମର ଦରକାର ନାହିଁ । ଆପଣା ଜୀବନର ଧୂଳି ଉପରେ ଆମକୁ ପୂର୍ଣ୍ଣ ପଦ୍ମ ପରି ଫୁଟି ଉଠିବାକୁ ହେବ । ଏହି ଫୁଟି ଉଠିବାର ଆଗ୍ରହ ଆମକୁ ସଂସାର ଓ ସମାଜରେ ସତତ ଜାଗ୍ରତ କରି ରଖିଥାଉ । ସାଧକ ଗାନ୍ଧୀର ସାଧନା ଆମର ଅନୁରକ୍ତିକୁ ଆହୁରି ଗଭୀର କରୁ, ଆମର ବିଶ୍ୱାସକୁ ଆହୁରି ଦୃଢ଼ କରୁ, ଆମରି ହୃଦୟ-ଗୁହାରେ ନିହିତ ହୋଇ ରହିଥିବା ମଣିଷ-ଦେବତାର ପରିଚୟ ଆମକୁ ଦେଇଯାଉ ।

୩ । ୧୦ । ୫୫

ଏ ଦେଶର ବଣ ଜଙ୍ଗଲ, ପାହାଡ଼ ପର୍ବତ ସବୁଠି ମଣିଷ ଅଛନ୍ତି । କିନ୍ତୁ ଆମେ ସେସବୁର ଖବର ରଖୁ ନାହିଁ । ଆପଣା ଘରେ ଆରାମରେ ରହି ଟୁକିଲି ପାଚିଲି ବାଟ ଚାଲି, ଭଲ ପିନ୍ଧି, ଭଲ ଖାଇବାକୁ ଆମେ ଆଦର୍ଶ ସୁଖୀ ଜୀବନ ବୋଲି ଧରିନେଇଛୁ । ଆମ ଦେଶର କିଶୋର ଯୁବକମାନଙ୍କୁ ମଧ୍ୟ ସୁଖୀ ଜୀବନର ଏହି ବିନାଶକାରୀ ନିଶା ପିଆଇ ଦିଆଯାଉଛି । ଆମେ ବି ଆଜି କାଦୁଅପାଣି ଦେଖିଲେ ନାକ ଟେକୁଛୁ, ନଇ ପାରିହେବାକୁ ଡରୁଛୁ, ବଣ

ଜଙ୍ଗଲକୁ ଭୟ କରୁଛୁ, ଖାଇବା ପିଇବାରେ ଅସୁବିଧା ହେଲେ ଶଙ୍କିତ ହୋଇ-
ପଡ଼ୁଛୁ । ସେଥିଲାଗି ଏ ବିରାଟ ଦେଶର ଗୋଟାଏ କଣ ବି ଆମେ ଦେଖିପାରୁ
ନାହୁଁ । ଯେତକ ଦେଖିବାର ସୁଯୋଗ ପାଉଛୁ, ସେତକ ମଧ୍ୟ ହୃଦୟ ଦେଇ
ଦେଖିବାର ଶ୍ରଦ୍ଧା ବା ସାହସ ଆମର ନାହିଁ । ଆମ ଓଡ଼ିଶାର ଅଧିକାଂଶ
କର୍ମଚାରୀ କୋରାପୁଟ ଯିବାକୁ ଭୟ କରନ୍ତି । ସହରରେ ବେଶୀ ଦିନ ରହିବା
ଲାଗି ଉପର ହାକିମଙ୍କୁ ତୋଷଣ କରିବାରେ ଲାଗିଥାନ୍ତି । ଘରଠାରୁ ଟିକିଏ
ଦୂର ଛଡ଼ା ହୋଇଗଲେ ବା ବର୍ଷେ ଛ'ମାସ ଘରକୁ ନ ଆସିଲେ ଆମ ଯୁବକର
ମନ ଉଚ୍ଛନ୍ନ ହୋଇଉଠେ । ଏ ଆମର ଦୁର୍ଭାଗ୍ୟ । ସେଥିଲାଗି ଏଡ଼େବଡ଼ ବିଚିତ୍ର
ବିପୁଳ ଦେଶରେ ଜନ୍ମ ହୋଇ ମଧ୍ୟ ଆମେ ଏ ବିଚିତ୍ରତା ଓ ବିପୁଳତାର କିଛି
ଅନୁଭବ କରିପାରୁ ନାହୁଁ । ଆମେ ଏ ଦେଶକୁ ନିଜର ବୋଲି ମନେ କରି
ପାରୁ ନାହୁଁ । ସବୁଥିରୁ ବଞ୍ଚିତ ହୋଇ ଆମ ଘରଟିକୁ ସଂସାରର ଭ୍ରମ କରି
ବଞ୍ଚିରହିଛୁ ମାତ୍ର । ଯିଏ ଦୁଃଖ ଆଉ ଅସୁବିଧାକୁ ପିଲାଟି ଦିନରୁ ଡରି ଶିଖୁଛି,
ବିଧାତା ଅତି ନିର୍ଦ୍ଦୟ ହୋଇ ତା ଲାଗି କୂଅ ଭିତରେ ବନ୍ଦ ହୋଇ ରହିବାର
ଅଗ୍ରିମ ଖଞ୍ଜି ଦେଉଛନ୍ତି ।

ଦେଢ଼ବର୍ଷ ତଳେ ନୂଆ ଦେଶ ଇସ୍ରାଏଲରେ ଏହାର ଓଲଟା କଥା
ଦେଖିଥିଲି । ସେଠି କିଶୋର ଓ ଯୁବକଙ୍କର ଗୋଟାଏ ବିରାଟ ସଂଗଠନ ଅଛି ।
ଆପଣା ଦେଶକୁ ଭଲକରି ଜାଣିବା, ଦେଶର ଟିପ-ଟାଲୁ, ପର୍ବତ-କାନ୍ତାର
ସହିତ ଘନିଷ୍ଠ ଭାବେ ପରିଚିତ ହେବା ହେଉଛି ଏଇ ସଂଗଠନର ଏକ ପ୍ରଧାନ
ଉଦ୍ଦେଶ୍ୟ । ପ୍ରତ୍ୟେକ ବର୍ଷ ଶୀତଦିନେ ଦଳବାନ୍ଧି ସେଠି ପିଲାଏ ସେମାନଙ୍କର
ଦେଶ ଆବିଷ୍କାର କରିବାକୁ ଯାଆନ୍ତି । ଦେଢ଼ବର୍ଷ ତଳେ ଏହିପରି ଗୋଟାଏ
ଦଳ ସହିତ ମୁଁ ଦୁଇ ଶହ ମାଇଲ ପାହାଡ଼ୀ ମରୁଭୂମିରେ ବୁଲିଥିଲି । କି
ଉତ୍ସାହର ସହିତ ଶହେଟି କିଶୋର ଶରୀର ଆପଣାର ଖାଦ୍ୟ ଓ ପାନୀୟ
ପିଠିରେ ବୋହି ନାନା ଦୁର୍ଗମ ପଥ ଦେଇ ଆପଣା ଦେଶକୁ ଆବିଷ୍କାର
କରୁଥିଲେ । ଦିନରେ ଗ୍ରୀଷ୍ମକଟିବନ୍ଧର ଗରମରେ ନିର୍ଧୂମ ଖରାରେ ବାଟ
ଚାଲିବାକୁ ହେଉଥିଲା । ରାତିରେ କାଲୁଆ ପଥର ଉପରେ ଖୋଲା ଆକାଶ
ତଳେ ସମସ୍ତେ ଶୋଇ ପଡ଼ୁଥିଲେ । ଗୀତ ଓ ଉଲ୍ଲସିତ ଧ୍ୱନିରେ ମରୁଭୂମି

ନିରନ୍ତର ମୁଖରିତ ହୋଇ ଉଠୁଥିଲା । ଏହିପରି ଯୁବକ ବଡ ହୋଇ ତାର ଦେଶକୁ ସୁନ୍ଦର କରି ଗଢିପାରିବ । ଏହି ସଂଗଠନର ସଭ୍ୟମାନେ ଆପଣାକୁ 'ଆଲ୍ସ୍ୟା' ବୋଲି ପରିଚୟ ଦିଅନ୍ତି । 'ଆଲ୍ସ୍ୟା' ଅର୍ଥ ଆରୋହୀ । ଏମାନେ ଦୁଃଖ ଦୀନତାରୁ ସମୃଦ୍ଧି ଓ ସମ୍ପନ୍ନତାକୁ ଆରୋହଣ କରିବେ, ଆତ୍ମକେନ୍ଦ୍ରୀ କ୍ଷୁଦ୍ରାୟତନ ଜୀବନରୁ ଏମାନେ ବିସ୍ତୃତତର ଓ ବିପୁଳତର ଜାତୀୟ ନିର୍ମାଣର ଜୀବନକୁ ଆରୋହଣ କରିବେ ।

ଡେନ୍‌ମାର୍କର ପିଲା ଷୋଳ ବର୍ଷ ପୂରିଗଲେ ସାଇକେଲ ଚଢି ଆପଣା ଦେଶ ବୁଲିବାକୁ ଯାଏ । ବିଛଣା, ଖାଇବା ଓ ଅନ୍ୟାନ୍ୟ ସାମଗ୍ରୀ ସେହି ଗୋଟିଏ ସାଇକେଲରେ ଯେତିକି ଧରିବ, ସେ ସେତିକି ନିଏ । ରାତିରେ କୌଣସି ପାନ୍ଥଶାଳାର ଆଶ୍ରୟ ନେବାକୁ ହୁଏ । କିଛି ନ ମିଳିଲେ କାହାର ପାଲଗଦାରେ ରାତି କଟିଯାଏ । ଡେନ୍‌ମାର୍କର ପିଲା ସେଥିଲାଗି ଦେଶର ସହର, ଗାଆଁ, ନଈ, ନାଳ, ଗଛ, ପଥର, ଫୁଲ, ପକ୍ଷୀ, ପଶୁ ସବୁଟିକୁ ନିର୍ଭୁଲ ଭାବରେ ଚିହ୍ନି ରଖିଥାଏ । ଏହି ନିବିଡ ପରିଚୟ ତାର ଅନ୍ତର ଭିତରେ ଦେଶର ସୁନ୍ଦର ଓ ସାଧୁ ନାଗରିକ ହେବାର ଶ୍ରଦ୍ଧା ଓ ସଂକଳ୍ପ ଦେଇଯାଏ । ଆମ ଦେଶର ବଣ ଜଙ୍ଗଲ, ନଈ ନାଳକୁ ଆମେ କେତେ ଦିନ ଡରୁଥିବା ? କେତେ ଦିନ ଆମେ ଆମର ଦେଶର ହଜାର ହଜାର ମଣିଷଙ୍କ ସହିତ ଅପରିଚିତ ହୋଇ ରହିଥିବା ? କେତେ ଦିନଯାଏ ଆମେ ଆମ ପଡୋଶୀକୁ ଘୃଣା କରି ସାନ୍ତ୍ୱନା ପାଉଥିବା । ଏରସମା ଥାନାରେ ବାଢି ହୋଇ ଏତେ ଘର ଏତେ ମଣିଷ ଉଚ୍ଛନ୍ନ ହୋଇଗଲେ; ତଥାପି ସେଠି ରାସ୍ତାଘାଟ ନାହିଁ ବୋଲି କେତେ ଦିନ ଆମେ ସେଠାକୁ ଯିବାକୁ କୁଣ୍ଠିତ ହେଉଥିବା ? ଏ ରୁଗ୍ଣ ଜୀବନ-ଦୃଷ୍ଟି ଆମକୁ ଛାଡିବାକୁ ହେବ । ଏରସମା ହେଉ କି କୋରାପୁଟ ହେଉ, ହିମାଚଳ ହେଉ କି ହାଇଦ୍ରାବାଦ ହେଉ, ଏ ଆମର ଦେଶ । ସବୁଠିଁ ଆମେ ବିପନ୍ନ ଲୋକ ପାଖରେ ଦମ୍ଭ ହୋଇ ଠିଆହେବାକୁ ଆଗଭର ହେବା । ଆମ ଗୃହପାଖରେ ଆମକୁ ଜନନୀ ପରି ଆବୋରି ଧରିଥିବା ସଂସାର ଲାଗି ଆମର ଶ୍ରଦ୍ଧା ଓ ଜିଜ୍ଞାସା ସବୁବେଳେ ପ୍ରସ୍ତୁତ ହୋଇ ରହିଥିବ । ଏ ଦେଶର ମଣିଷ ଯେଉଁଠି ଦୀନହୀନ ହୋଇ ପଡ଼ିଛି, ସେଠି ଯାଇ ଆପଣାର

ଯବୁ ଯୋଗ୍ୟତା ଖଟାଇ ମଣିଷକୁ ସୌଭାଗ୍ୟସମ୍ପନ୍ନ କରିବାକୁ ଆମେ ପଛୁଇବା ନାହିଁ । ଆମେ ଏ ଦେଶକୁ ନୀରୋଗ କରିବା, ଏ ଦେଶର ମଣିଷକୁ ମାଡ଼ିବସିଥିବା ଗ୍ଲାନି ଓ ଅନ୍ଧାରକୁ ହଟାଇଦେବା । ଏ ଦେଶର ବନ୍ଧ୍ୟା ମାଟିରେ ଆମେ ଫସଲ ଫଳାଇବା । ଏ ଦେଶର ନଈ, ସମୁଦ୍ର, ପାହାଡ଼ ଓ ଜଙ୍ଗଲକୁ ମଣିଷର ସେବାରେ ଲଗାଇବା । ଏସବୁ ଆମକୁ କରିବାକୁ ହିଁ ହେବ । କିନ୍ତୁ ଆଗ ଆମକୁ ଏ ଦେଶକୁ ନିବିଡ଼ ଘନିଷ୍ଠ ଭାବେ ଜାଣିବାକୁ ହେବ ।

୪ । ୧୦ । ୫୫

ଦଳେ ଲୋକ ହାକମୀ ଦେଖାଇ ଉପରେ ରହିଥିବେ, ଆଉ ଦଳେ ନେହୁରା ହୋଇ ପଛରେ ଗୋଡ଼ାଇଥିବେ—ଏ କଥାଟା ଆମ ଦେଶରେ ସବୁଠାରେ ଦେଖି ଦେଖି ଆମର ଆଖିସୁହା ହୋଇଗଲାଣି । ସରକାରୀ କଚେରିରେ ଯାବତୀୟ ଦୈନନ୍ଦିନ କାରବାରରେ, ଏପରି କି ବିପଦଗ୍ରସ୍ତ ଲୋକଙ୍କୁ ସାହାଯ୍ୟ କରିବାର କ୍ଷେତ୍ରରେ ଆଜି ସେଇଟା ହିଁ ଦେଖିବାକୁ ମିଳୁଛି । ଏ ସମସ୍ୟାକୁ କେବଳ ସାମାଜିକ ବା ରାଜନୈତିକ ସମସ୍ୟା ବୋଲି କହିଲେ ଏହାର ଗୁରୁତ୍ୱ ଯଥେଷ୍ଟ କମିଯିବ । ଏହିପରି ଏକ ମନୋବୃତ୍ତି ଆମ ସଂସ୍କୃତିର ମଜ୍ଜାଗତ ହୋଇ ରହିଲାଣି । ସାମନ୍ତବାଦୀ ଯୁଗର ଛାଇ ଭୂତଟା ଏପର୍ଯ୍ୟନ୍ତ ଆମ ଜୀବନର ନିୟନ୍ତ୍ରଣ କରୁଛି । ସେଇଥିଲାଗି ଉପରେ ରହି ଅପରର ପାଖିଜଣଙ୍କୁ ହାକମୀ କରିବା ବା ତଳେ ରହି ଉପରବାଲାଙ୍କ ପାଖରେ ଯାଇ ନେହୁରା ହେବାକୁ ଆମକୁ ଆଉ ଲାଜ ମାଡ଼ୁ ନାହିଁ । ବଡ଼ଲୋକର ଦୟା ଉପରେ ଦରିଦ୍ରର ଜୀବନଧାରଣ ନିର୍ଭର କରୁଛି । ଉପର ହାକିମର କଲମ ଉପରେ ତଳିଆ କର୍ମଚାରୀର ଦାନା ଯିବା ବା ରହିବା ନିର୍ଭର କରୁଛି । ପ୍ରକୃତ ଯୋଗ୍ୟତା ବା କର୍ମପଟୁତାକୁ ତଉଲୁ କରି ଧରିବାର ନ୍ୟାୟ ଆମ ସମାଜରେ ଆଉ ନାହିଁ । ଯିଏ ଉପରବାଲାଙ୍କୁ ଖୁସି କରି ରଖିପାରୁଛି, ସେଇ ଏ ଦେଶର ରାଜ୍ୟ ଭୋଗ କରୁଛି; ତାର ପେଟପାଟଣା ଏ ଅଲକ୍ଷଣା ଦେଶରେ ସୁରୁଖୁରୁରେ ଚଳୁଛି ।

ଏରସମା ଥାନାରେ ବଢ଼ିପାଣି ଲୋକଙ୍କର ସର୍ବସ୍ୱ ନେଇଛି । ପେଟରେ ଆଜି ସମସ୍ତଙ୍କର ଭୋକ ଜଳୁଛି । କାନ୍ଥ ଭାଙ୍ଗି ଘରଗୁଡ଼ାକ ତଳେ ଲାଗିଛି । ପିଲାଙ୍କର ଆଖି ଭିତରକୁ ପଶିଗଲାଣି । କାହାରି ମୁହଁରେ ହସ ନାହିଁ । ପ୍ରତିଦିନ ସନ୍ଧ୍ୟାରେ ପିଲାଙ୍କର ଚପଳ କୋଳାହଳରେ ଆଉ ଗାଆଁ-ଦାଣ୍ଡ କମ୍ପି ଉଠୁ ନାହିଁ । ତଥାପି ଏ ବିପନ୍ନ ଅବସ୍ଥାରେ ମଧ୍ୟ ଅମେ ଆମ ପଚ୍ଚା ସଂସ୍କୃତିର ନର୍ଦ୍ଦମା ଭିତରେ ସେହି ପୁରୁଣା ପାଣିରେ ପୋକ ହୋଇ ରହିବାକୁ ଭଲ ପାଉଛୁ । ଏ ପଚ୍ଚା ଜୀବନ ଆମର ଦେହସୁହା ହୋଇଗଲାଣି । ମେଳାକୁ ମେଳା ଗରିବ ମଣିଷ ଏଠି ଜମା ହେଉଛନ୍ତି । ଗୁରି ପାଞ୍ଚଟା ଗ୍ରେଡ଼ ବଡ଼ ହାକିମଙ୍କ ପାଖରେ କେତେ କିଏ ଆସି ଗୋଡ଼ତଳେ ପଡ଼ୁଛି । କିଏ ଆପଣାକୁ ହରିଜନ ବା ହୀନଜନ ବୋଲି କହି ଆଗ ଅନୁଗ୍ରହ ପାଇବାକୁ ମାଗୁଣି କରୁଛି । କିଏ ମୁନ୍‌ସୀ ବାବୁଙ୍କ ପଛରେ ଗୋଡ଼ାଉଛି ତ କିଏ ଦଫାଦାର ଚୌକିଦାରଙ୍କର ଲାଞ୍ଜ ଧରିବାକୁ ଧାଉଁଛି । ହାକିମମାନେ କେତେ ତୋଡ଼ ଦେଖାଉଛନ୍ତି, କେତେ ଶାନ୍ତିରକ୍ଷା କରିବାର ପ୍ରହସନ ସୃଷ୍ଟି କରୁଛନ୍ତି । ପୁଣି କେତେବେଳେ ଦୟାଧର୍ମର ଅବତାର ପାଲଟି ଯାଇ ଗୋଟାସୁଦ୍ଧା ଗରିବର ହୋଇ ଯାଉଛନ୍ତି । ବଢ଼ି ପାଣି ଆସି ବଳବାନ୍, ଧନୀ ଗରିବ ସମସ୍ତଙ୍କ ଦରିଆ ଭିତରର ଦୁଃଖ କରି ଛାଡ଼ିଦେଇ ଗଲା; ତଥାପି ଆମର ମନ ବଦଳିଲା ନାହିଁ । ଆମର ସ୍ୱଭାବ ପୁରୁଣା ପୋଖରୀର ପଙ୍କ ଭିତରେ ତଥାପି ପଡ଼ି-ରହିଲା । ଏ କୌଣସି ଜଣେ ମଣିଷର ଦୋଷ ନୁହେଁ, ଏ ଦୋଷ ଆମ ସଂସ୍କୃତିର, ଏ ଦୋଷ ଆମ ଶିକ୍ଷାର । ଅନ୍ତୁଡ଼ିଶାଳଠାରୁ ଆରମ୍ଭ କରି ମଶାଣିଭୂଇଁ ପର୍ଯ୍ୟନ୍ତ ସମାଜର ନାନା କ୍ଷେତ୍ରରେ ଏହି ଶିକ୍ଷା ଓ ସଂସ୍କୃତି ଆମର ସ୍ୱଭାବକୁ ଗଢ଼ି ଚାଲିଛି, ଆମ ଭିତରର ଘୃଣା ଓ ଅମଣିଷପଣିଆ ଲାଗି ସାର ଯୋଗାଇ ଚାଲିଛି । ବିପଦବେଳେ ମଧ୍ୟ ସେଥିଲାଗି ଆମର ଚେତା ପଶୁ ନାହିଁ ।

ଆମ ଜଙ୍ଗଲ ଭୂଇଁର ନୂଆ ପାଠଶାଳା ପୁରୁଣା ସଂସ୍କୃତିର ନର୍ଦ୍ଦମାକୁ ପୋତିବା ଲାଗି ଦୃଢ଼ପଣ ନେଇ ତିଆରି ହେଉ । ଆମେ ସଂସାରରେ କାହାରି କେତେ ପରିମାଣରେ ଆମ ସଂସ୍କୃତିର ପଚ୍ଚା ପଚ୍ଚା ଗିଡ଼ିକୁ ମାନିନେବା ବା

ଭାଙ୍ଗିଦେବା, ଆମ ଶିକ୍ଷାର ସଫଳତା ବା ବିଫଳତା ତାହାର ଉପରେ ନିର୍ଭର କରୁଛି । ଏରସମାରେ ଆମେ ଆଜି ମଣିଷର ଯେଉଁ ଶୋଚନୀୟ ମନୋଦଶା ଦେଖୁଛେ, ପାଠ ସାରି ସଂସାରକୁ ବାହାରି ଆମେ ବୃହତ୍ତର ସମାଜରେ ଏହିପରି ମନୋଦଶାର ସଂଘାତରେ ଆସିବା । ଆମେ ଏ ସମସ୍ତଙ୍କୁ ମାନିବା ନାହିଁ । ଏ ଧମକ ବା ନେହୁରା ହେବାକୁ ଦଣ୍ଡେହେଲେ ଆପଣା ଜୀବନରେ ସ୍ଥାନ ଦେବା ନାହିଁ । ସମାଜରେ ଆଉ ପଚିଶ ଜଣ ଯାହା କରନ୍ତୁ କି ଯାହା କହନ୍ତୁ ପଛକେ, ମୁଁ କେବେହେଲେ କାହାରି ଉପରେ ହୀନ ହାକିମୀ ଦେଖାଇବି ନାହିଁ । ମୋର ସାମାଜିକ ଦାୟିତ୍ୱର ସୁବିଧା ନେଇ କାହାରି ପ୍ରତି ମୁଁ ହୀନ ବ୍ୟବହାର କରିବି ନାହିଁ । କାହାରିକୁ ଧମକ ଦେବି ନାହିଁ କି ଡରାଇବି ନାହିଁ । ମୁଁ ଭଦ୍ର ହେବି, ନମ୍ର ହେବି । ମୋର ଦାୟିତ୍ୱ ମୋତେ ମଣିଷ ପାଖରେ ବିନୀତ ଓ ଶ୍ରଦ୍ଧାସମ୍ପନ୍ନ କରି ରଖିବ । ପୁଣି ମୁଁ କାହାରି ପାଖରେ ନେହୁରା ହେବାକୁ ଯିବି ନାହିଁ । କାହାରି ଅନୁଗ୍ରହ ଭିକ୍ଷା କରି ମେରୁଦଣ୍ଡହୀନ କାଠ ପରି ମୁଁ ଏପାଖ ସେପାଖ ଦଉଡ଼ିବି ନାହିଁ । ଆପଣାର ସୁବିଧା ହାସଲ କରିବାକୁ କାହାରି ଖୋସାମତ ମୁଁ କରିବି ନାହିଁ । ଆପଣାର ହୀନ ପରିଚୟକୁ ବିକି ଲାଭ ଉଠାଇବାର ବା କରୁଣା ଲାଭ କରିବାର ଦୁର୍ଭାଗ୍ୟ ମୋର କେବେ ହେବ ନାହିଁ । ଏ ଦେଶରେ ମଣିଷକୁ ମଣିଷର ଉଚିତ ସମ୍ମାନ ଦିଆଯାଉ ନାହିଁ । କେବଳ ଭେକକୁ ସମ୍ମାନ ଦିଆଯାଉଛି । ମଣିଷର ଭେକଟାକୁ ମୂଲ୍ୟ ଦେଇ ଦେଇ ମଣିଷ ଭିତରର ଅସଲ ପରିଚୟ ସମସ୍ତେ ଭୁଲିଗଲେଣି । ମୁଁ ମଣିଷ ଭିତରେ ଲୁଚିରହିଥିବା ମଣିଷକୁ ସମ୍ମାନ ଦେବି । ମୋ ଭିତରେ ରହିଥିବା ସମ୍ମାନିତ ମଣିଷର ମୁଣ୍ଡକୁ ମୁଁ କାହାରି ଦୁଆରେ କଦାପି ନୁଆଁଇ ଦେବି ନାହିଁ । ଏରସମାରୁ ଫେରିଗଲାବେଳେ ଆମେ ସମସ୍ତେ ଏହି ଶପଥ ନେଇକରି ଯିବା ।

୫ । ୧୦ । ୫୫

ଏ ଦେଶର ପିଲା ଏ ଦେଶରେ ସବୁଠାରୁ ଅଧିକ ହତଭାଗ୍ୟ । ଏପର୍ଯ୍ୟନ୍ତ ଦେଶରେ ବୟସ୍କର ଏକତରଫା ବିଧାନ ଚାଲିଛି । ଘରର ପିଲା ଏ ଏପର୍ଯ୍ୟନ୍ତ

ଘରର ମୁରବୀର ସମ୍ପତ୍ତି ହୋଇ ରହିଛନ୍ତି । ଘରର ଦୂଷିତ ବାୟୁମଣ୍ଡଳ, ଅସ୍ୱାସ୍ଥ୍ୟକର ଅବସ୍ଥା ପ୍ରତ୍ୟେକ ଦିନ କେତେ ପିଲାଙ୍କର ଜୀବନ ଯେ ନଷ୍ଟକରି ଚାଲିଛି, ଏପର୍ଯ୍ୟନ୍ତ ତାର ହିସାବ କେହି ରଖିବାକୁ ଚେଷ୍ଟା କରି ନାହାନ୍ତି । ଆମ ଦେଶର ସେହି ପୁରୁଣା ଅଧିକାରଲୋଭୀ ପରିବାର ଓ ଅଧିକାରଲୋଭୀ ଶିକ୍ଷକ ଏପର୍ଯ୍ୟନ୍ତ ପିଲା ଉପରେ ଅତ୍ୟାଚାର କରି ଚାଲିଛି । ପିଲାର ସ୍ୱାଭାବିକ ବିକାଶ ବିଷୟରେ କୌଣସି ଜ୍ଞାନ ନ ରଖି ପିଲା ଉପରେ ବୟସ୍କ ଜୀବନର ସଂଯମ ଓ ଶୃଙ୍ଖଳାକୁ ମଡ଼ାଇଦେବାର ଅସଂଯତ ଶାସନ ଏପର୍ଯ୍ୟନ୍ତ ଆମ ଦେଶରେ ଚାଲିଛି । ଯେ କୌଣସି ବିପଦ ଆସି ସମାଜ ଉପରେ ପଡ଼ିଲେ ଆମ ଦେଶର ପିଲା ହିଁ ସେ ବିପଦର ସବୁଠାରୁ ଶକ୍ତ ଧକ୍କା ଖାଉଛି । ବଢ଼ି, ମରୁଡ଼ି, ଭୂମିକମ୍ପ କି ମହାମାରୀ ଘୋଟିଲେ ପିଲାର ଦୁର୍ଦ୍ଦଶା ସବୁଠାରୁ ବଳିପଡ଼ୁଛି । ଢେଙ୍କାନାଳ ଜିଲ୍ଲାରେ ମରୁଡ଼ି ପଡ଼ିବାଠାରୁ ଦେଢ଼ ବର୍ଷ ହେଲା କେତେ ପାଞ୍ଚବର୍ଷିଆ ପିଲା, ଦଶବର୍ଷିଆ ପିଲା ଯେ ଦିନକୁ ଥରେ ଭାତଖାଇ ବଞ୍ଚି ରହିଛନ୍ତି, ତାର ହିସାବ ଏ ହତଭାଗ୍ୟ ଦେଶରେ କିଏ ରଖୁଛି ? ଏଠି ବଢ଼ି ଅଞ୍ଚଳରେ ଆମେ ଏତେଗୁଡ଼ିଏ ବୁଲିଲେଣି, ସବୁଠାରେ ଆମେ ଏଇ ଦୁର୍ଦ୍ଦଶାଗ୍ରସ୍ତ ପିଲାଙ୍କୁ ଦେଖିଆସିଲେ । ଲୋକଙ୍କୁ ଯେଉଁ ପଡ଼ିଚାଉଳ ହପ୍ତାକୁ ହପ୍ତା ଦିଆଯାଉଛି, ସେ ତ ବଡ଼ଙ୍କୁ ନଅଣ୍ଟୁ; ପିଲାଙ୍କ କଥା କିଏ ଦେଖିବ ? ସବୁ ଗାଆଁରେ ଲଙ୍ଗଳା ପିଲାଙ୍କର ମେଳା ଆମେ ଦେଖିଆସିଲେ । ପିଲାଙ୍କ ମୁହଁରେ ହସ ନାହିଁ, ସେମାନଙ୍କ ଆଖିରେ ଚପଳ ଦୁଷ୍ଟାମୀର କୌଣସି କାନ୍ତି ନାହିଁ । ସେମାନଙ୍କର ପାଟିରେ ଆଉ ଗାଆଁ-ଦାଣ୍ଡ କମ୍ପି ଉଠୁ ନାହିଁ । ସେଇମାନଙ୍କର ବିଷଣ୍ଣ ବଦନ ତଳେ କେତେ ବେମାରିର କାଳଚ୍ଛାଇ କ୍ରମେ ସ୍ପଷ୍ଟ ହୋଇ ଉଠିଲାଣି । ଖାଲି ମିଲ ଚାଉଳର ବଳକତେ ଭାତ ଦେଇ ଆମେ ଏ ପିଲାଙ୍କୁ ବଞ୍ଚାଇପାରିବା, ଏ ଦମ୍ଭ କିଏ ତ ଏପର୍ଯ୍ୟନ୍ତ ଆମର ଅଛି । ନିତି ଏ ଦେଶରେ ଏମିତି ବିଚାର ଚାଲିଆସିଛି । ନିତି ଏ ଦେଶର ପିଲା ଦରଖିଆ ହୋଇ ରହୁଛି । ଛିନ୍ନ ଯାଉଥିବା ଚାଉଳ ବସ୍ତା ଫୁଟାଇ ପିଲାଏ କିମିତି କଞ୍ଚା ଚାଉଳ ଚୋବାଇ ଯାଉଥିଲେ, ସେହି ବିକଳ ଦୃଶ୍ୟ ସେ ଦିନ ଆମେ ଆଖିରେ ଦେଖିଛେଁ ।

କୌଣସି ଲକ୍ଷ୍ମୀମନ୍ତ ଦେଶରେ ଏ କଥା ହୁଏ ନାହିଁ । ପିଲା କେବଳ ବାପ ମାଆଙ୍କର ନୁହନ୍ତି, ପିଲା ସମସ୍ତଙ୍କର, ପିଲା ଭଗବାନଙ୍କର । ବାପ ଧନୀ ହେଉ କି ଗରିବ ହେଉ, କୋଟିପତି ହେଉ କି କାଙ୍ଗାଳୀ ହେଉ, ସେଥିଲାଗି ପିଲାର ପୂର୍ଣ୍ଣ ବିକାଶ ଦିଗରେ ଯେପରି କୌଣସି ପ୍ରକାର ସାମାଜିକ ବାଧା ନ ରହିବ, ସେଥିଲାଗି ଆଜି ପ୍ରତ୍ୟେକ ଲକ୍ଷ୍ମୀମନ୍ତ ଦେଶ ଉଦ୍ୟମ କରୁଛି । ଫିନ୍‌ଲାଣ୍ଡ ଦେଶ ଏଥିରେ ଅନେକ ଆଗକୁ ଚାଲିଯାଇଛି । ସେଠି ବାପର ସାମର୍ଥ୍ୟ ନ ଥିଲେ ତାର ପିଲାଏ ଯେପରି ଉଚିତ ଖାଦ୍ୟ ପାଇବେ ଓ ଉଚିତ ପାଠ ପଢ଼ିବେ, ସେଥିଲାଗି ଦେଶର ସରକାର ପୂର୍ଣ୍ଣ ଆର୍ଥିକ ସାହାଯ୍ୟ କରିବେ । ବାପ ମାଆଙ୍କର ଦାରିଦ୍ର୍ୟ ପିଲାର ଜୀବନଗଠନ ଦିଗରେ ଯେପରି କୌଣସି ପ୍ରକାର ବାଧକ ହୋଇ ଠିଆ ନ ହେବ, ସେଥିଲାଗି ସବୁପ୍ରକାର ବ୍ୟବସ୍ଥା କରାଯାଇଛି । ଗ୍ରେଟିଆ ଇସ୍ରାଏଲ ଦେଶର ସାମୂହିକ ଗାଁଅମାନଙ୍କରେ ମୁଁ ସେହି କଥା ଦେଖିଆସିଛି । ଗାଁର ବୟସ୍କ ବାପ ମାଅମାନେ ହୁଏତ ଖାଲି ରୁଟି, ଲହୁଣୀ ଅଉ କଞ୍ଚା ଚାଲିଢିବାଇଗଣ ଖାଇ ରହିବେ; ତଥାପି ଗାଁର ପିଲାମାନଙ୍କର ଖାଇବା, ପିଇବା, ରହିବା ଓ ପାଠପଢ଼ିବା ଆଦର୍ଶ ପ୍ରଣାଳୀର ହେବ । ଇସ୍ରାଏଲର ପ୍ରତ୍ୟେକ ଇହୁଦୀ ବାପମାଆ ଆଜି ସେହି କଥା କହନ୍ତି । ଶହ ଶହ ବର୍ଷ ଧରି ଆମେ ସାରା ଦୁନିଆର ନୃଶଂସ ନିର୍ଯାତନା ସହିଆସିଛୁ । ବଳବାନ୍ ଶାସକମାନେ କେତେ ଦେଶରେ ଆମ କାତର କେତେ ପିଲାଙ୍କୁ ଧରି ମାରିଲେ । କେତେ ଘୃଣା ଓ ଗ୍ଲାନି ସହି ସହି ଶେଷକୁ ଆମେ ସଂସାରରେ ଅପଣାର ଦେଶଟିଏ ଗଢ଼ିବାର ସୁଯୋଗ ପାଇଲୁ । ଆମର ସବୁ ପରିଶ୍ରମର ଫଳ ଦେଇ ଆମେ ଆମ ପିଲାଙ୍କୁ ବଢ଼ାଇବୁ । ସେହିମାନଙ୍କର ଜୀବନ ସୁନ୍ଦର ହେଲେ ଆମର ଦେଶ ମଧ୍ୟ ସୁନ୍ଦର ହେବ । ଆମ ଦାରିଦ୍ର୍ୟ ଓ ଆମ ଦୁର୍ଦ୍ଦଶାର ଭାରଦ୍ୱାରା ଆମେ ପିଲାଙ୍କୁ କାହିଁକି ତ୍ରସ୍ତ କରି ରଖିବୁ ? ଏହିପରି କଥା କହୁ କହୁ କେତେ ଇହୁଦୀ ମାଆ ବାପଙ୍କର ଆଖିରେ ଅଶ୍ରୁ ଛଳଛଳ ହୋଇଆସେ, ସେ ଦୃଶ୍ୟ ମୁଁ ନିଜେ ଦେଖିଛି । ସେହି ଦେଶ ଯଥାର୍ଥରେ ଲକ୍ଷ୍ମୀମନ୍ତ । କାରଣ ସେ ଦେଶ ପିଲାଙ୍କୁ ଭଲ ପାଇଶିଖିଛି ।

ଏ ଦେଶରେ ସେହିପରି ଏକ ଲକ୍ଷ୍ମୀମନ୍ତ ସମାଜ ପ୍ରତିଷ୍ଠା କରିବାକୁ ବର୍ତ୍ତିମାନ ଅନେକ ଡେରି ଅଛି । ଆହୁରି ଅନେକ ବାଟ ଚାଲିବାକୁ ବାକୀ ଅଛି । ସେଥିଲାଗି ଶିକ୍ଷାରେ ଓ ଶାସନରେ ପରିବର୍ତ୍ତିନ ଆଣିବାକୁ ହେବ । ସେଥିଲାଗି ବୟସର ଅହଂକାର ଛାଡ଼ି ବୟସର ଦାୟିତ୍ୱକୁ ଅଧିକ ଗମ୍ଭୀର କରି ବୁଝିବାକୁ ହେବ । ଏ ଦେଶର ସବୁ ପିଲା ପୁଷ୍ଟିକର ଖାଦ୍ୟ ଖାଇବାକୁ ପାଇବେ, ପରିଷ୍କାର ପୋଷାକ ପିନ୍ଧିବେ, ସ୍ୱାସ୍ଥ୍ୟକର ଘରେ ରହିବେ, ନିର୍ଭିକ ହୋଇ ପାଠ ପଢ଼ିବେ, ନିର୍ଭିକ ହୋଇ ସେବାକରିବାର ପ୍ରଶସ୍ତ ସୁଯୋଗ ପାଇବେ । ସେହିପରି ଏକ ସମାଜ ଗଢ଼ିବାର ଦାୟିତ୍ୱ ଆମ ସମସ୍ତଙ୍କର । ଦିନେ ଆମେ ଏହି ସମାଜର ବାପମାଆ ହେବା । ସେହିଦିନ ଆମକୁ ଏ ଦାୟିତ୍ୱର ଜବାବ୍ ଦେବାକୁ ପଡ଼ିବ ।

୬ । ୧୦ । ୫୫

ଦୁଇ ବର୍ଷ ତଳେ ଠିକ୍ ଏଇ ଅକ୍ଟୋବର ୬ ତାରିଖ ଦିନ ମୁଁ ଇଉରୋପର ଭୂଇଁ ଛାଡ଼ିଥିଲି । ସେଦିନ ଜାହାଜରେ ଚଢ଼ିଲାବେଳର ଅନୁଭୂତି ଗୁଡ଼ାକ ବର୍ତ୍ତିମାନ ଠିକ୍ ଠିକ୍ ମନେ ନାହିଁ । ଇଉରୋପରେ ତିନି ବରଷ କଟାଇବା ପରେ ସେଦିନ ସେହି ପରିଚିତ ମାଟି ପାଖରୁ ବିଦାୟ ନେଇ ଆସୁଥାଏ ମୋର ଅତି ପରିଚିତ ଆଉ ଗୋଟାଏ ଦେଶର ମାଟି ଉଦ୍ଦେଶ୍ୟରେ । ଇଟାଲୀ ଦେଶର ନୀଳଶ୍ୟାମଳ ଉପକୂଳରେ ଜୀବନର ଗହଳି ଲାଗିଥାଏ । ଆଗରେ ବସୁଭିଅସ୍ ଅଗ୍ନେୟଗିରିର ଅବସନ୍ନ କାୟଟା ସମୁଦ୍ର ଆଡ଼କୁ ଅନାଇଁ ରହିଥାଏ । ଏଇ ଇଉରୋପ ମୋତେ ତିନି ବରଷ କୋଳ ଦେଇଛି । ଏଇ ଇଉରୋପର କେତେ ବାପମାଆ, ଭାଇଭଉଣୀ ମତେ ସ୍ନେହ ଦେଇଛନ୍ତି, ଘର ଦେଇଛନ୍ତି, ମୋ'ର ହୃଦୟରେ ନୂଆ ମମତାର ସଞ୍ଚାର କରିଛନ୍ତି, ବୁଦ୍ଧିରକୁ ନୂଆ ଖାଦ୍ୟ ଯୋଗାଇଛନ୍ତି । ସେଠି ସମସ୍ତେ ମିଶି ସଂକୀର୍ଣ୍ଣ ଜୀବନାୟତନକୁ କେତେ ନୂଆ ପରିଧିକୁ ବିସ୍ତାରିତ କରି ଦେଇଛନ୍ତି । ଦେଶରୁ ଅନୁକୂଳ କରି ଗଲାବେଳେ ମୋର ମନରେ କେତେ ପ୍ରକାର ଶଙ୍କା ଥିଲା । ଆଗରୁ କେବଳ

ମାନଚିତ୍ର ଓ ଭୂଗୋଳ ବହି ମଧ୍ୟଦେଇ ମୁଁ ଇଉରୋପକୁ ଜାଣିଥିଲି ।
କେବଳ ମାଷ୍ଟରଙ୍କ ମୁହଁରୁ ଇଉରୋପର କଥା ଶୁଣିଥିଲି । ସେଠିକାର ଜଳବାୟୁ
ଏମିତି, ସେଠିକାର ମଣିଷ ଅମୁକ ପ୍ରକାରେ ଖାଆନ୍ତି, ଅମୁକ ପ୍ରକାରେ
ବେଶପୋଷାକ ପିନ୍ଧନ୍ତି, ଅମୁକ ଉପଚାରରେ ସେମାନେ ଭଗବାନଙ୍କୁ ପୂଜା
କରନ୍ତି । ଏହିସବୁ ବିଷୟରେ କେତେଟା ସାଧାରଣ କଥା ମୁଁ ଜାଣିଥିଲି ।
ଆମର ସ୍କୁଲମାନଙ୍କରେ ଯେଉଁ ପରି ରୀତିରେ ଭୂଗୋଳ ପଢ଼ାଯାଏ, ସେଥିରେ
ଆଉ ଅଧିକ କ'ଣ ହୋଇପାରନ୍ତା ? ମାନଚିତ୍ର ଦେଖି ଭୂଗୋଳ ବହିରୁ
ଜାଗାମାନଙ୍କର ନାଆଁ ମୁଖସ୍ଥ କରି କରି ଆମେ କ୍ଲାନ୍ତ ହୋଇପଡୁଛୁ; ଅଥଚ
ସଂସାର ଗୋଟାକରେ କେତେ କେତେ ବିଚିତ୍ର ଜୀବନର ସୃଷ୍ଟି କରି ରହିଥିବା
ମଣିଷ ଓ ତା'ର ଆନନ୍ଦ ବିଷୟରେ ଆମେ କିଛି ଜାଣିପାରୁ ନାହିଁ । ଭୂଗୋଳ
ପଢ଼ି ମଣିଷ ସିନା ସଂସାରର ସବୁ ମଣିଷଙ୍କ ଭିତରେ ଅପଣାକୁ ଜଣେ ବୋଲି
ଭାବି ଖୁସି ହୋଇପାରନ୍ତା ! କିନ୍ତୁ ବର୍ତ୍ତମାନ ଏ ଭୂଗୋଳ ବହି ଦୋଷି
ଆମ ସମସ୍ତଙ୍କ ମନ ଭିତରେ ଦେଶଟିକେ ଫାଙ୍କ୍, ନହେଲେ ବାଙ୍କ୍
ହୋଇଯାଉଛି ।

ଭୂଗୋଳ ବହି ପଢ଼ିଥିବା ମନ ନେଇ ମୁଁ ଇଉରୋପ ଯାଇଥିଲି ।
ତିନି ବରଷ ଧରେ ସେଠିକାର ମଣିଷ ସହିତ ଏକାତ୍ମତା ଅର୍ଜନ
କରି ମୁଁ ଫେରିଲି । ସେଠି ମଧ୍ୟ ଆମ ପରି ମଣିଷ ଅଛନ୍ତି । ଠିକ୍ ଆମରି ପରି
ସେଠିକା ମଣିଷଙ୍କର ବି ସହଜାନନ୍ଦ, ଆଳି ଅଭି ଅଭିମାନର ଇତିହାସ ରହିଛି ।
ସେଠି ମଧ୍ୟ ମଣିଷର ଦୋଷ ଦୁର୍ବଳତା ରହିଛି । ସେଠି ମଧ୍ୟ ମଣିଷ ନୂଆ ନୂଆ
ଗଢ଼ିବାର ସ୍ୱପ୍ନ ଦେଖୁଛି । ନାନା ଅୟୋଜନରେ ନୂଆ ବାଟରେ ନୂଆ ଉତ୍ସାହ
ଧରି ସେ ବାହାରୁଛି । ତଥାପି ବାର ବାର ତା'ର ଅପଣା ଅହଙ୍କାର ତାକୁ
ସବୁଠାରେ ଅପଦସ୍ତ କରି ଫେରାଇଅଣୁଛି । ସେଠି ମଧ୍ୟ ପିଲା ଅଛନ୍ତି,
ସେମାନଙ୍କର ଦୁଷ୍ଟାମୀ ଅଛି, ସହଜ ଚପଳତା ମଧ୍ୟ ରହିଛି । ଏ ସବୁଥିରେ
ପରିଚିତ ହୋଇ ଯେଉଁ ଆତ୍ମୀୟତା ଅର୍ଜନ କରାଯାଇପାରିବ, ହଜାର ହଜାର
ପୋଥି ବୋଝାଇ ହୋଇଥିବା ଶଗଡ଼କୁ ଅପଣା ମସ୍ତିଷ୍କ ଭିତରେ ଜବରଦସ୍ତି
ଭର୍ତ୍ତି କଲେ ମଧ୍ୟ ତା ହୋଇପାରିବ ନାହିଁ । ବର୍ତ୍ତମାନ ଇଉରୋପ ମୋ

ଆଖିରେ କେବଳ କେତେଗୁଡ଼ାଏ ଦେଶ ବା ଜନପଦର ସମଷ୍ଟି ନୁହେଁ । କେତେଗୁଡ଼ାଏ ଅତି ପରିଚିତ ମଣିଷ ଓ ଅତି ପରିଚିତ ଅଭିଜ୍ଞତାର ଜୀବନ୍ତ ମିଶ୍ରଣରେ ସେହି ଚିନବର୍ଷର ସମୟ ମୋର ଅନୁଭୂତି ଭିତରେ ଯେଉଁ ସୁମଧୁର ମୂର୍ତ୍ତି ଗଢି ଥୋଇଦେଇଛି, ଇଉରୋପ କହିଲେ ମୁଁ ପ୍ରଧାନତଃ ସେଇଆ ବୁଝେ ।

ଆଜି ରାଜନୈତିକ ଶାସକ ଓ ସଭାପଣ୍ଡାମାନଙ୍କ ଜରିଆରେ ଅମେ ସଂସାରକୁ ଚିହ୍ନୁଛୁ । ଗୋଟାଏ ଦେଶ ଆଉ ଗୋଟାଏ ଦେଶ ସହିତ ପରିଚିତ ହେଉଛି । ଯୁଦ୍ଧ ଲଗିଲେ ଗୋଟାଏ ଦେଶର ଲୋକ ଆଉ ଗୋଟାଏ ଦେଶର ଲୋକଙ୍କର କେବଳ ସଂଘର୍ଷରେ ଆସୁଛନ୍ତି । ଏଇ ସଂଘର୍ଷ ଲାଗି କୋଟି କୋଟି ଟଙ୍କା ଖରଚ ହୋଇ ଗୁଳିବାରୁଦ ତିଆରି ହେଉଛି । ଶହ ଶହ ସ୍କୁଲ କଲେଜରେ ସହସ୍ର ପ୍ରକାରର ଘୃଣା ପ୍ରଚାର କରାଯାଇ ମଣିଷର ମନକୁ ନାନା ଦ୍ୱେଷ-ବିଦ୍ୱେଷରେ ଖଣ୍ଡ ଖଣ୍ଡ କରି ଦିଆଯାଉଛି । ଏତେ ବଡ ସଂସାରରେ ସେଥିଲାଗି ଆମେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହିଛୁ । ଏତେ ମଣିଷଙ୍କ ସହିତ ମିଳିତ ହୋଇ ରହିଥିଲେ ମଧ୍ୟ ତଥାପି ଆମେ ଏତେ ଏକୁଟିଆ ହୋଇ ରହିଛୁ । ସେ ଆମର ଦୁର୍ଭାଗ୍ୟ । ଆମ ରାଜନୀତି ଆଉ ସମାଜନୀତିର ଦୁର୍ଭାଗ୍ୟ । ସଂସାରରେ ଆଜି ପଢ଼ିଆ ଅଛି, ବିଜ୍ଞାନର ଚମତ୍କାର ସାଧନ ଆମ ହାତରେ ଅଛି; ତଥାପି ଆମର ମନରୁ ଏପର୍ଯ୍ୟନ୍ତ କଲିଙ୍କି ଲୁହାର ଗୁହଗୁଡ଼ାକ ପୋତି ହୋଇ ଯାଇ ନାହିଁ । ଯଦି ଗୋଟାଏ ଦେଶର ପିଲା ଆଉ ଗୋଟାଏ ଦେଶକୁ ଯାଇ ସବୁକଥା ଆଖିରେ ଦେଖିପାରୁଥାନ୍ତେ, ଗୋଟାଏ ଦେଶର ମାଆମାନେ ଯଦି ଗୋଟାଏ ଦେଶର ମାଆମାନଙ୍କର ଦରକଜରଣାରେ ଭାଗୀ ହୋଇ-ପାରୁଥାନ୍ତେ, ଗୋଟାଏ ଦେଶର ଗୃହୀ ଯଦି ଆଉ ଗୋଟାଏ ଦେଶର ଗୃହୀ ଘରେ ଅବାଧରେ କୁଣିଆ ହୋଇ ପାରୁଥାନ୍ତେ, ତେବେ ଆମ ପୃଥିବୀରୁ ଅନେକ ବିଦ୍ୱେଷ, ଅନେକ ଘୃଣା ଦୂର ହୋଇଯାଆନ୍ତା; ଆମ ପୃଥିବୀ ବଞ୍ଚିବା ଲାଗି ଅଧିକ ଯୋଗ୍ୟ ହୋଇପାରନ୍ତା । ପଢ଼ିଆ, ପାଠ ଆଉ ପାଣ୍ଡିତ୍ୟ ଖର୍ଚ୍ଚକରି ଗୋଟାଏ ଘୃଣା ବା ଅତ୍ୟାଚାରକୁ ଦୂରକରିବା ଲାଗି ଆଉ ନୂଆ ଘୃଣା ଓ ନୂଆ ଅତ୍ୟାଚାରକୁ ସାରି ଦେଇ ବଢାଇବା ଦରକାର ହୁଅନ୍ତା ନାହିଁ ।

୭ । ୧୦ । ୫୫

ଚିରଦିନ କ'ଣ ଏ ଦେଶରେ ଦଳେ ଲୋକଙ୍କର ମସ୍ତ ଅତ୍ୟାଚାର ଚାଲିଥିବ ? ଚିରଦିନ କ'ଣ ଲକ୍ଷ ଲକ୍ଷ ମଣିଷଙ୍କୁ ନେଇ ଦଳେ ଲୋକ ଏକା ଅପମାନଜନକ ତାମସା ଲଗାଇଥିବେ ? ଆମେ କିପରି ଏସବୁ ସହିକରି ରହିଛୁ ? ଏ କଥା ଭାବି ମୁଁ କେବଳ ଆଶ୍ଚର୍ଯ୍ୟ ହୁଏ । ଆମ ଦେଶରେ ବ୍ରହ୍ମବିଦ୍ୟା ଓ ବ୍ରହ୍ମଜିଜ୍ଞାସାର ଗର୍ବ ଆମେ ଅନେକ ସମୟରେ କରିଥାଉ । ମହା ପଣ୍ଡିତମାନେ ଅନେକ ସମୟରେ ଆଧ୍ୟାତ୍ମିକ ଶାସ୍ତ୍ରମାନଙ୍କରୁ ଉତ୍ତେଜନାପୂର୍ଣ୍ଣ ଦୃଷ୍ଟାନ୍ତମାନ ଉଦ୍‌ଗାରି ଭାରତୀୟ ବିଦ୍ୟା ଓ ଭାରତୀୟ ଧର୍ମକୁ ପୃଥିବୀରେ ସବୁଠାରୁ ବଢିଆ ବୋଲି ପ୍ରମାଣ କରନ୍ତି । ସେମାନଙ୍କର ଉତ୍ସାହକୁ ଅନେକ ସମୟରେ ମୁଁ ସନ୍ଦେହ କରେ । ମଣିଷ ଭିତର ଦେଇ ଧର୍ମମୟ ଜୀବନ ଓ ଭଗବାନଙ୍କ ପାଖକୁ ସିଧା ବାଟ ପଡ଼ିଛି । ଯୋଉ ସଂସ୍କୃତିରେ ମଣିଷକୁ ଆଜି ଏତେ ହୀନମାନ କରି ରଖାଯାଇଛି, ଯୋଉଠି ମଣିଷ ଅତି ଦୀନ କରୁଣାର ଯୋଗ୍ୟହୋଇ ଯେ କୌଣସି ପ୍ରକାରେ କେବଳ ପାକସ୍ଥଳୀର ଯନ୍ତ୍ରଗୁଡ଼ାକୁ ଚାଲୁ ରଖିବାକୁ ହନ୍ତସନ୍ତ ଉଦ୍ୟମ କରୁଛି, ସେ ସଂସ୍କୃତିର ଧର୍ମକୁ ମୁଁ କେମିତି ବଢିଆ ବୋଲି କହିବି ? କେମିତି ମୁଁ ଏହି ଦେଶର ଅସ୍ପଷ୍ଟ ଅତୀତଟାକୁ ସ୍ତୁତି କରି କରି ବର୍ତ୍ତମାନର ଅଗୌରବଗୁଡ଼ାକୁ ଭୁଲିଯାଇପାରିବି ?

ଏବେସମାରେ ଦଶ ବାଟଟା ଦିନ କଟାଇ ଆମେ ଆଖି ଆଗରେ ଏହି ଅଗୌରବମାନ ଦେଖୁଛେ । ନିତି ଏଠି ଉପାସୀ ମଣିଷର କେହୁରୀ ଆମେ ଶୁଣୁଛେ । କ୍ଷେତ୍ରରେ ଅକ୍ଷେତ୍ରରେ ଯୋଗ୍ୟ ଅଯୋଗ୍ୟ କେତେ ବାବୁଙ୍କୁ ଅନୁସରଣ କରି କେତେ ଅଧଖିଆ ଅଧଲଙ୍ଗଳା ଏଠି ନିତି ଦଉଡ଼ୁଛନ୍ତି । କଣା, କୁଜା, ଲେଙ୍ଗଡ଼ା, ଖ୍ତେଟା ଆଉ କୁଷ୍ଠରୋଗୀଙ୍କର ଏକା ବିକଟ ଶୋଭାଯାତ୍ରା ଏ ଦେଶର ଲକ୍ଷ୍ମୀଭାଣ୍ଡରେ ନିତି ଚାଲିଛି । ଯେ କୌଣସି ତୀର୍ଥସ୍ଥାନକୁ ଗଲେ ଆମେ ଦେଖିବା, ଆପଣାର ବିକଳ ବିକୃତ ଶରୀରଟାକୁ ଦେଖାଇ ପେଟକୁ ମୁଠାଏ ଦାନା ଯୋଗାଇବାକୁ ମଣିଷ କି ଅପଚେଷ୍ଟା ଲଗାଇଛି । ଆଉ ଆମ ଶାସ୍ତ୍ରରେ ଏହି ଶରୀରକୁ ଦେବାଳୟ ବୋଲି କୁହାଯାଉଛି । ଦେବାଳୟ ତ

ଦୂରର କଥା, ଏ ଦେଶର ମଣିଷ-ଜୀବନ ସମସ୍ତ ଦେବତ୍ୱର ବହୁ ଦୂରକୁ ହଟି-ଗଲାଣି। ଖାଲି ଲକ୍ଷ ଲକ୍ଷ ଦାନାଗିଲା କାଙ୍ଗାଳ ଏଠି ବାର ଉପାୟରେ ଖାଦ୍ୟ ଖୁଣ୍ଟି ଖୁଣ୍ଟି ବାହାରୁଛନ୍ତି। ଦେଶର ଅନେକ ଲୋକଙ୍କୁ ଏ କଥା ଅସହ୍ୟ ବୋଲି ବୋଧ ହେଉ ନାହିଁ। କାଲି ଗୋଟିଏ ପିଲାକୁ ମୁଁ ଯେଉଁପରି ଅବସ୍ଥାରେ ଦେଖିଲି, ସେହି ସ୍ମୃତି ଏପର୍ଯ୍ୟନ୍ତ ମୋ ଭିତରେ ଭୂତ ହୋଇ ରହିଛି। ଖୁବ୍ ବେଶି ହେଲେ ତା'ର ବୟସ ଛ'ସାତରୁ ଅଧିକ ହେବ ନାହିଁ। ପ'ରଦିନ ଜଳଖିଆ ଖାଇଲାବେଳେ ଆମେ ତାକୁ ଛଅ ଚକଟାରୁ ଟିକିଏ ଦେଇଥିଲୁ। କାଲି ଠିକ୍ ସେହି ସମୟକୁ ଆସି ପହଞ୍ଚିଲା। ଆମେ ତ କାଲି ଜଳଖିଆ ଖାଇଲୁ ନାହିଁ। ତଥାପି—ଭୋକିଲା ପେଟର ଧୈର୍ଯ୍ୟ ଅନେକ—ପିଲାଟି ପିଣ୍ଡା ଉପରେ ସେମିତି ବସି ରହିଥାଏ। ଆମର ଜଣେ ଭାଇ ଘର ଓଳାଇ ତଳକୁ ଝାଟୁଆ ଫୋପାଡ଼ିଦେଲେ। ହଠାତ୍ ମୁଁ ଯାଇ ଦେଖିଲି ପିଲାଟି ସେହି ଝାଟୁଆ ଭିତରୁ ହରଡ଼ ଡାଲିର ଫାଳମାନ ଖୁଣ୍ଟି କରି ଖାଉଛି। ଅତି ନିର୍ବିକାର, ନିଃସଙ୍କୋଚ ଭାବରେ ସେ ଏ କଥା କରୁଛି। ମୋର ସବୁ ଶକ୍ତି ଓ ଶିକ୍ଷିତପଣିଆ ସେଇଠି ଲଜ୍ଜିତ ହୋଇଗଲା। ପ୍ରତ୍ୟେକ ଦିନ ଆମ ଦେଶରେ କେତେ ଜାଗାରେ କେତେ ପିଲା ବୁଢ଼ା ଆଉ କୋଡ଼ୀ ମଣିଷ ଏମିତି ଦାନା ଖୁଣ୍ଟି ଖାଉଛନ୍ତି; ତଥାପି ଆମେ ନିର୍ଲଜ୍ଜ ଭାବରେ ଆମର ସଭ୍ୟତା ଓ ସଂସ୍କୃତିର ଆସ୍ଫାଳନ କରିଚାଲିଛେଁ।

ଏହାର କାରଣ ଅଛି। ଯଥାର୍ଥ ଅନୁଭବ କରିବାର ଯୋଗ୍ୟତା ଚାଲିଗଲେ ମଣିଷର ଏହି ଦଶା ହୁଏ। ବହିରେ ଆମେ ଧର୍ମକଥା ପଢ଼ୁ। ପଣ୍ଡିତ ପାଖରୁ ଶାସ୍ତ୍ର ପୁରାଣ ଓ ଶୁଦ୍ଧ ଜୀବନ ବିଷୟରେ ଆମେ ବକ୍ତୃତାମାନ ଶୁଣୁ। ସେ ଖାଲି ଆମର ବୁଦ୍ଧି ବିଳାସର ବିଷୟବସ୍ତୁ ହୋଇ ରହେ। ଆମର ହୃଦୟ ତଳେ ଏସବୁ ସଦ୍‌ଜ୍ଞାନର ଆଘାତ ଓ ଆହ୍ୱାନ ବାଜିପାରେ ନାହିଁ। ଏହି ଦନ୍ତୁରି ଜୀବନର ଦୁର୍ଦ୍ଦଶା ଆମେ ସମସ୍ତେ ଭୋଗ କରୁଛୁ। ସମସ୍ତେ ଆମେ ଦୁଃଖ ଦେଖୁଛୁ; ତଥାପି ଏହି ଭୁବନବ୍ୟାପୀ ଦୁଃଖର ଯଥାର୍ଥ ଅନୁଭବ କରିବା ଲାଗି ଆମର ହୃଦୟ ନାହିଁ। ଆମେ ଶାସ୍ତ୍ର ପୁରାଣର ସତ କଥାମାନ ମୁଖସ୍ଥ କରି ଏଣେ ତେଣେ ଗାଇ ବୁଲୁଛୁ। ତଥାପି ଏସବୁ କଥାର ଗମ୍ଭୀରତା

ଅମେ ଅନୁଭବ କରିପାରୁ ନାହୁଁ । ଆମର ବେଶପୋଷାକ ପରି ଆମର ଧର୍ମ ଓ ସଭ୍ୟତା ମଧ୍ୟ ଆମ ପୋଷାକୀ ଜୀବନର ମୟୂରପୁଚ୍ଛ ହୋଇ ରହିଛି । ଅମ ଇତିହାସରେ ହୁଏତ ଚିରଦିନ ଏହି ଅଭ୍ୟାସଟା ପ୍ରଧାନ ହୋଇ ରହିଆସିଛି । ମଝିରେ ମଝିରେ ଅବଶ୍ୟ ଜଣେ ଜଣେ ବିଦ୍ରୋହୀ ମଣିଷ ସଂସ୍କୃତିର ଆବଦ୍ଧ ଜଳାଶୟକୁ ମଝି ଚକଟି ଦେଇଛନ୍ତି । କିନ୍ତୁ ପ୍ରଧାନତଃ ଆମେ ମଣିଷକୁ ଅସ୍ୱୀକାର କରିଆସିଛୁ, ମଣିଷର ଅସମ୍ମାନ କରିଆସିଛୁ, ମଣିଷ ଜନ୍ମର ଆଧ୍ୟାତ୍ମିକ ମର୍ମକୁ ଆମେ ଯଥାର୍ଥ ଅନୁଭବକରି ପାରିନାହୁଁ । ସେଥିଲାଗି ଏତେ ଦୀନତା ଓ ଦୁର୍ଦ୍ଦଶାରେ ଏ ଦେଶର କୋଟି କୋଟି ମଣିଷ ବିବଶ ହୋଇ ପଡ଼ିଛନ୍ତି । ତଥାପି ଆମେ ତାକୁ ଆମର ନିଜ ବୋଲି ଅନୁଭବ କରିପାରୁ ନାହୁଁ । ଅମର ଜଙ୍ଗଲ ସ୍କୁଲଗୁଡ଼ି ଆମେ ଖାଲି ଦରିଦ୍ର କାଙ୍ଗାଳକୁ ଦୟା ଦେଖାଇବାକୁ ଏଠିସମାକୁ ଆସି ନାହୁଁ, ଏଠି ଅମେ ଅନୁଭବ କରିବାର ମହାନ୍ ଶକ୍ତି ଅର୍ଜନ କରିବା । ଦାନା ଚୂନ୍କି ଖାଉଥିବା ଏ ନଅ ବରଷର ପିଲାଟି ଭିତରେ ଯେଉଁ ପ୍ରାଣ ରହିଛି, ମୋ ଭିତରେ ମଧ୍ୟ ସେହି ପ୍ରାଣ । ସେହି ପ୍ରାଣଟିର ବଞ୍ଚି ରହିବା ଲାଗି ଆମେ ସମସ୍ତେ ଦାୟୀ, ମୁଁ ନିଜେ ଦାୟୀ—ଏହି ଏକାତ୍ମତାର ଅନୁଭୂତି ଏଠୁ ଅମେ ସମସ୍ତେ ନେଇକରି ଯିବା ।

୮ । ୧୦ । ୪୭

ଖାଲି ଜାଣିବାରେ ଶିକ୍ଷାର ଶେଷ ହେବା ଉଚିତ ନୁହେଁ । ନାନା ଶାସ୍ତ୍ରର ନାନା କଥା ମୁଖସ୍ଥକରି ରଖିବାରେ ଶିକ୍ଷାର୍ଥୀ ସନ୍ତୁଷ୍ଟ ହୋଇଯିବା ଉଚିତ ନୁହେଁ । 'ନମେଧୟା ନ ବହୁନା ଶ୍ରୁତେନ' । ଆମକୁ ଅନୁଭବକରି ଶିଖିବାକୁ ହେବ । ଅନୁଭବ କରିପାରିଲେ ଶିକ୍ଷା ନିଜ୍ୟରେ ଲବ୍ଧଜ୍ଞାନ ଅମକୁ ସାରା ବିଶ୍ୱ ସହିତ ସମ୍ମିଳିତ କରିଦେବ । ସଂସାରରେ ଆଜି ଜାଣିବାର ଅଭାବ ନାହିଁ । ଜ୍ଞାନର ପରିଧି ଆଜି ଚାରି ବାହୁରେ ବଢ଼ିଗଲାଣି । କ୍ଷୁଦ୍ରାତିକ୍ଷୁଦ୍ର କୀଟାଣୁର ସଂସାରଠାରୁ ଆରମ୍ଭକରି ଆନ୍ତର୍ଜାତିକ ବାଣିଜ୍ୟ ଓ ବ୍ୟବସାୟର କେତେ କଥା ଅମେ କେତେ ଜଣ ଅରେ ଜାଣିଛୁ । ଆମ ଭୂଗୋଳ ବହିରୁ ଆମେ କେତେ ଦେଶ ମହାଦେଶର କଥା ଜାଣିଛୁ । ବୟସ୍କ ଲୋକମାନଙ୍କଠାରୁ ସାମାଜିକ

ନୀତି ଅନୀତିର କଥା ଜାଣୁଛୁ । ଶାସ୍ତ୍ର ପୁରାଣରୁ ଧର୍ମକଥା ଜାଣୁଛୁ । ଖବର କାଗଜ ଓ ସଭା ସମିତିରୁ ରାଜନୀତି କଥା ଜାଣୁଛୁ । ଇଉରୋପର କଥାତ ଛାଡ଼ିଦିଅ । ସେଠି ମଣିଷ ଲାଗି ଜାଣିବା ଓ ଜଣାଇବାର ଏତେ ଏତେ ସାଧନ ସାମଗ୍ରୀ ରହିଛି ଯେ ଯେତେ ଅନାଗ୍ରହୀ ବା ଅନ୍ୟମନସ୍କ ହେଲେ ମଧ୍ୟ ମଣିଷ ଏହି ଜ୍ଞାନର କୋଠରେ ପୋତିହୋଇ ପଡ଼ୁଛି । କିନ୍ତୁ ସଂସାରର ମଣିଷ ଯେତିକି ବେଶୀ ବେଶୀ ଜାଣୁଛି, ତାର ଅନୁଭବ କରିବାର ଆଗ୍ରହ ସେତିକି ସେତିକି କମିଯାଉଛି । ତା'ର ଅନ୍ତରର ଗ୍ରହଣ-ପ୍ରବଣତା ସେତିକି ମରି ମରି ଯାଉଛି । ସେଥିଲାଗି ଆମ ପାଖରେ ଦୁଃଖ ଦୂର କରିବାର ଏତେ ସାଧନ ରହିଛି, ଅଥଚ ଆମେ ସଂସାରରୁ ଦୁଃଖ ଦୂର କରିପାରୁ ନାହୁଁ । ଆମ ପାଖରେ ଶାନ୍ତିର ସାଧନମାନ ରହିଛି, ଅଥଚ ଏ ସଂସାରରେ ଶାନ୍ତି ନାହିଁ । ଆମର ବ୍ୟକ୍ତିଗତ ଜୀବନରେ ବି ଶାନ୍ତି ନାହିଁ । ଆମର ପ୍ରତ୍ୟେକ ପୂର୍ଣ୍ଣମସ୍ତିଷ୍କ ପଣ୍ଡିତମାନେ ଆମ ଆଗରେ ଗାଡ଼ି ଗାଡ଼ି ପୋଥି ଜମାକରି ଚାଲିଛନ୍ତି; ତଥାପି ଆମ ଜୀବନରେ ଶୁଦ୍ଧତା ନାହିଁ, ଆମର ବ୍ୟବହାରରେ କୁଶଳତା ନାହିଁ, ଆମର କାର୍ଯ୍ୟରେ ନିଷ୍ଠା ନାହିଁ । ଖାଲି ମଣିଷର ମଥାକୁ ମଣ୍ଡି ହଜାର ପ୍ରକାରର ଜ୍ଞାନସାମଗ୍ରୀରେ ମଣିଷର ବାହାର ଓ ଜୀବନକୁ ଗୋଳିଆ କରି ରଖିବାକୁ ଯେଉଁ ଶିକ୍ଷା ଆଜି ଆପଣାର ଏକମାତ୍ର ପ୍ରଧାନ କାମ ବୋଲି ଧରିନେଇଛି, ସେ ଶିକ୍ଷାକୁ କେବଳ ଅଧମ ଶିକ୍ଷା ବୋଲି କହିବାକୁ ହେବ । ସେ ଶିକ୍ଷା କୋଠାମାନରେ କୋଡ଼ି କୋଡ଼ି ହାକିମ ଚପରାସୀଙ୍କଦ୍ୱାରା କୋଡ଼ି କୋଡ଼ି କାଗଜ ମଞ୍ଜୁରହୋଇ ଦିଆ ଯାଉଥିଲେ ମଧ୍ୟ ତାକୁ କେବଳ କୁଶିକ୍ଷା ହିଁ କହିବାକୁ ହେବ ।

ଆମର ଜାଣିବା ଆମର ଅନୁଭବ କରିବାର ସହାୟକ ହେଉ । ଜ୍ଞାନ ସେତୁ ପରି ହୋଇ ଆମର ଜୀବନକୁ ଚରାଚର ବ୍ରହ୍ମାଣ୍ଡର ଜୀବନ ସହିତ ସମ୍ମିଳିତ କରିଦେଉ । ଧର୍ମ, ଅର୍ଥନୀତି, ରାଜନୀତି ପ୍ରଭୃତି ଯାବତୀୟ ଶାସ୍ତ୍ରରେ ଜ୍ଞାନ ଅର୍ଜନ କଲାବେଳେ ଆମେ ଯେପରି ମଣିଷ ପରି ଅନୁଭବ କରିଶିଖୁ । ମଣିଷକୁ ନେଇ ଏ ସଂସାରର ରାଜନୀତି ଓ ଅର୍ଥନୀତି ଚାଲିଛି । ମଣିଷର ଦୁଃଖ ସୁଖ, ଜୀବନ ମରଣକୁ ଗୋଟିଏ ସୂତ୍ରରେ ସମ୍ମିଳିତ କରି ଧରି ଧର୍ମର

ବିକାଶ ହୋଇ ଚାଲିଛି । ଖାଲି ହାଟ ବଜାର ବା ସମ୍ବାଦପତ୍ରକୁ ଜାଣିଗଲେ ଅର୍ଥନୀତି ବା ରାଜନୀତିକୁ ଜାଣିହେବ ନାହିଁ । ଭଗବାନ ଓ ଭେକ ବିଷୟରେ କେତେଟା ସହଜ ସଂଜ୍ଞାକୁ ସଜାଇ କହିପାରିଲେ ମଣିଷ ଧର୍ମଜ୍ଞାନୀ ହୋଇପାରିବ ନାହିଁ । ସବୁର ଜ୍ଞାନ ପଛରେ ନିହିତ ଥିବା ସୂତ୍ରଟିକୁ ଆମକୁ ଜାଣିବାକୁ ହେବ । ସବୁର ଜ୍ଞାନ ପଛରେ ନିହିତ ଥିବା ମଣିଷକୁ ଆମକୁ ଜାଣିବାକୁ ହେବ । ଆଉ ମଣିଷକୁ ଜାଣିବାକୁ ହେଲେ, ସମ୍ୟକ ଭାବରେ ଜାଣିବାକୁ ହେଲେ ମଣିଷକୁ ଅନୁଭବ କରିବାକୁ ହେବ । ଭୌତିକ ଦୃଷ୍ଟିରୁ ଦେଖିଲେ ପାଣି, ଗନ୍ଧକ, ଲୌହ ପ୍ରଭୃତି କେତେକ ରାସାୟନିକ ଓ ଧାତବ ପଦାର୍ଥ ଛଡ଼ା ମଣିଷ କିଛି ନୁହେଁ । ଶାସକର ଦୃଷ୍ଟିରୁ ଦେଖିବାକୁ ଗଲେ ମୁଣ୍ଡଗଣତିରେ ସାମିଲ ହେବାର ସଂଖ୍ୟା ଛଡ଼ା ମଣିଷ ଆଉ କିଛି ନୁହେଁ । କିନ୍ତୁ ଥରେ ଯେତେବେଳେ ଆମେ ମଣିଷକୁ ଅନୁଭବ କରି ଶିଖିବା, ସେତେବେଳେ କି ବିପୁଳ ସାମ୍ରାଜ୍ୟର ଆବିଷ୍କାର ଆମେ ନ କରିବା ! ମଣିଷର ଦୁଃଖ, ସୁଖ, ହସ, କାନ୍ଦ ସବୁ ଗୋଟିଏ ଗୋଟିଏ ବହୁମୂଲ୍ୟ ବିଦ୍ୟା ପରି ଆମର ଅନ୍ତର ଭିତରେ ସାଇତା ହୋଇ ରହିବ ।

ମଣିଷର ବିପଦକୁ ମଧ୍ୟ ଆମେ ସମ୍ୟକ ଭାବରେ ଅନୁଭବ କରି ଶିଖିବା, ଏଠି ଆମ ଚାରିପାଖରେ ଆମେ ବିପନ୍ନ ମଣିଷର ଭଙ୍ଗା ସଂସାର ଭିତରେ ରହିଛେ। ନିତି ଅମେ ବିପନ୍ନ ଜୀବନର ଦୀନତା ଓ ହୀନତାର ମୁହାଁମୁହିଁ ସମ୍ପର୍କରେ ଆସୁଛେ । ଖାଲି କାଗଜ କଲମରେ କ୍ଷତିର ହିସାବଟା ଟିପିନେଇ ଚାଲିଗଲେ ବା ଭୋକିଲା ମଣିଷର ପଲକୁ ମୁଠି ଜି ଚାଉଳ ଗଣ୍ଡାଏ ବାଣ୍ଟିଦେଲେ ଆମର କାମ ସରିଯିବ ନାହିଁ । ଆମେ ଶିକ୍ଷାର୍ଥୀ, ଆମ ମଣିଷର ବିପଦକୁ ଆପଣା ଅନ୍ତରରେ ଅନୁଭବ କରି ଶିଖିବା । ଏଠିକା ମଣିଷର ଦୁଃଖକୁ ଆମର ହୃଦୟ ଭିତରେ ଅମେ ଚିରସ୍ଥାୟୀ ସମ୍ପଦ କରି ସାଇତି ନେଇଯିବା । ତେବେ ଏ ଦୁର୍ଦ୍ଦିନରୁ ଆମେ ଅନେକ ଶିକ୍ଷା ପାଇବା । ଆଜିକାର ଅନୁଭୂତି ଓ ଦୁଃଖ ଆମର ଜୀବନକୁ ଅନେକ ଉଜ୍ଜ୍ୱଳ କରିଦେଇପାରିବ ।

୯ । ୧୦ । ୪୪

ସେଦିନ ଅଳିଆ ଭିତରୁ ଡାଲିର ଫାଳ ଟିକିଏ ଗୋଟେଇ ପିଲା ଖାଉଥିଲା, ସେ ଆମ ଦେଶରେ ଖାଲି ଏକା ନୁହେଁ, ଏ ଦେଶରେ ଆଉ ପୃଥିବୀର ଅନ୍ୟ ଅନେକ ଦେଶରେ ଅନେକ ଦରିଦ୍ର ଘରେ ଏମିତି ଅନେକ ପିଲା ଅଛନ୍ତି । ଅନେକ ପିଲାଙ୍କର ପୁଣି ମୋଟେ ଘର ନାହିଁ । କେତେ ବରଗଛ ତଳେ, ସହରର ଘୋଡ଼ାଗାଡ଼ି ଷ୍ଟାଣ୍ଡମାନଙ୍କରେ, ଷ୍ଟେସନ ମୁସାଫିରଖାନାରେ ସଂସାରରେ କେତେ ପିଲାଙ୍କର ଦିନରାତି କଟୁଛି, ଜୀବନ ସରୁଛି । 'କେତେ କେତେ ଥର ଆମେ ଗ୍ରେଟ ପିଲାଙ୍କୁ ବାବୁମାନଙ୍କର କେତା ସଫା କରି ଦି'ପଇସା ରୋଜଗାର କରିବାର ଦେଖିଛୁ । ଗ୍ରେଟିଆ ଷ୍ଟେସନମାନଙ୍କରେ ହୁଏତ କେତେ ଥର ଆପଣା ବୋଝଗୁଡ଼ାକୁ ଆମେ ଅତି ଗ୍ରେଟ ପିଲାଟିର ମୁଣ୍ଡକୁ ଟେକିଦେଇଛୁ । ଦୁଇ ଅଣା ବା ଅଣା ପଇସା ଦେଇ ଆମର କର୍ତ୍ତବ୍ୟ ଆମେ ଶେଷ କରିଦେଇଛୁ । ଆମର ବୟସର ଅନେକ ପୁଅ ଝିଅ ଏ ଦେଶରେ ଅଛନ୍ତି । ଆମେ ଯେତେବେଳେ ଖାଇ ପିଇ ଧୀରେସୁସ୍ଥେ ପାଠ ପଢ଼ିବସୁଛୁ, ସେତିକିବେଳେ କେତେ ଗାଆଁ ଆଉ କେତେ ସହରର କେତେ ଯୁବକ ବିଲରେ ଧାନ ବାଛୁଛନ୍ତି । କୌଣସି ମହାଜନର କୋଠିଆ ହୋଇ ଧାନ ମାପୁଛନ୍ତି, ଷ୍ଟେସନରେ କୁଲିକାମ କରୁଛନ୍ତି ବା ଭଜନ ଗାଇ ବୁଲୁଛନ୍ତି । ଦେଶ କହିଲେ, ଦେଶର ଯୁବକ କହିଲେ, ଆମ ସମସ୍ତଙ୍କୁ ବୁଝାଇବ । ହୁଏତ ଏ ଯୁଗର କୁବ୍ୟବସ୍ଥାର ଫଳରେ ଆମେ କେତେ ଜଣ ଏ ଦେଶର ଗେହ୍ଲାପୁଅ ହୋଇ ପାଠ ପଢ଼ୁଛୁ, ଆଉ ଭଲ ଲୁଗା ଭଲ କାମିଜ ଝଣ୍ଡେ କରିବାର ସଉକ କରୁଛେ । କିନ୍ତୁ କେବଳ ଆମକୁ ନେଇ ଏ ଦେଶ ଗଢ଼ା ହୋଇ ନାହିଁ । ଆମର ପରି ହଜାର ହଜାର ଯୁବକ କୌଣସି ସ୍କୁଲ କଲେଜର ଦୁଆର ମାଡ଼ି ନ ଥିଲେହେଁ ଏହି ଦେଶର ଧର୍ମ, ନ୍ୟାୟ ଓ ଶାସନକୁ ନିୟନ୍ତ୍ରିତ କରୁଛନ୍ତି । ପାଠ ପଢ଼ିଲାବେଳେ ଭଲ ଖାଇ ଭଲ ପିନ୍ଧିବାର ସୁଖୀ କଳ୍ପନା କଲାବେଳେ କେତେ ଦୂର ଆମେ ଏସବୁ ବିଷୟରେ ସଚେତ ରହୁ, ସେକଥା ମୁଁ କହିପାରିବି ନାହିଁ । ଯଦି ଏ ଦେଶରେ ବା ଏ ସଂସାରରେ ଧର୍ମ ଓ ନ୍ୟାୟ ନୀତିର ବ୍ୟବସ୍ଥା ଚାଲୁଥାନ୍ତା, ଯଦି ସବୁ ମଣିଷକୁ ଏ ଆକାଶ ତଳେ ଉଚିତ ସମ୍ମାନ

ମିଳୁଥାନ୍ତା, ତେବେ ମୋର ଯେତିକି ଅଧିକାର ଅଛି, ଆଜି ଗାଈ ମଇଁଷି ଚରାଉଥିବା ଗାଈଆଳ ଟୋକାର ସେତିକି ଅଧିକାର ଥାନ୍ତା । ମୁଁ ଯେମିତି ଖାଇ ପିଇ ପାଠ ପଢ଼ି ଫେରୁଛି, ଶୀତ ରାତିରେ ପ୍ଲାଟଫର୍ମ ଉପରେ ଯିଏ କୁଲି କାମ କରି ବୁଲୁଛି, ସେ ମଧ୍ୟ ପାଠ ପଢ଼ି ଆପଣା ଯୋଗ୍ୟତାର ପ୍ରମାଣ ଦେବାର ଅଧିକାର ପାଇଥାନ୍ତା । ମୁଁ ଯେମିତି ସଫା ପୋଷାକ ପିନ୍ଧି ଆପଣାକୁ ଭଦ୍ର କରିପାରୁଛି, କାଦୁଅ ପାଣିରେ ଜୁଡ଼ୁବୁଡ଼ୁ ହୋଇ ଧାନ ବିଲରେ ପଡ଼ିଥିବା ଏ ଦେଶର ପ୍ରତ୍ୟେକ ପୁଅଝିଅର ମଧ୍ୟ ସେହି ଅଧିକାର ଥାଆନ୍ତା । ଅଧର୍ମ ଆଉ ଅବିଚାରରେ ଅନେକ ଦିନରୁ ଅଭ୍ୟସ୍ତ ହୋଇ ରହିଥିବାରୁ ଆମେ ହଠାତ୍ ସେ କଥା ବୁଝିପାରୁନୁ । ମୋରି ପରି ପ୍ରତ୍ୟେକ ମଣିଷ ତା'ର ଅଧିକାର ପାଇବ, ସଂସାରରେ ଆପଣାର ଜୀବନକୁ ସୁନ୍ଦର ଓ ସୁସ୍ଥ କରି ଗଢ଼ିବାର ଅଧିକାର ଅବଶ୍ୟ ପାଇବ । ଅନ୍ଧ ସଂସ୍କୃତିର ମୋହ-ଜାଲରେ ପଡ଼ି ଏକଥା କହିବାର ସାହସ ଆମେ ହରାଇବସିଛୁ । ଆମ ଦେଶର ପାଠ ଆମକୁ ଅମଣିଷ ହେବାରେ ଅନେକ ସାହାଯ୍ୟ କରିଛି । ଜୀବନର ସମସ୍ତ ଧର୍ମ ଓ ସମସ୍ତ ନ୍ୟାୟ-ଭାବନାକୁ ପାଠ, ବହି, ପରୀକ୍ଷା ଓ ଟେବୁଲ ଚଉକି ଭିତରେ ବନ୍ଦ କରି ରଖି ଏ ସମାଜର ଶିକ୍ଷା ଆମ ଭିତରର ମଣିଷକୁ ମାରି ମାରି ଚାଲିଛି । ପଣ୍ଡିତ ଆଉ ପାଠୁଆକୁ ପଇସା ଦେଇ ପୋଷିବାର ମୂଢ଼ ଭାବନାର କବଳରେ ପଡ଼ି ଆମେ ପ୍ରତ୍ୟେକ ମଣିଷକୁ ମଣିଷ ବୋଲି ଆଉ ଚିହ୍ନିପାରୁ ନାହୁଁ ।

ଆଗାମୀ କାଲି ଏ ସମାଜକୁ ଭାଙ୍ଗି ନୂଆକରି ଗଢ଼ିବାର ବିଦ୍ରୋହୀ ତିଆରି କରିବା ଲାଗି ଆମର ଏ ବିଦ୍ୟାଳୟ କ୍ଷୁଦ୍ର ଶିଶୁ ହୋଇ ଜନ୍ମଲାଭ କରିଛି । ଶିଶୁଟି ଯେତେ କ୍ଷୁଦ୍ର ହେଉ ପଛକେ, ଏହାର କ୍ଷୁଧା ମହାନ୍ ହୋଇ ରହିଥାଉ । ଦେଶର ସରକାର ବଦଳାଇବାକୁ ସାଧାରଣତଃ ଯେଉଁ ବିଦ୍ରୋହ ହୁଏ, ସମାଜ ବଦଳାଇବାର ବିଦ୍ରୋହ ତା'ଠାରୁ ଭିନ୍ନ ଧରଣର । ସମାଜକୁ ନୂଆ କରି ଗଢ଼ିବାର ବିପ୍ଲବୀ ଯିଏ ହେବ, ସିଏ ଆଗ ବଦଳିବ । ଆପଣା ବିଚାର ଓ ଆଚାରର ସବୁ ପଚା ପାଣିକୁ ସେ ଆଗ ନିଷ୍କାସିତ କରି ଶୁଦ୍ଧ ହୋଇଯିବ । ଆପଣାକୁ ଆଗ ବଦଳାଇବାର ବାଟ ଆମେ ଅନୁସରଣ କରିବା ।

ଯୋଉଠି ଯେତେ ହୀନମାନ ଭାବରେ ଦେଖିଲେ ମଧ୍ୟ ଏ ଦେଶରେ ଆମେ କୌଣସି ପିଲାକୁ ବା ଯୁବକଙ୍କୁ ବେଖାତିର କରିବା ନାହିଁ । କାହାକୁ ଆମେ ମ୍ଳେଚ୍ଛ ବୋଲି ଭାବିବା ନାହିଁ । ସୁଶିକ୍ଷା ଫଳରେ ଯେବେ ସେମାନଙ୍କର ମଧ୍ୟ ଉଦୟ ହେବ, ସେମାନଙ୍କର ମଧ୍ୟ ବିକାଶ ହେବ । ସେ ଆମର ଦାୟିତ୍ୱ । ଆମେ ପୁରୁଣା ଭାଙ୍ଗି ନୂଆ ଗଢିବା । ତେଣୁ ନୂଆ ମଣିଷର ସମ୍ମାନିତ ଦୃଷ୍ଟି ଆମକୁ ଅର୍ଜନ କରିବାକୁ ହେବ । ସେହି ନୂଆ ଦୃଷ୍ଟି ଦେଇ ସାରା ସଂସାରର ମଣିଷଙ୍କୁ ଦେଖିବାକୁ ହେବ । କରଣ କଣ୍ଡରା, ଧନୀ ଗରିବ ବା ପାଠୁଆ ଅପାଠୁଆର ତଉଲକୁଚିରେ ତଉଲି ଆମେ ମଣିଷର ବିଚାର କରିବା ନାହିଁ । ମଣିଷ ହିସାବରେ ଆମେ ମଣିଷର ବିଚାର କରିବ । ଏ ସଂସାରର ସବୁରି ସହିତ ଅପଣାକୁ ସମ୍ମିଳିତ କରିଇ ଅମେ ନିଜ ନିଜର ବିଚାର କରିବା ।

୧୧ । ୧୦ । ୪୬

ଓଡ଼ିଶାକୁ ଶାସନ କରିବା ଲାଗି ଯେଉଁସବୁ ଉଚ୍ଚ ପାହ୍ୟାର କର୍ମଚାରୀ ନିଯୁକ୍ତ ହୁଅନ୍ତି, ସେମାନଙ୍କୁ ବାଛିବା ବେଳେ ଗୋଟାଏ ବଡ ପରୀକ୍ଷା ହୁଏ । ପାଠ ପରୀକ୍ଷା ତ ହୁଏ, ଚାଲିଚଳଣିର ମଧ୍ୟ ପରୀକ୍ଷା ହୁଏ । ତା ଛଡ଼ା କିଏ କେତେ କଷ୍ଟସ୍ୱୀକାର କରିପାରିବ, ତାର ମଧ୍ୟ ଗୋଟାଏ ମଜାକିଆ ପରୀକ୍ଷା ହୁଏ । ହାକିମ ତ ଖାଲି କଟକରେ କି ଭୁବନେଶ୍ୱରରେ ରହିବେ ନାହିଁ, ତାଙ୍କୁ ହୁଏତ କାଦୁଅ ପାଣିରେ ଯିବାକୁ ହେବ, ମୋଟା ଭାତ ଖାଇବାକୁ ପଡ଼ିବ । ବିଲ ହିଡ଼ରେ ଚାଲିବାକୁ ପଡ଼ିବ । ସେଥିଲାଗି ପରୀକ୍ଷା କରି କଷ୍ଟ ସହିପାରିବା ଲୋକଙ୍କୁ କୁଆଡ଼େ ଆମ ଓଡ଼ିଶାରେ ବାଛିକରି ନିଆଯାଏ । ପରୀକ୍ଷା ହେଉଛି ଦଶ ମାଇଲ ଚାଲିକରି ଯିବାକୁ ହେବ । କଟକରୁ ଭୁବନେଶ୍ୱରକୁ ଯାଇଥିବା ପିଚୁ ରାସ୍ତାରେ ଏହି ମଜାକିଆ ପରୀକ୍ଷା ବେଳେ ବେଳେ ହୁଏ । ସେ ଗୋଟାଏ ଅଦ୍ଭୁତ ଦୃଶ୍ୟ । ଯିଏ ଦେଖିବ ତା'ର କଣ୍ଠରେ ଦୟା ଅସିବ, ସଫା ସୁଟ୍ ଅଉ ଜୋତା ମୋଜା ମଡ଼ାଇଥିବା ପାଠୁଆ ଟୋକାଟୁକାକ

ହୁଏତ ଜୀବନରେ ପ୍ରଥମ ଥର ପାଇଁ ଏପରି ଏକ ପରୀକ୍ଷା ଦିଅନ୍ତି । ସେ ପୁଣି ବାଧ୍ୟହୋଇ ବଡ଼ ଗୃହକର୍ମ ଘଣ୍ଟେ ମିଳିବାର ଲୋଭରେ ପଡ଼ି । ବଡ଼ ସମାରୋହରେ ଏହି ଅସ୍ୱାଭାବିକ ଶୋଭାଯାତ୍ରା ଚାଲେ । ସାଙ୍ଗରେ ପରୀକ୍ଷକମାନେ ଯାଉଥାନ୍ତି । ଗୋଟାଏ ମୋଟର କାରରେ ବୋଝେଇ ହୋଇ ଲେମ୍ବୁ, ସୋଡ଼ା, ଚକ୍‌ଲେଟ୍ ପ୍ରଭୃତି ବି ଯାଉଥାଏ । କାହାକୁ କେଉଁଠି ଥକ୍କା ଲାଗିଲା ତ ସେ ଏହିସବୁ ରସଦର ସାହାଯ୍ୟ ନେବ । ପରୀକ୍ଷା କଥା—ଦଣ୍ଡେ ବସିପଡ଼ି ଫୁରୁସତ୍ ନେଲେ ତ ଚଳିବ ନାହିଁ; ତେଣୁ ଟେହ୍ଲା ପୁଅର ମନ ଭୁଲାଇଲା ପରି ଲେମ୍ବୁ କି ସୋଡ଼ାରୁ ଟିକିଏ ମୁହଁରେ ମାରି ଆପଣାର ସୁକୁମାରିଆ ଦେହକୁ ଟିକିଏ ଫୁର୍ତ୍ତି କରେଇନେଲେ ହେବ । ମୁଁ ଜାଣେନା ଏ ଅପାଠୁଆ ଦେଶରେ ପାଠୁଆ ପିଲାଙ୍କର କଷ୍ଟ ସହିବାର ବା ଯେ କୌଣସି ଅବସ୍ଥାରେ ଆପଣାକୁ ଚଳାଇନେବାର କ୍ଷମତା ଏହାଦ୍ୱାରା କେତେଦୂର ପରୀକ୍ଷା କରାଯାଏ !

କୁଶିକ୍ଷାକୁ ଅଭ୍ୟାସଗତ କରିଥିବାରୁ ଆମେ ଏସବୁ ଅଦ୍ଭୁତ ପରୀକ୍ଷାକୁ ଠିକ୍‌ବୋଲି ମାନିନେଉଚୁ । ଅନ୍ୟ କୌଣସି ସଭ୍ୟ ଦେଶରେ ଏପରି ହାସ୍ୟାସ୍ପଦ ପରୀକ୍ଷା ଲାଗି କୌଣସି ସ୍ଥାନ ନ ଥିବ । କୌଣସି ସଭ୍ୟ ଦେଶରେ ଦେହକୁ ଏତେ ସୁକୁମାରିଆ କରି କେହି ରଖେ ନାହିଁ । ପିଲା ସ୍କୁଲରୁ ଆସିଲେ ଆପଣା କାମରେ ଲାଗେ । ଚାଷୀପିଲା ଚାଷବେଳେ ବାପ ମାଆ ସାଥିରେ ଚାଷକାମ କରେ । କିଏ ବଗିଚା କାମ କରେ ତ କିଏ ଆପଣାର ହାତଅର ଧରି ଶ୍ରେଷ୍ଠ ବଡ ମରାମତି କାମ କରେ । ଛୁଟିଦିନେ ବିଶ୍ୱବିଦ୍ୟାଳୟ ବନ୍ଦ ହୋଇଗଲେ ପାଠୁଆ ପୁଅ ଘରକୁ ଆସେ । ଘାସ ଅମଳ କରି ଶୀତଦିନକୁ ସାଇତି ରଖିବାରେ, ଫସଲ କାଟିବାରେ ବା ଆଳୁ ଖୋଳିବାରେ ସେ ବାପ ମାଆଙ୍କ ସହିତ କାମ କରେ । ଘରର କାମ ସମସ୍ତଙ୍କର ଦାୟିତ୍ୱ । ସେଠି ପାଠୁଆ ଅପାଠୁଆର ପ୍ରଶ୍ନ ନାହିଁ । କାରଣ ସେଠି ପାଠୁଆ ହେଲେ ଶାରୀରଶ୍ରମକୁ କେହି ଅସମ୍ମାନଜନକ ବୋଲି ମନେ କରେ ନାହିଁ । ଆମର ସାମାଜିକ ସଂସ୍କାରମାନ ଆମକୁ ପିଲାଦିନୁ ଅତି କଅଁଳା ଓ ଅଳସୁଆ କରି ପକାଉଛି, ଆମ ମନର ସମସ୍ତ ସଂକଳ୍ପକୁ ଭାଙ୍ଗିଦେଉଛି । ସେଉଁ ପୁଅ କଟକ

କଲେଜରେ ଏମ. ଏ. ପଢ଼ୁଛି, ସେ ଯଦି ଯାଇ ଧାନଫେଲାରେ ବେଙ୍ଗଳା ପକାଇବାକୁ ଆରମ୍ଭ କରେ, ତେବେ ଆମ ଅଦ୍ଭୁତ ସମାଜରେ ସମସ୍ତେ ତା'ର ମୁଣ୍ଡ ଖରାପ ହୋଇଗଲାଣି ବୋଲି କହିବେ । ଆମ ଦେଶର ପାଠୁଆମାନେ ହିଁ ଆମ ଦେଶରେ ସବୁଠାରୁ ଅଧିକ ଅଳସୁଆ, ଅଧିକ ଲାଜକୁଳା । ସେଥିଲାଗି ଆପଣା ମାଲ ଆପେ କାନ୍ଧରେ ବୋହିନେବାର ଶକ୍ତି ଦେହରେ ଥିଲେ ମଧ୍ୟ ଆମ ଦେଶର ପାଠୁଆ ଯୁବକ ଷ୍ଟେସନରେ ଗାଡ଼ିରୁ ଓହ୍ଲାଇବା ଆଗରୁ 'କୁଲି' 'କୁଲି' ବୋଲି ଚିତ୍କାର କରେ । ସାତ, ଆଠ ବରଷର ପିଲାକୁ ଅଣାଏ ପଇସା ଫୋପାଡ଼ିଦେଇ ସେ ଆପଣାର ଜୋତା ସଫା କରାଇନିଏ । ଏସବୁ କରିବାକୁ ତାକୁ ମୋଟେ ଲାଜ ଲାଗେ ନାହିଁ । ସ୍କୁଲ କଲେଜରେ କୌଣସି ପାଠ ଓ କୌଣସି କାର୍ଯ୍ୟକ୍ରମ ତାକୁ ଏ ଲାଜ ଶିଖିବାରେ ସାହାଯ୍ୟ କରେ ନାହିଁ, ଓଲଟି ପ୍ରଶ୍ରୟ ଦିଏ । ତେଣୁ ଅଗଣିତ ବହି ଘୋଷି ଅପର୍ଯ୍ୟାପ୍ତ ନମ୍ବର ନେଇ ପାଠୁଆ ପୁଅ ଯେତେବେଳେ ସଂସାରକୁ ବାହାରେ, ସେତେବେଳେ ତା'ର ଦେହ ତା'ର ମନର ଅଧୀନରେ ଆଉ ନ ଥାଏ । କୋଉ ଅଧମ ଯୁଗର ଜେଲିମାଛ ପରି ତାହା ଅଳସ ଦୁର୍ବଳ ହୋଇ ପଡ଼ିଥାଏ । କ୍ରମେ ମନଟାକୁ ମଧ୍ୟ ସେ ଦୁର୍ବଳ କରିଦିଏ । ମନ ଦୁର୍ବଳ ହେବା ମାତ୍ରକେ ସବୁ ପାଠ ଓ ପାଣ୍ଡିତ୍ୟ କୁଅଡ଼େ ପୋଡ଼ିଯାଏ । ଖାଲି ଡିଗ୍ରୀଟା ପଡ଼ିରହେ, ଆଉ ସେହି ଡିଗ୍ରୀପିନ୍ଧା ରୁଗ୍ଣ ମନନେଇ ଯେତେବେଳେ ସେ ଜୀବନର ବଜାରରେ ସଉଦା କରିବାକୁ ଆସେ, କଷ୍ଟସହିବାର ହଜିକନିଅ ପରୀକ୍ଷାରେ ଯେତେ ବେଶୀ ନମ୍ବର ରଖି ପାରିଥିଲେ ମଧ୍ୟ ତା'ର ମନର ଆରାମଲୋଭୀ କୀଟଗୁଡ଼ାକ ତା'ର ପ୍ରତ୍ୟେକ ସ୍ନାୟୁରେ ଚରିଯାଇଥାନ୍ତି । ଜୀବନରେ କୌଣସି କଷ୍ଟ ଦେଖିଲେ ସେ ଅତି ସଙ୍କୁଚିତ ହୋଇପଡ଼େ । ଏ ଦୁଃଖୀ ଦେଶର କୌଣସି କଷ୍ଟ ସେ ଦୂର କରିପାରେ ନାହିଁ ।

**୧୬ । ୧୦ । ୪୫**

ଆମ ଦେଶର ଅଫିସରୀ ଜୀବନ ବିଷୟରେ ଆମେ ଦୂର ବେଶୀ ପରିଚିତ ହୋଇ ନାହୁଁ । ସେ ଗୋଟାଏ ଅଦ୍ଭୁତ ଚିଡ଼ିଆଖାନାର ସଂସାର ।

ଯେ କୌଣସି ଉପନ୍ୟାସଠାରୁ ସେ ସଂସାରର କାହାଣୀ କୌଣସି ପ୍ରକାରେ କମ୍ ରସମୟ ହେବ ନାହିଁ । ଯେତିକି ଯେତିକି ଆମେ ଅଫିସରମାନଙ୍କର ସମ୍ପର୍କରେ ଆସୁଥିବା, ସେତିକି ସେତିକି ଆମେ ଏ ରସ ଉପଭୋଗ କରି ପାରୁଥିବା ।

ଆଗେ ଗଡ଼ଜାତରେ ରାଜାମାନେ ଥିଲେ । ସେମାନେ ରାସ୍ତାରେ ବୁଲି ବାହାରିଲେ କି ଜଙ୍ଗଲକୁ ଶିକାର କରି ଗଲେ ଶହ ଶହ ଲୋକଙ୍କର ସେବା ଦରକାର ହେଉଥିଲା । ଫେରି ତଳକୁ ଖସି ମଇଳା ହୋଇଯିବ ବୋଲି ଦୁଇଟା ଲୋକ କୁଅଟେ ଫେରି ଧରି ଯାଉଥିଲେ । ସେ ଦେଶୀ ରଜା ଗଲେ, ବିଦେଶୀ ବ୍ରିଟିଶ୍ ରଜା ଆସିଲେ । ସେତେବେଳେ ମଧ୍ୟ ବଡ଼ ଅଫିସର-ମାନଙ୍କର ଏଇ ଗୋଲାମଗିରିଆ ଜୀବନ ବେଶ୍ ଚାଲିଲା । କୋରାପୁଟରେ କୋଉଠି ନଈ ପଡ଼ିବ, ଚାରିଟା ଶବର ଅମିନ ବାବୁଙ୍କୁ ନେଇ ନଈ ପାରି କରାଇଦେବେ । କୋଉଠି ଘାଟ ପଡ଼ିବ ତ ଦୁଇ ଜଣ କାନ୍ଧ ବାବୁଙ୍କୁ ବୋହି ନେବେ ବା ନାଉ କରି ନେବେ । ଏ ସ୍ୱତନ୍ତ୍ର ଦେଶରେ ମଧ୍ୟ ସେହି ପୁରୁଣା କାରବାର ବେଶ୍ ଚାଲିଛି । ଅଫିସରମାନେ ଜିଲ୍ଲା ଗସ୍ତ କରିବେ, ଗାଁ ଗାଁ ବୁଲିବେ । କିନ୍ତୁ ସେମାନଙ୍କର ଗୋଡ଼ରୁ ଯୋତା ହୁଗୁଳିବ ନାହିଁ, ପାଦରେ ପାଣି କି କାଦୁଅ ଲାଗିବ ନାହିଁ । ଦରକାର ପଡ଼ିଲେ ଚାରି ପାଞ୍ଚଟା ମଣିଷ ସେମାନଙ୍କୁ ବୋହି ନେଇଯିବେ ଏ କଥା ଏପର୍ଯ୍ୟନ୍ତ ବି ଆମର ଚାଲିଛି । ପାଠପଢ଼ି ପଇସା ନେଇ ଦେଶର ସେବା କରିବାକୁ ଆସିଥିବା ହାକିମଙ୍କୁ ଏଥିଲାଗି ଲାଜ ଲାଗୁ ନାହିଁ କି ଆପଣାକୁ ଅତି ହୀନ ଦରିଦ୍ର କରି ରଖି ସବୁବେଳେ ହାକିମର ଅନୁଗ୍ରହ ଉପରେ ବଞ୍ଚି ଆସିଥିବା ମଣିଷ ଏଥିରେ ଅପମାନିତ ବୋଧ କରୁ ନାହିଁ । ଅସମ୍ମାନ ଉଭୟ ତରଫକୁ ଗ୍ରାସ କରି ସାରିଲାଣି । ମଣିଷପଣିଆ ଉଭୟ ପକ୍ଷରୁ ମରିଯାଉଛି । ଏସବୁ ହେଉଛି, କାରଣ ଏ ଦେଶର ହାକିମ ଏ ଦେଶର ସେବକ ବୋଲି ଆପଣାକୁ ଭାବୁ ନାହାନ୍ତି । ମଣିଷ ଭିତରର ସେବାଭାବ କୁଆଡ଼େ ପୋକ ଖାଇଗଲାଣି । ଖାଲି ନାନା ଲୋଭ ଓ ନାନା ଭୋଗର ମନୋବୃତ୍ତି ନେଇ ମଣିଷ କାଠ ପରି ବଞ୍ଚି ରହିଛି । ମଣିଷ ଭିତରେ ଭଗବାନ ରହିଛନ୍ତି । ତେଣୁ ପ୍ରତ୍ୟେକ ମଣିଷକୁ

ମଣିଷର ସମ୍ମାନ ମିଳିବା ଦରକାର । ଯେତେ ପାଠ ପଢ଼ିଲେ ମଧ୍ଯ ଏ ଦେଶର ପାଠୁଆ ହାକିମ ଆଜି ଏହି ଶୁଦ୍ଧ ସତ୍ୟଟିକୁ ଆଉ ଅନୁଭବ କରିପାରୁ ନାହିଁ ।

ଏ ଦେଶରେ ସମସ୍ତେ ଆଗ ସୁଖ ଚାହାନ୍ତି; ସହଜ ଜୀବନ ଚାହାନ୍ତି । ସହଜ ଜୀବନ ହିଁ ଏ ଦେଶର ଆଖିରେ ଆଜି ସାର୍ଥକ ଜୀବନର ମାନଦଣ୍ଡ ହୋଇଛି । ତେଣୁ ଆମର ଦାୟିତ୍ଵବୋଧ କମିଯାଉଛି, ପୁରୁଷାର୍ଥବୋଧ ମରି-ଯାଉଛି । ପାଠ ପଢ଼ିସାରିଲେ ତେଇଶି, ପଚିଶି ବରଷର ଯୁବକ ଆଉ କୌଣସି ପ୍ରକାର କଷ୍ଟ ସହିବାକୁ ଶଙ୍କାବୋଧ କରୁଛି । ଟିକିଏ କୋଉଠି ଟିକେ ଖରା ସହିଲେ ବା ପାଣି କାଦୁଅରେ ପଶିଲେ ତା'ର ଅବସ୍ଥା ବଡ଼ ବିକଳ ହୋଇପଡ଼ୁଚି । ଯେଉଁ ଦେଶରେ ଶତକଡ଼ା ନବେ ଲୋକ ଖରା ବରଷା ଆଉ ଶୀତରେ ଜୁଆହୋଇ ଜୀବନ ଧରି ପଡ଼ିଛନ୍ତି, ସେଇ ଦେଶର ହାକିମ ଆଜି ପାଣି କାଦୁଅକୁ ଡରୁଛି, ଗାଆଁକୁ ଯିବାକୁ ଡରୁଛି, ବାଟ ଚାଲିବାକୁ ଡରୁଛି । ଆମର ଏ ଦୁର୍ଦ୍ଦଶାରେ ତଥାପି ଆମକୁ ଲାଜ ମାଡ଼ୁ ନାହିଁ ।

ଏ ଦେଶର ପାଠ ଓ ଏ ଦେଶର ସମାଜ ଆମକୁ ଆଜି ଏହିପରି ଦୁର୍ଦ୍ଦଶାଜର୍ଜ୍ଜର କରି ପକାଇଛି । ଏ ଦେଶର ସ୍କୁଲ୍ କଲେଜ ଏ ଦେଶର ନୁହେଁ, ଏକଥା ଆମେ ସମସ୍ତେ ଅନୁଭବ କଲୁଣି । ପାଠ ମଣିଷକୁ ତା'ର ସମାଜ ଲାଗି, ତା'ର ସାମାଜିକ ଜୀବନ ଲାଗି ତିଆରି କରେ । କିନ୍ତୁ ଆମର ଶିକ୍ଷା ବର୍ତ୍ତମାନ ଆମକୁ ଯଥାସମ୍ଭବ ଅସାମାଜିକ କରି ପକାଉଛି । ଆମର ଶିକ୍ଷାନୁଷ୍ଠାନମାନଙ୍କରେ ଲାଇବ୍ରେରି ଅଛି, ଲାବୋରେଟରୀ ଅଛି । ଗଦା ଗଦା ବହି ଘୋଷଣା ହୋଇ ଗଦା ଗଦା ପରୀକ୍ଷା କରାଯାଉଚି । ତଥାପି ଏ ଦେଶର ମଣିଷ, ଏ ଦେଶର ପ୍ରକୃତି, ଏ ଦେଶର ଜୀବନ ସହିତ ତା'ର କୌଣସି ସମ୍ପର୍କ ନାହିଁ । ଆମେ ଏ ଦେଶର ମଣିଷ ସହିତ ଏପର୍ଯ୍ୟନ୍ତ ପରିଚିତ ହୋଇ ନାହୁଁ, ଏପର୍ଯ୍ୟନ୍ତ ଏ ଦେଶର ମଣିଷ ପ୍ରତି ଶ୍ରଦ୍ଧା ରଖିବାର ଯୋଗ୍ୟତା ଅର୍ଜନ କରି ନାହୁଁ । ଯୋଉଠି ଜୀବନ ପ୍ରତି ଶ୍ରଦ୍ଧା ନାହିଁ, ପୁରୁଷାର୍ଥ ପ୍ରତି ଶ୍ରଦ୍ଧା ନାହିଁ, ମଣିଷ ପ୍ରତି ଶ୍ରଦ୍ଧା ନାହିଁ, ସେଠି ଶିକ୍ଷାର ଶୁଦ୍ଧତା ରହିଛି ବୋଲି ଆମେ କିପରି କହିବା ? ଆଗେ ଯେମିତି ପଇସା ଟାଇ ଦଲେ ଲୋକ ଯୁଦ୍ଧ

ସମସ୍ତରେ ଯୁଦ୍ଧ କରିବାକୁ ଯାଉଥିଲେ, ବର୍ତ୍ତମାନ ସେମିତ ଲୋକଶାସନର ଗୁମାସ୍ତା-କଚେରୀରେ ଆମ ହାକିମମାନେ ପଇସା ଖାଇ କାଗଜପତ୍ର କାମ ଠିକ୍ କରିବାରେ ଲାଗିଛନ୍ତି । ଅଳ୍ପ ପଇସାଖିଆର ଅନେକ ପଇସାଖିଆ ସହିତ ପ୍ରତିଯୋଗିତା ଚାଲିଛି । ଅଳ୍ପ ପଇସାଖିଆ ଉପରେ ଅନେକ ପଇସା-ଖିଆ ହାକମୀ ଚଳାଉଛି । ପଇସା ଖାଇବାର ପରିମାଣ ଓ ପରିଧି ଅନୁସାରେ ସମାଜ ଭାଗ ଭାଗ ହୋଇଯାଇଛି । ଜୀବନ ପ୍ରତି ଅଶ୍ରଦ୍ଧା, ମଣିଷ ପ୍ରତି ଅସମ୍ମାନ ଉପରଠାରୁ ତଳଯାଏ ସମସ୍ତଙ୍କୁ ଜର୍ଜର କରି ରଖିଛି ।

୧୩ । ୧୦ । ୫୫

ଆମ ସାଥିରେ ବୁଲୁଥିବା ମୁସଲମାନ ସିପାହୀ ଭାଇଙ୍କଠାରୁ ଗୋଟାଏ କଥା ଶୁଣିବାକୁ ପାଇଲି । ତାଙ୍କୁ ମୁଁ କଥାପ୍ରସଙ୍ଗରେ ପଚାରିଲି, "ଇହୁଦୀ ବୋଲି ଗୋଟାଏ ଜାତି ପୃଥିବୀରେ ଅଛନ୍ତି, ତୁମେ ଜାଣିଚ ?" ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, "ସେମାନେ ଆମର ପହିଲି ନମ୍ବର ଶତ୍ରୁ । ସେମାନଙ୍କୁ ପୁଣି ନ ଜାଣିବ କିଏ ?" ମଣିଷ ମଣିଷ ଭିତରେ ଘୃଣା ସୃଷ୍ଟି କରି ଆସିଥିବା ଧର୍ମ-ବ୍ୟବସ୍ଥାପକମାନଙ୍କର ସଫଳତାର ଗୋଟାଏ ପ୍ରମାଣ ପାଇଲି । ଦୁଇ ବରଷ ତଳେ ଅଷ୍ଟ୍ରିଆର ଗୋଟାଏ ଗ୍ରେଟ ଗାଆଁରେ ଠିକ୍ ଏହିପରି ଗୋଟାଏ କଥା ଦେଖିବାକୁ ପାଇଥିଲି । ସେଠି ଗ୍ରେଟ ପିଲାଙ୍କ ସ୍କୁଲରେ ଧର୍ମ ବିଷୟରେ ଶିକ୍ଷା ଦିଆଯାଏ । ଗୋଟାଏ ବହି ମୁଖସ୍ଥକରି ପିଲାମାନଙ୍କୁ ଧର୍ମ ବିଷୟରେ ପରୀକ୍ଷା ଦେବାକୁ ହୁଏ । ଧର୍ମ କହିଲେ ଅନ୍ଧମଣିଷ କେବଳ ଆପଣାର ଧର୍ମକୁ ହିଁ ବୁଝେ । ତେଣୁ ଅଷ୍ଟ୍ରିଆର ସ୍କୁଲରେ ଧର୍ମଶିକ୍ଷା କହିଲେ କେବଳ ଖ୍ରୀଷ୍ଟିଆନ୍ ଧର୍ମକୁ ହିଁ ବୁଝିବାକୁ ହେବ । ଧର୍ମ ବିଷୟକ ପାଠ୍ୟପୁସ୍ତକରୁ ଦିନେ ଗୋଟାଏ ଅଦ୍ଭୁତ କଥା ଦେଖିବାକୁ ପାଇଲି । ସେଥିରେ ଲେଖାଯାଇଛି ମୁସଲମାନ ଧର୍ମ ହେଉଛି—ଆମ ଖ୍ରୀଷ୍ଟିୟାନ୍ ଧର୍ମର ପହିଲି ନମ୍ବର ଶତ୍ରୁ । ଯେପର୍ଯ୍ୟନ୍ତ ଏହା ପୃଥିବୀରୁ ଲୋପ ନ ପାଇଛି, ସେପର୍ଯ୍ୟନ୍ତ ଆମ ଧର୍ମର ବିପଦ ଯାଇ ନାହିଁ । ଇହୁଦୀପରି ହବୁ ସ୍କୁଲରେ ଗ୍ରେଟ ପିଲାଏ ହୁଏତ ଆଜି ଏହି କଥା

ପଢ଼ୁଛନ୍ତି । ମୁଖସ୍ଥ କରୁଚନ୍ତି, ପରୀକ୍ଷାରେ ଲେଖୁଛନ୍ତି । ପୃଥିବୀର ସବୁ ପିଲାଙ୍କର କଲ୍ୟାଣ ଚାହୁଁଥିବା ଜଣେ ଶିକ୍ଷକ ହିସାବରେ ସେଦିନ ଏହି ଘଟଣାରେ ମୁଁ ପ୍ରକୃତରେ ବଡ଼ ଆତଙ୍କିତ ହୋଇଉଠିଥିଲି । ପିଲାଦିନରୁ ଆମର ଜାଣିବାର ଆଗ୍ରହକୁ ଏହିପରି ମିଛ ଓ ଘୃଣାରେ ଦୂଷିତ କରି ଦିଆଗଲେ ଆମେ ବଡ଼ ହୋଇ ଏ ସମାଜରୁ କିପରି ମିଛ ଓ ଘୃଣା ଦୂର କରିଦେଇ ପାରିବା ? ଆଉ ମିଛ ଓ ଘୃଣା ଏହି ପୃଥିବୀରେ ଆମ ମନ ଭିତରେ ଜୀଇ ରହିଥିଲାପର୍ଯ୍ୟନ୍ତ କିପରି ଆମେ ଆମ ଜୀବନକୁ ଓ ସଂସାରକୁ ସୁନ୍ଦର କରି ଗଢ଼ିପାରିବା ? ବଡ ବଡ଼ ସଭାରେ ଶାନ୍ତି, ମୁକ୍ତି ପ୍ରଭୃତି ଶବ୍ଦ ନେଇ ଆମେ ଯେତେ ପାରୁଛେ ପାଟି କରୁଛେ । କିନ୍ତୁ ମାତ୍ର କେତୋଟା ଯକ୍ଷ୍ମାଜୀବାଣୁ ପଶି ଗୋଟାଏ ସୁସ୍ଥ ସବଳ ଦେହକୁ ଖାଇଗଲା ପରି ଆମ ପିଲାଦିନର ମିଛ-ପାଠ ଆମର ସାମାଜିକ ଜୀବନକୁ ଖାଇ ଖାଇ ଚାଲିଛି ।

ମଣିଷ ମଣିଷକୁ ଶ୍ରଦ୍ଧା କରିବ, ମଣିଷ ମଣିଷ ପାଖରେ ନମ୍ର ହେବ, ମଣିଷ ମଣିଷକୁ ମଣିଷର ସମ୍ମାନ ଦେବ— ସବୁ ଧର୍ମର ମହାପୁରୁଷମାନେ ଏହି କଥା କହିଛନ୍ତି । ଏତେ ଜଣ ମହାପୁରୁଷଙ୍କର ଇତିହାସକୁ ପଛରେ ଧରି ମଧ୍ୟ ଆଜି ହିନ୍ଦୁ ମୁସଲମାନକୁ ଘୃଣା କରୁଛି, ମୁସଲମାନ ଇହୁଦୀକୁ ଘୃଣା କରୁଛି, ଇହୁଦୀ ଖ୍ରୀଷ୍ଟିଆନ୍‌କୁ ଘୃଣା କରୁଛି । ଆମ ଧର୍ମମନ୍ଦିରର ଅଧିକାଂଶ ଆଡ଼ମ୍ବର ଭିତରେ ଆଜି ଖାଲି ଘୃଣା ଭର୍ତ୍ତି ହୋଇଛି । ଏ ସଂସାରରେ ଭଗବାନଙ୍କର ସନ୍ତାନ ହିସାବରେ ଆମେ ପରସ୍ପରକୁ ଭଲ ପାଉଥାନ୍ତେ, ପରସ୍ପରର ବିକାଶରେ ଆମେ ଖୁସୀ ହେଉଥାନ୍ତେ; କିନ୍ତୁ ଭଗବାନଙ୍କ ଭୂତକୁ ଭଗବାନ ବୋଲି କହି ଆଜି ଆମେ ସଂସାରରେ ପରସ୍ପରର ଶତ୍ରୁ ହୋଇ ପଡ଼ିଲୁଣି । ମଣିଷ ଆଉ ମଣିଷକୁ ଆଦରେଉ ନାହିଁ, ମଣିଷ ଆଉ ମଣିଷକୁ ବୁଝିପାରୁ ନାହିଁ । ରକ୍ତ, ବର୍ଣ୍ଣ ଆଉ ଭେକର ଏହି ଶରୀରଟାକୁ ଭେଦି ମଣିଷ ଆଉ ପରସ୍ପର ଭିତରେ ଆତ୍ମଦର୍ଶନ ବା ଭଗବଦ୍‌ଦର୍ଶନ କରିପାରୁ ନାହିଁ । ଏହି ଦୁର୍ଭାଗ୍ୟର ଅଭିଶାପ ଆଜି ଆମର ଜୀବନରେ ଦୁଃଖ ଗୋଳିଦେଇଛି । ଏତେ ପାଖେ ପାଖେ ରହି ମଧ୍ୟ, ହାତରେ ଜ୍ଞାନ-ବିଜ୍ଞାନର ଏତେ ସାଧନ-

ସାମଗ୍ରୀ ଥାଇ ମଧ୍ୟ ଆମେ ଖାଲି ପରସ୍ପରର ଦୁଃଖ ହିଁ ବଢ଼ାଉଛୁ । ଆଉ ଯିଏ ଆପଣା ଅଜ୍ଞାନରେ ଦୁଃଖୀ ହୋଇ ରହିବାକୁ ଭଲ ପାଇଛି, ସେ ଏ ସଂସାରରେ କପରି ଭଗବାନଙ୍କର ଆଶୀର୍ବାଦ ଅନୁଭବ କରିପାରିବ, କପରି ଯେ ଏ ସଂସାରରେ ପ୍ରତ୍ୟେକ ମଣିଷର ହୃଦୟରେ ଭଗବାନ ରହିଛନ୍ତି ବୋଲି ବିଶ୍ୱାସ କରିବ ? ଆଜି ସବୁଠାରେ ଏହି ଅବିଶ୍ୱାସ ହିଁ ମଣିଷର ଜୀବନକୁ ନିୟନ୍ତ୍ରିତ କରୁଛି । ମଣିଷ ନ୍ୟାୟକୁ ବିଶ୍ୱାସ କରୁ ନାହିଁ । ସତ୍ୟକୁ ବିଶ୍ୱାସ କରୁ ନାହିଁ, ପରସ୍ପରକୁ ବିଶ୍ୱାସ କରୁ ନାହିଁ, ଆପଣାକୁ ମଧ୍ୟ ବିଶ୍ୱାସ କରୁ ନାହିଁ । କେତେ ପ୍ରକାରର କଳ୍ପିତ ଅବିଶ୍ୱାସର ତ୍ରାସରେ ସନ୍ତ୍ରସ୍ତ ହରିଣ ପରି ଖାଲି ସେ ଏ ସଂସାରର ଅରଣ୍ୟ ଭିତରେ ଲୁଚିବୁଲୁଛି । ଏ ସଂସାରରେ ଏତେ ଆଲୁଅ, ଏତେ ଆନନ୍ଦ; ତଥାପି ହତଭାଗ୍ୟ ମଣିଷ ଆଜି ମଧ୍ୟ ତା'ର ଅନ୍ଧାର-ଗମ୍ଭୀରିରେ ପଡ଼ିରହିଛି ।

ଆମେ ଘୃଣା କରୁଛୁ; ତେଣୁ ବିଶ୍ୱାସ କରିବାର ଶକ୍ତି ଆମର ନାହିଁ । ଆମର ସମସ୍ତ ବିଶ୍ୱାସ କେବଳ ଅନ୍ଧବିଶ୍ୱାସ ହୋଇ ଆମକୁ ଘୁରିଆଡ଼ୁ କାମୁଡ଼ି ଧରିଛି । ଆମେ ଆମର ସମସ୍ତ ପ୍ରକାର ଅନ୍ଧବିଶ୍ୱାସର ଅସ୍ତ୍ର ନେଇ ସଂସାରଟାକୁ ଘୃଣା କରିବାକୁ ବାହାରିଛୁ । କିନ୍ତୁ ସେସବୁ ଆମର ଜୀବନକୁ ହିଁ ବିକଳାଙ୍ଗ ବିକୃତ କରିଗୁଲିଚି । ନାନା ପ୍ରକାର ସଂଶୟ ଓ ଅବିଶ୍ୱାସରେ ଆମ ହୃଦୟକୁ ଗଣ୍ଠିଲିକରି ରଖିଛୁ । ମଣିଷର ଘୃଣାକୁ ଭାଙ୍ଗିଦେଇ ତାକୁ ଭଲପାଇ ଶିଖାଇବା, ମଣିଷକୁ ମଣିଷ ସହିତ ଆହୁରି ଶୁଦ୍ଧ ଓ ସମ୍ପୂର୍ଣ୍ଣ ଭାବରେ ସମ୍ମିଳିତ କରାଇବା, ଏହା ହିଁ ଯାବତୀୟ ସତ୍‌ଶିକ୍ଷାର କାମହୋଇ ରହିବା ଉଚିତ । ଆମ ସାହିତ୍ୟ, ଭୂଗୋଳ, ବିଜ୍ଞାନ ଆଉ ଇତିହାସ ପ୍ରଧାନତଃ ଏହି ଘୃଣା କାଟିବା ଲାଗି ଆମକୁ ଅଧିକ ସାହସ ଦେଇପାରିବା ଉଚିତ ।

୨୪ । ୧୦ । ୫୫

କାଲି ଆମେ ଗୁଣ୍ଡଦୁଧ ଗୋଳି ଏ ଗାଆଁର ପିଲାଙ୍କୁ ପିଇବାକୁ ଦେଲେ । ସମସ୍ତଙ୍କର ଅଣ୍ଟିରେ ମୁଠାଏ ମୁଠାଏ ହୁଡ଼ୁମ ଦେଲେ । ଆଜି

ସକାଳ ନ ହେଉଣୁ ଗାଆଁର ସବୁ ପିଲା ଆସି ସ୍କୁଲଘରେ ହାଜର । ଦୁଧ ପିଇବାକୁ ଦିଆଗଲାବେଳେ କେତେ ଶାନ୍ତ ହୋଇ ବସିଥାନ୍ତି । ଆପଣା ପାଳି ପଡ଼ିବାଯାଏ କେତେ ଧୈର୍ଯ୍ୟରେ ସେମାନେ ଅପେକ୍ଷା କରିଥାନ୍ତି । ଗାଆଁର କେତେ ଜଣ ମାମଲତକାର ଆଜି ସେହି ବିଷୟରେ କଥାବାର୍ତ୍ତା ହେଉଥିଲେ । ଯିଏ କେବେ ସ୍କୁଲ ଘର ନ ମାଡ଼ିଛି, ସେ ମଧ୍ୟ ଆଜି ସ୍କୁଲକୁ ଆସିଛି, ମାଷ୍ଟ୍ରଙ୍କୁ ଓ ପାଠକୁ ଫାଙ୍କିଦେଇ ଯିଏ ମାସରେ କୋଡ଼ିଏ ଦିନ ଲୁଚି ଲୁଚି ବୁଲୁଥିଲା, ସେ ବି ଆଜି ସଭିଙ୍କ ସହିତ ଶୃଙ୍ଖଳା ମାନି ଏକାଠି ଆସି ବସିଛି । ଗିଲାସେ ଗିଲାସେ ଦୁଧ ଆଜି ଗାଆଁର ସବୁ ପିଲାଙ୍କୁ ଏକାଠି କରିପାରିଛି । ସବୁଦିନେ ଏମିତି ମିଳୁଥିଲେ ଆଉ କୌଣସି ପିଲା ସ୍କୁଲରୁ ଲୁଚିବେ ନାହିଁ, ସମସ୍ତେ ପାଠ ପଢ଼ିବାକୁ ଆସିବେ—ଏପରି କଥାବାର୍ତ୍ତା ଶୁଣିବାକୁ ମିଳିଲା ।

ଆମ ଦେଶର ସବୁ ପିଲା ଏପର୍ଯ୍ୟନ୍ତ ପାଠ ପଢ଼ିବାର ସୁଯୋଗ ପାଇ ନାହାନ୍ତି, ଏହା ହେଉଛି ଏ ଦେଶର ସବୁଠାରୁ ବଡ଼ ଲଜ୍ଜା । ଖାଲି ଗୋଟାଏ ଆଇନ୍ ହୋଇଗଲେ ବା ଗାଆଁରେ ଗାଆଁରେ ସ୍କୁଲ ଖୋଲା ହୋଇଗଲେ ଯେ ସବୁ ପିଲାଏ ପାଠ ପଢ଼ିବାକୁ ଆସିବେ, ସେ କଥା ମଧ୍ୟ ନୁହେଁ । ନାନା ପ୍ରକାର ସାମାଜିକ କାରଣ ଆମ ଦେଶର ପିଲାଙ୍କୁ ଆଜି ଏକାଠି ବସି ପାଠ ପଢ଼ିବାରୁ ବଞ୍ଚିତ କରି ରଖିଛି । ଛଅ ସାତ ବରଷରେ କିଏ ଗାଈଗୋଠ ସହିତ ଯାଉଛି ତ କିଏ ଘାସ ମୁଣ୍ଡାଇ ବିଲରୁ ଫେରୁଛି । ଯୋଉ ବୟସରେ ସଫାସୁତୁରା ଦେହରେ ସଫାସୁତୁରା ପୋଷାକ ପିନ୍ଧି ଏ ଦେଶର ପିଲା ସ୍କୁଲ ଘରେ ବସି ପାଠ ପଢ଼ୁଥାନ୍ତା, ସେହି ବୟସରେ ମଇଳା କୋତରି ଦେହରେ ଛିଣ୍ଡାକନା ପିନ୍ଧି ସେ ଅଣ୍ଡିରାନମାନ ହୋଇ ରହିଛି । ପାଣି କାଦୁଅରେ ପଡ଼ି ତାର ଜୀବନର ସମସ୍ତ କାନ୍ତି ନଷ୍ଟ ହୋଇଯାଉଛି । ଘରେ ଖାଇବାକୁ ନାହିଁ, ଏହି ଖାଇବା ଗଣ୍ଡାକ ଯୋଗାଡ଼ କରିବା ଲାଗି ବାପ ମାଆଙ୍କୁ ବାରପ୍ରକାର ମୂଲ ଖଟିବାକୁ ପଡ଼ୁଛି, ବାର ମାଲିକଙ୍କୁ ଭରସା କରିବାକୁ ପଡ଼ୁଛି । ସେ ଘରେ ଯିଏ ଜନ୍ମ ହେଉଛି, ତାକୁ ମଧ୍ୟ ପିଲାଦିନରୁ ପେଟ ପୋଷିବା ଲାଗି ଚବିଶ ଘଣ୍ଟିଆ ମୂଲ ଲାଗିବାର ପଲରେ ଯିବାକୁ ହେଉଛି । ଏହିପରି ଚକ ଚାଲିଛି । ହଜାର ହଜାର ମଣିଷଙ୍କୁ ନାରଖାର କରି ହଜାର ହଜାର ପିଲାଙ୍କୁ

ସବୁପ୍ରକାର ସଭ୍ୟତା ଓ ସଂସ୍କୃତିରୁ ବଞ୍ଚିତ କରି ଏ ଦେଶରେ ସମାଜ ଗଢ଼ିବାର ସର୍ବନାଶୀ ସୁଅଙ୍କ ବେଶ୍ ଚାଲିଛି । ଆଜି ସମାଜର କେବଳ କେତେକ ଲୋକଙ୍କର ଅଧିକରୁ ଅଧିକ ବ୍ୟବସ୍ଥା ଚାଲିଛି । ଇଂଲଣ୍ଡ ବା ଆମେରିକାରୁ ପରିକମା କରି ଆସୁଥିବା ପାଠୁଆ ବାବୁମାନେ ସେମାନଙ୍କ ପିଲାଙ୍କ ପାଇଁ ଇଂଲଣ୍ଡ ଓ ଆମେରିକାର ସୌଖୀନ ଜୀବନ ଖଞ୍ଜିଦେବା ଲାଗି ଅଧିକରୁ ଅଧିକ ଯୋଜନାମାନ କରୁଛନ୍ତି । ସମାଜର ମାତ୍ର କେତେ ଜଣଙ୍କୁ ହାଉଦା ଉପରେ ବସାଇ ସମାଜର କଳ-ହାତୀ ବେଶ୍ ଜୋରରେ ଝୁଲି ଝୁଲି ଚାଲିଛି । ଅବାଟରେ ଯାଉଛି ବୋଲି ଭାବିବାକୁ ତାର ବେଳ ନାହିଁ ।

ସମାଜର ସବୁ ପିଲା ଖାଇବାକୁ ପାଇବେ, ସବୁ ପିଲା ପାଠ ପଢ଼ିବାର ସୁଯୋଗ ପାଇବେ—ଏକଥା କେବଳ କେତେ ଜଣ ପାଠୁଆ ବଡ଼ଲୋକଙ୍କର ଅନୁଗ୍ରହ ଉପରେ ନିର୍ଭର କରେ ନାହିଁ । ଆଜି ତ ଦୟାରେ ଶାସନ ଚାଲିଛି, ଦୟାରେ ପୋଷଣ ଚାଲିଛି, ଦୟାରେ ଉଦର ଭରାଇବା ଚାଲିଛି । ବଡ଼ଲୋକର ଦୟା ଅତି ପ୍ରବଳ ହୋଇଉଠିଥିବାବେଳେ ଗାନ୍ଧି ଅତି ନିର୍ଭୀକ ଭାବରେ ସବୁ ପିଲାଙ୍କର ପଢ଼ିବାର ବ୍ୟବସ୍ଥା କରିବା ଲାଗି ଏକ ସବଳ ଯୋଜନା ଦେଇ ଯାଇଛନ୍ତି । ଦେଶର ସବୁ ପିଲା ପାଠ ପଢ଼ିବେ । ତେବେ ଯାଇ ଏ ଦେଶର ଶିକ୍ଷାକୁ ଜାତୀୟ ଶିକ୍ଷା କୁହାଯିବ । ବଡ଼ଲୋକ ପାଣ୍ଠିରେ ଟଙ୍କା ନାହିଁ ବୋଲି ଗରିବର ପିଲାକୁ ଅନିର୍ଦ୍ଦିଷ୍ଟ ଭବିଷ୍ୟତ ଲାଗି ଅପଠୁଆ ହୋଇ ଅପେକ୍ଷା କରିବାକୁ ପଡ଼ିବ ନାହିଁ । ସେ ତା'ର ସ୍ୱତନ୍ତ୍ର ଧରଣର ସ୍କୁଲ ଏ ଦେଶରେ ଆପେ ଗଢ଼ିବ । ସେଠି ସେ କାମ କରିବ, ଖାଇବ, ପାଠ ପଢ଼ିବ । କାମ କରିବାର ଓ ପାଠ ପଢ଼ିବାର ସମନ୍ୱିତ ଆଗ୍ରହ ଓ ଉତ୍ସାହ ଭିତର ଦେଇ ସେ ସାମାଜିକ ସାଧୁ ଜୀବନର ସ୍ୱାଦ ପାଇବ । ଏ ସମାଜରେ ସେ ମଧ୍ୟ ଦିନେ ନିର୍ଭୀକ ହୋଇ ଠିଆହେବ । ଭୂଇଁର ମାଟିଠାରୁ ଆକାଶର ଆଲୁଅ ପର୍ଯ୍ୟନ୍ତ ଏ ସୃଷ୍ଟିରେ ଆନନ୍ଦମୟ ଜୀବନର ଯେତେ ସାମଗ୍ରୀ ରହିଛି, ସବୁଟିରେ ସେ ଅନ୍ତର ଦେଇ ମିଳିତ ହେବ । ତାର ଜୀବନଦୃଷ୍ଟି ଭିତରେ ସେ ସବୁଟିକୁ ଗ୍ରନ୍ଥିଦେଇ ସାଇତି ରଖିବ । ଆଜିକାର ଶିକ୍ଷା ନିର୍ଭୀକ ମଣିଷ ଗଢ଼ିପାରୁ ନାହିଁ; କାରଣ ପ୍ରଧାନତଃ ଦୟା ଆଉ ଅନୁଗ୍ରହ ଉପରେ ହିଁ ଏହା

ଠାଣି ରହିଛି । ହାକିମର ଦୟାରେ ଆଜି ଏ ଦେଶର ଶିକ୍ଷକର ଜୀବନ ବଡ ବ୍ୟସ୍ତ ସଙ୍କୁଚିତ ହୋଇ ରହିଛି । ତାର ସମ୍ମାନ ନାହିଁ । ଆମର ନୂତନ ଶିକ୍ଷା ଆଜି ନିର୍ଭୀକ ମଣିଷ ଗଢିବାର ବିରାଟ କାମକୁ ବ୍ରତ ବୋଲି ଗ୍ରହଣ କରୁ । ଆମ ନୂତନ ବିଦ୍ୟାଳୟର ଶିକ୍ଷକ ଓ ଶିକ୍ଷାର୍ଥୀ ସମସ୍ତେ ନିର୍ଭୀକ ହୁଅନ୍ତୁ । ସମସ୍ତେ ସବୁ ପିଲାଙ୍କର ଜନ୍ମଗତ ଅଧିକାର ବିଷୟରେ ସଚେତ ହୁଅନ୍ତୁ । ଏ ଦେଶରୁ, ଏ ଦେଶ ମଣିଷର ମନରୁ ଭୟ ଭାଙ୍ଗିବାର କାମକୁ ଅପଣାର ବ୍ରତ କରି ଧରନ୍ତୁ । ଆପଣାର ସାଧୁ ଓ ସୁନ୍ଦର ଜୀବନଦ୍ୱାରା ସେମାନେ ସମାଜକୁ ଅଧିକ ସାଧୁ ଓ ସୁନ୍ଦର ହେବା ଲାଗି ସାହାଯ୍ୟ କରନ୍ତୁ । ଏ ଦେଶର ନିଦ ଭାଙ୍ଗୁ । ଏ ଦେଶ ମଣିଷର ଲଜ୍ଜା ଯାଉ ।

୧୨ । ୧୦ । ୪୪

କାଲି ଆମେ ଗୋଟାଏ ଅଦ୍ଭୁତ ପ୍ରାର୍ଥନାର ନମୁନା ଦେଖିଥିଲେ । ଟଂ ଟଂ କରି ସ୍କୁଲ ଘଣ୍ଟା ବାଜିଲା । ସେତେବେଳକୁ ସାଢେ ଦଶଟା ବାଜିଲାଣି । ଖରା ଟାଣ ହୋଇଗଲାଣି । ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନେ ସେଇ ଖରାରେ ସୂର୍ଯ୍ୟ ଆଡକୁ ମୁହଁକରି ଧାଡିହୋଇ ଠିଆ ହୋଇଗଲେ । ସମସ୍ତଙ୍କର ହାତ ଯୋଡା ହୋଇଗଲା । ସେଇଠୁ ଆଦେଶ ମନ୍ତ୍ରେ 'ରଘୁପତି ରାଜାରାମ' ପ୍ରାର୍ଥନା ଆରମ୍ଭ ହେଲା । ପ୍ରାୟ ୫ ମିନିଟ କାଳ ଏହିପରି ପ୍ରାର୍ଥନାର ଦଣ୍ଡ ପିଲାମାନେ ଭୋଗିଲେ । ପ୍ରାର୍ଥନାର ଛନ୍ଦ, ସୁର ଓ ଶାନ୍ତତା କଥା ନ କହିବା ହିଁ ଭଲ । ଗୋଟାଏ ପିଲା ଏଜାତି ହୋ ହୋ ହେଲେ ଯାହା ହୁଏ, ତାହାହିଁ ହେଲା । ପ୍ରାର୍ଥନାର ଧାଡିରେ ଶିକ୍ଷକ ନ ଥିଲେ । ବୋଧହୁଏ ସେତେବେଳକୁ ସେ ସ୍କୁଲ ବେଳ ହୋଇଯିବ ଦେଖି ଝଟପଟ ଗଣ୍ଡେ ଖାଇ ନେଉଥିଲେ । ସେହି ସ୍କୁଲର ଗୋଟାଏ ବାରଣ୍ଡାରେ ଗାଆଁର ଶତେକ ପର୍ଯ୍ୟନ୍ତ ଲୋକେ ଇଲେକ୍ଟ୍ରିକଲ ନେଉଥିଲେ । ନାନାପ୍ରକାର କରୁଣ କାକଣି ଭଙ୍ଗୀରେ ଗୃହଅଙ୍ଗ ବଡ ଅଶାନ୍ତ ବିରକ୍ତ ହୋଇ ରହିଥିଲା । ସମସ୍ତଙ୍କର ମନ ଆଉ ଯେଉଁଠି ଥାଉ ପଛକେ, ପ୍ରାର୍ଥନା ପାଖରେ ନ ଥିଲା । ବିଚାରା ପିଲାଏ କେବଳ ପ୍ରାର୍ଥନାର ଡ୍ରିଲ ଭିତରେ ଠିଆହୋଇ ଶାସ୍ତି ଭୋଗ କରୁଥିଲେ ।

ଏହି ପିଲାଙ୍କର କଥା ଭାବୁ ଭାବୁ କାଲି ମୋର ଆମ ନିଜ କଥା ମନେ ପଡ଼ିଲା । ଅନୁଗୁଳ ଛାଡ଼ିଆସିବା ଆମର ପ୍ରାୟ ବାଇଶି ଦିନ ହୋଇଗଲାଣି । ଆଜିଯାଏ ନାନା କାମର ଦାୟିତ୍ୱରେ ଆମେ ନାନା ଆଡ଼େ ବୁଲୁଛୁ । ବସିବାକୁ, ଶୋଇବାକୁ ସବୁଦିନେ ଯଥେଷ୍ଟ ଜାଗା ମିଳୁ ନାହିଁ । ଏରସମାରେ ପହଞ୍ଚିବା ଦିନଠାରୁ ଆମର ପ୍ରାର୍ଥନା ବନ୍ଦ ରହିଛି । ସକାଳ ସଞ୍ଜରେ ଏକାଠି ବସି ଆମେ ଆଉ ପ୍ରାର୍ଥନା କରିପାରୁ ନାହିଁ । ଖାଇବା ପୂର୍ବରୁ ଆଗପରି ମନ୍ତ୍ର ଗୃହଧାତ୍ରି ପଢ଼ିପାରୁ ନାହୁଁ । ପ୍ରାର୍ଥନାକୁ ଯିଏ ପ୍ରଧାନତଃ ଗୋଟାଏ ରୁଟିନ୍ ବୋଲି ମନେକରେ, ସେ ନିଶ୍ଚୟ ଆମର ଏଇ ବ୍ୟତିକ୍ରମକୁ ଏକ ବଡ଼ ଦୋଷ ବୋଲି କହିବ । ସୈନ୍ୟବିଭାଗରେ ଦିନରେ ପନ୍ଦର ଷୋଳ ଘଣ୍ଟା ଏହିପରି ରୁଟିନ୍‌ରେ ଭର୍ତ୍ତି ହୋଇଥାଏ । ଯୁଦ୍ଧ ନ ଥିଲେ ମଧ୍ୟ ନାନା-ପ୍ରକାର ବ୍ୟୂହରଚନାର ଅଡ଼ମ୍ବର ସେମାନଙ୍କୁ ରୁଟିନ୍ ମାନି ସବୁଦିନ କରିବାକୁ ପଡ଼େ । ଆଦେଶ ଅମାନ୍ୟ କଲେ ଦଣ୍ଡ ଭୋଗିବାକୁ ହୁଏ । ଅଧିକନ୍ତୁ ଅମାନ୍ୟତା ଦେଖାଇଲେ ଚାକିରିରୁ ବରଖାସ୍ତ କରି ଦିଆଯାଏ । ଏହି ଷଡର ଡରରେ ସବୁ ରୁଟିନ୍‌କୁ ଭଲ ପିଲା ପରି ମାନିବାକୁ ପଡ଼େ ।

ଆମେ ଯଦି କାହାର ଆଦେଶରେ ପ୍ରାର୍ଥନାରେ ବସୁଥିବା, କାହାର ଡରରେ ପ୍ରାର୍ଥନାର ରୁଟିନ୍ ମାନିବାକୁ ବାଧ୍ୟ ହେଉଥିବା, ତେବେ ଆମେ ଆପଣା ପାଖରେ ତଥା ଭଗବାନଙ୍କ ପାଖରେ ବଡ଼ ଅପରାଧ କରୁଛେ ବୋଲି ମୁଁ କହିବି । ଆପଣା ଅନ୍ତରର ପରାମର୍ଶ ଓ ବିଶ୍ୱାସର ସମର୍ଥନ ନେଇ ହିଁ ଆମେ ପ୍ରାର୍ଥନା କରିବା । ଆମର ଜପ, ଆମର ଭଜନ ଗାନ, ଆମର ମନ୍ତ୍ରୋଚ୍ଚାରଣ ସବୁ କେବଳ ଏକ ସାଧନା ମାତ୍ର । ଆପଣା ଚିତ୍ତକୁ ସ୍ଥିରକରି ଆପଣା ହୃଦୟ ଭିତରେ ଆତ୍ମାର ବା ଭଗବାନଙ୍କର ଉପସ୍ଥିତି ଅନୁଭବ କରିବା ହେଉଛି ଯାବତୀୟ ପ୍ରାର୍ଥନାର ଉଦ୍ଦେଶ୍ୟ । ଏହି ଅନୁଭୂତି ଅତି ସହଜ ଓ ଅତି ସ୍ୱାଭାବିକ ହେବା ଦରକାର । ଏଥିଲାଗି କୌଣସି ପ୍ରକାର ଚାପ ରହିବା ଉଚିତ ନୁହେଁ । ଆମର ପ୍ରାର୍ଥନା ଆମକୁ ଏହି ଅନୁଭୂତି ଦିଗକୁ ଉନ୍ମୀଳିତ କରିନେଉ । ଆମେ ଯୋଉଠି ଯୋଉ କାମ କରୁଥାଏଁ ପଛକେ, ଆମର ଅନୁଭୂତି ଭଗବନ୍ମୁଖୀ ହୋଇ ରହିଥାଉ । ଆମର ଜୀବନର ନିର୍ମଳ ଧ୍ୟାନଦ୍ୱାରା

ଆମର ଜୀବନ ଭିତରେ କର୍ମ, ଜ୍ଞାନ ଓ ଭକ୍ତିର ସ୍ୱାଭାବିକ ଯୋଗ ସମ୍ଭବ ହେଉ । ବର୍ତ୍ତମାନ ଆମେ ସକାଳୁ ସନ୍ଧ୍ୟାଏ ଗାଁ ଗାଁ ବୁଲି ଦୁଃସ୍ଥ ଲୋକଙ୍କ ଲାଗି କାମ କରି ବୁଲୁଛୁ । କୋଉଠି ଦିନେ ଦିନେ ଡଙ୍ଗା ଉପରେ କଟିଯାଉଛି । କୋଉଦିନ କାଗଜପତ୍ରର ହିସାବ ପୂରଣ କରିବାରେ ସମସ୍ତ ଚାଲିଯାଉଛି । ଏହି ବ୍ୟସ୍ତତା ଭିତରେ ଆନୁଷ୍ଠାନିକ କୌଣସି ପ୍ରାର୍ଥନାର ଆୟୋଜନ କରିବା ଆମ ପକ୍ଷରେ ସମ୍ଭବ ହୋଇ ନ ପାରେ । ତଥାପି ଅନ୍ତର ଭିତରେ ଯେପରି ଆମେ ଆପଣାକୁ ପ୍ରାର୍ଥନାରତ କରି ରଖିଥାଉ, ପଳେ ପଳେ ପ୍ରତ୍ୟେକ କାର୍ଯ୍ୟ ଭିତରେ ଆମେ ଆମର ସତ୍ୟ ରୂପକୁ ଯେପରି ଅନୁଭବ କରିପାରୁ, ତାହାହେଲେ ଆମର ଆଉ କୌଣସି ଶୋଚନା ରହିବ ନାହିଁ । ଆମେ ଯୋଉଠିକି ଯାଉଥିବା, ଯେତେ ବଡ ବ୍ୟସ୍ତତାର ଅନ୍ଧାର ଦ୍ୱନ୍ଦ୍ୱ ଭିତରେ ପ୍ରବେଶ କରୁଥିବା, ଆମର ହିଅ କଦାପି ପ୍ରାର୍ଥନାପୀଠରୁ ଛିନ୍ନ ହୋଇ-ଯିବ ନାହିଁ; କଦାପି ଆମେ ଏକାକୀ ହୋଇ ପଡିବାର ତ୍ରାସ ଅନୁଭବ କରିବା ନାହିଁ । ଆମର ଦୃଷ୍ଟି ଓ ଆମର ଅନୁଭୂତି ସର୍ବଦା ନିର୍ମଳ ଓ ସଂଯୁକ୍ତ ହୋଇ ରହିଥିବ ।



—୪—

**୧୬ । ୧୦ । ୪୪**

ଏ ଦେଶରେ ସବୁରି ଉପରେ ସବୁରି ହାକିମି ଚାଲିଛି । ଉପରି ହାକିମ ତଳି ହାକିମଙ୍କ ଉପରେ ହାକିମି କରୁଛନ୍ତି । ତଳି ହାକିମ କିରାନିଙ୍କ ଉପରେ ହାକିମି କରୁଛନ୍ତି । ମୁନସୀ ବାବୁ ଦଫାଦାର ଉପରେ ଓ ଦଫାଦାର ଚୌକିଦାର ଉପରେ ହାକିମି କରୁଛନ୍ତି । ପୁଣି ଚୌକିଦାର ଗାଁବାଲାଙ୍କ ଉପରେ ହାକିମି ଦେଖାଉଛି । ଏଇ ହାକିମିର ଘୂଆଁଙ୍କ ଭିତରେ ସମସ୍ତେ ଆପଣା ଆଳସ୍ୟର ଦାସ ହୋଇ ରହିଛନ୍ତି । ତଳବାଲାଙ୍କ ପାଖରେ ସବୁ

ଉପରବାଲା ବାବୁ ହୋଇ ଯାଉଛନ୍ତି । ଦଫାଦାର ଗାଁ ବସ୍ତରେ ଗଲେ ସିଏ ମଧ୍ୟ ଗାଆଁ ବାଲାଙ୍କ ଆଗରେ ଗୋଡ଼ ଲମ୍ବାଇ ବାବୁ ହୋଇ ବସୁଛି । ଆପଣା ଅଳସ୍ୟକୁ ସବୁ ପ୍ରକାରେ ପ୍ରଶ୍ରୟ ଦେବାଟାକୁ ଆମ ଦେଶରେ ସଭ୍ୟତାର ସନ୍ତକ ବୋଲି ଧରି ନଆଗଲାଣି । ମୁଁ ଅପରଦ୍ୱାରା, ନୌକରଦ୍ୱାରା କାମ କରାଇବି—ପ୍ୟାଣ୍ଟ, କୁରୁତା, ଜୋତା ମୋଜା ପିନ୍ଧି ମୁଁ ଚଉକି ଉପରେ ବସିଥିବି, ଖୁସୀ ଗପ ଓ ବାଜେ ଗପ କରୁଥିବି, ଅନ୍ୟ ଲୋକେ ମୋ ଲାଗି ରାନ୍ଧିବାଢ଼ି ଦେବେ, ମୋ ଲାଗି ପାଣି କାଢ଼ି ଆଣି ଦେବେ, ମୋ ଲାଗି ବିଛଣା ବିଛାଇଦେବେ, ତାହାହେଲେ ଯାଇ ସମସ୍ତେ ମୋତେ ବାବୁ ବୋଲି କହିବେ । ଅଳସ୍ୟଟା ଅଳ୍ପମାତ୍ରାରେ ଦେହଗତ ହୋଇଗଲେ ମଣିଷର ଯେଉଁ ଦଶା ହେବାର କଥା, ଆମର ତାହା ହିଁ ହେଉଛି ।

ଆମ ଦେଶର ଶ୍ରେଷ୍ଠଠାରୁ ବଡ଼ ସବୁ ସେବକ ଯଦି ଆପଣା କାମ ଆପେ କରି ଜାଣିଥାନ୍ତେ, ତେବେ ଏ ଦେଶର ସେବା କରିବା ଲାଗି ସେମାନେ ଅଧିକ ଯୋଗ୍ୟ ହୋଇପାରିଥାନ୍ତେ । ସେମାନେ ଆପଣା ଲାଗି ପାଣି କାଢ଼ି ପାରୁଥାନ୍ତେ, ଆପଣା ଲୁଗା ଆପେ ଚପୁଡ଼ି ପାରୁଥାନ୍ତେ, ଆପଣା ଚୁଲି ଆପେ ଲଗାଇ ପାରୁଥାନ୍ତେ, ଆପଣା ସଉଦା ଆପେ କରିପାରୁଥାନ୍ତେ । ତା' ହୋଇଥିଲେ ଆଜି ହାକିମ ଆଉ ମଣିଷ ଭିତରେ ଯୋଉ ସାମାଜିକ ଓ ମାନସିକ ବ୍ୟବଧାନ ରହିଛି, ତା' ରହି ନ ଥାନ୍ତା; ଏ ଦେଶର ମଣିଷ ଏତେ ଭଯାଳୁ ହୋଇ ନ ଥାନ୍ତେ ବା ବାର ପ୍ରକାର ନେହୁରା ଖୋସାମତ କରିବାର ନିକୃଷ୍ଟ ଆଚରଣ ଦେଖାଉ ନ ଥାନ୍ତେ । ସେଦିନ ଏରିସମାକୁ ବଡ଼ ହାକିମ କଟକରୁ ଆସିଲେ । କଟକରେ ତାଙ୍କର କୋଠାଘର ଅଛି, ପାଇଖାନା ଅଛି, ଗାଧୋଇବା କୁଣ୍ଡ ରହିଛି । ତେଣୁ ଏଠି ଏ କାଙ୍ଗାଳ ରାଜ୍ୟର ସେବା କରିବାକୁ ଆସିଲେ ମଧ୍ୟ ତାଙ୍କ ଲାଗି ରହିବାର, ପାଇଖାନା ଯିବାର ବା ଗାଧୋଇବାର ବ୍ୟବସ୍ଥା କରିବା ଲାଗି କୋଡ଼ିଏ ତିରିଶ ଜଣଙ୍କର ମୁଣ୍ଡ ବଥେଇବାକୁ ପଡ଼ିବ, କୋଡ଼ିଏ ତିରିଶଙ୍କୁ କୁଲିଗିରି କରିବାକୁ ପଡ଼ିବ । ସତେ ଅବା ଆମ ହାକିମ ଆମ ଦେଶର ନୁହନ୍ତି ! ଆମ ସେବକ ନୁହନ୍ତି ! ତେଣୁ ଦିଏ ଯୋଉଠିକି ଅନୁଗ୍ରହ କରି ଯିବେ, ସେଠି ତାଙ୍କ ଲାଗି ନକଲି ଇନ୍ଦ୍ରଭୁବନ ତିଆରି

ହେବ । ସେଠି ସେ ଉଚ୍ଚ ଆସନରେ ବସି ଲକ୍ଷ ମଣିଷର ମୁଣ୍ଡିଆ ପାଇବେ । ମଣିଷଙ୍କର ହୃଦ୍‌ଗୁହାରି ଶୁଣି କଲମ ମାରିଦେଇ ଯିବେ । ହାକିମଙ୍କଠାରେ ଯଦି ହାକିମୀ ଦେଖାଇବା ଅପେକ୍ଷା ମଣିଷ ପରି ବ୍ୟବହାର କରିବାର ପ୍ରବୃତ୍ତି ଅଧିକ ଥାନ୍ତା, ତେବେ ସେ ଏସବୁ ଅତିରିକ୍ତ ବ୍ୟବସ୍ଥାରେ ଆପେ ଲଜ୍ଜିତ ହୋଇପଡ଼ନ୍ତେ । କିନ୍ତୁ ଯୋଉଠି ମଣିଷର ନମ୍ର ଓ ଭଦ୍ର ବ୍ୟବହାର ଅପେକ୍ଷା ଚୌକି ଟେବୁଲ, କୋଟ ମୋଜା ଓ ଇଂରାଜୀ ଭାଷାରେ କଥାବାର୍ତ୍ତା କରିବାକୁ ଅଧିକ ଖାତିର ମିଳେ, ସେଠି ହାକିମକୁ ଲାଜମାଡ଼ିବ କାହିଁକି ? ନାନା କୃତ୍ରିମ ଉପଚାରରେ ନାନାପ୍ରକାର ହାଉଦା ପକାଇଥିବା ବୋଲକରା-ମାନଙ୍କଠାରୁ ଅସମ୍ମାନିତ ପୂଜା ପାଇବାରେ ସେ ମଧ୍ୟ ବେଶ୍ ଗୌରବ ପାଉଥିବେ ।

ସୈନ୍ୟବାହିନୀର ଯିଏ ସେନାପତି ହୁଏ, ତାକୁ ସାଧାରଣ ସୈନ୍ୟ ହିସାବରେ ଜୀବନ ଆରମ୍ଭ କରିବାକୁ ପଡ଼େ । ଯୋଉଠି ସେନାପତି ଝଗ୍ରାବର୍ଷାରେ ଦଉଡ଼ି ଜାଣି ନ ଥିବ, ବନ୍ଧୁକ ମାରି ଜାଣି ନ ଥିବ, ଉପାସ ରହି ଜାଣି ନ ଥିବ, ସେଠି ସୈନ୍ୟବାହିନୀର କି ସ୍ଥିତି ହେବ, ସେକଥା ସମସ୍ତେ ଅନୁମାନ କରି-ପାରିବେ । ଆମ ଦେଶର ହାକିମ କେବଳ ହାକିମୀ କରି ଜାଣନ୍ତି, ଉଚ୍ଚ ପାଠ ଓ ମୋଟା ଦରମାର ତ୍ରାସରେ ସମସ୍ତଙ୍କୁ ତ୍ରସ୍ତ କରି ଆପେ ଅଲଗୁଆ ହୋଇ ଜାଣନ୍ତି । ସେ ନିଜେ ପାଣି ଟିକିଏ କାଢ଼ି ପାରନ୍ତି ନାହିଁ କି କାଠ ଖଣ୍ଡେ ଚିରି ଜାଣନ୍ତି ନାହିଁ । ତଥାପି ଚାକରକୁ ପାଣି କାଢ଼ି ବା କାଠ ଚିରି ଆସିଲା ନାହିଁ ବୋଲି ଗାଳିଦେଇ ଜାଣନ୍ତି । ସେ ରୋଷେଇ ଜାଣନ୍ତି ନାହିଁ, ତଥାପି ଜିଭକୁ ସୁଆଦ ନ ଲାଗିଲେ ରୋଷେଇଆକୁ ନିକାଲି ଦେଇ ଜାଣନ୍ତି । ସେ କେବେ ଚାଷ କରନ୍ତି ନାହିଁ ଅଥଚ କୃଷିମାନଙ୍କର ଭାଗ୍ୟଧର ହୋଇ କଟକ ଅଫିସରେ ବସନ୍ତି । ଅଉ ଏହିପରି ହାକିମମାନଙ୍କୁ ନେଇ ଗଭର୍ନରର ଭୂତକୁ ଆମ ଦେଶରେ ବେଶ୍ ପୂଜା ଓ ପ୍ରଶଂସା କରିହୁଏ । ଲୋକଙ୍କୁ ଭୟ ଦେଖାଇ, ଲୋକଙ୍କଠାରୁ ମନ ଭିତରେ ଯୋଜନେ ବ୍ୟବଧାନରେ ରହି ଲୋକଙ୍କର କଲ୍ୟାଣ କରାଯାଉଛି ବୋଲି ବେଶ୍ ଏ ଦେଶରେ ନାଗରା ପିଟାଯାଏ ।

୧୬ । ୧୦ । ୫୫

ଏରସମା ଥାନାର କାଙ୍ଗାଲ ଲୋକଙ୍କୁ ବଞ୍ଚାଇ ରଖିବାକୁ ଯେଉଁ ସରକାରୀ ଅଫିସରମାନେ ଏଠାକୁ ଆସୁଛନ୍ତି, ଆମେ ଦେଖୁଛୁ, ପଦେ ପଦେ ତାଙ୍କ ମୁହଁରୁ ଇଂରାଜୀ ଭାଷା ବାହାରିପଡ଼ୁଛି । ଯେଉଁମାନେ ଇଂରାଜୀ ଓଡ଼ିଆ ଉଭୟ ଭାଷା ଜାଣନ୍ତି, ସେମାନଙ୍କ ସହିତ ସେମାନେ କେବଳ ଇଂରାଜୀ ଭାଷା ବ୍ୟବହାର କରିବାକୁ ପସନ୍ଦ କରୁଛନ୍ତି । ଯେଉଁମାନେ ପୁଣି ମୋଟେ ଇଂରାଜୀ ଭାଷା ଜାଣିନାହାନ୍ତି, ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, ସେମାନଙ୍କ ସହିତ କଥାବାର୍ତ୍ତା କରିବାବେଳେ ମଧ୍ୟ ହାକମଙ୍କ ମୁହଁରୁ କପଟ ଇଂରାଜୀ କଥାଗୁଡ଼ାକ ବାହାରିପଡ଼ୁଛି । ଏପରି ବ୍ୟବହାର କୋଉ ସଭ୍ୟତା ବା ସଂସ୍କୃତିର ପରିଚୟ, ସେ କଥା ଦେଶର ପଣ୍ଡିତମାନେ ନିର୍ଣ୍ଣୟ କରିବେ । ମୁଁ କେବଳ ସାଧାରଣ ବ୍ୟାବହାରିକ ଭଦ୍ରତା କଥା ଭାବୁଛି । ଜଣେ ଲୋକ ଓଡ଼ିଆ ଭାଷା ଜାଣେ ନାହିଁ, ମୁଁ ତା' ସହିତ ଯଦି ଜିଦ୍‌କରି ଓଡ଼ିଆ ଭାଷାରେ କଥାବାର୍ତ୍ତା କରେ, ତେବେ ତାହା ଅତି ଅଭଦ୍ରତା ହେବ । ଏକଥା ସମସ୍ତେ ସ୍ୱୀକାର କରିବେ । କିନ୍ତୁ ଆମ ଦେଶର ମନ ଅନେକ ବର୍ଷ ଧରି କି ବକାକ୍ରା ହୋଇଯାଇଛି କେଜାଣି, ଇଂରାଜୀ ଭାଷା ବେଳକୁ ଆମେ ଠିକ୍ ଓଲଟାକରି ଭାବୁ । ପାଞ୍ଚଜଣ ଇଂରାଜୀ ଜାଣି ନ ଥିବା ଓଡ଼ିଆଙ୍କ ସାମନାରେ ଯଦି ମୁଁ ପଦେ ଦିପଦ ଠୋ' ଠୋ' ଇଂରାଜୀ କହି ପକାଇବି, ତେବେ ମୋତେ ସମସ୍ତେ ଶିକ୍ଷିତ ବୋଲି କହିବେ, ବାବୁ ବୋଲି ଭୟ କରିବେ, ସଭ୍ୟ ବୋଲି ଖାତିର କରିବେ । ଏହିପରି ଗୋଟାଏ ମିଥ୍ୟା ଆମର ବୁଦ୍ଧିକୁ କାମୁଡ଼ି ଧରିଛି । ଆଉ ଅନେକ ବର୍ଷ ହେଲା କାମୁଡ଼ିଧରିବା ଫଳରେ ଏହା ଆମର ଗୋଟାଏ ସଂସ୍କାର ହୋଇଯାଇଛି । କୌଣସି ସଭ୍ୟ ଦେଶରେ ଏହା ହୁଏ ନାହିଁ । କୌଣସି ଭଦ୍ର ସମାଜରେ ଆଜି ଏକଥା ଚଳୁ ନାହିଁ । ଆଗେ ଇଉରୋପରେ ଏହିପରି ହେଉଥିବାର ହାସ୍ୟାସ୍ପଦ ଉଦାହରଣମାନ ମିଳେ । କେତେ ଶହ ବର୍ଷ ତଳେ ଫରାସୀ ଭାଷାକୁ ଏମିତି ଗୋଟାଏ ବୁଦ୍ଧିଗତ ସମ୍ମାନ ଦିଆଯାଉଥିଲା । ଫରାସୀ ଭାଷା ନ ଶିଖିଲେ ମଣିଷ ଭଦ୍ରସମାଜରେ ବସିପାରୁ ନ ଥିଲା । ସମ୍ଭ୍ରାନ୍ତ ଘରର ପୁଅଝିଅଙ୍କ ସହିତ କଥା କହିପାରୁ ନ ଥିଲା । ଯୁବକ ଗାନ୍ଧି

ବଲାତରେ ସଭ୍ୟ ହେବାର ଲାଳସାରେ ପଡ଼ି କେମିତି କେତେ ଧନ ଫରାସୀ ଭାଷା ଶିଖିବା ଆରମ୍ଭ କରିଥିଲେ, ସେକଥା ଆମେ ସମସ୍ତେ ଜାଣିଛେ । ପ୍ରାଚୀନ ଓ ମଧ୍ୟଯୁଗର ଇଉରୋପରେ ଲାଟିନ୍ ଭାଷାକୁ ମଧ୍ୟ ଏହି ଖାତିର ଦିଆ ଯାଉଥିଲା । କାବ୍ୟ-କବିତାଠାରୁ ଆରମ୍ଭ କରି ବିଜ୍ଞାନ ଓ ଦର୍ଶନ ପର୍ଯ୍ୟନ୍ତ ଯିଏ ଯାହା ଲେଖୁଥିଲା, ତାକୁ ସେ ଲାଟିନ୍ ଭାଷାରେ ନ ଲେଖିଲେ ତାହା ପଣ୍ଡିତ-ସମାଜର ନଜରକୁ ଆସିପାରୁ ନ ଥିଲା । ଧର୍ମ ଓ ଧର୍ମ-ମନ୍ଦିରର ସବୁ ଅନୁଷ୍ଠାନ ଲାଟିନ୍ ଭାଷାରେ ହେଉଥିଲା । ପାଦ୍ରୀ ଲାଟିନ୍ ଭାଷାରେ ଲାଟିନ୍ ବୁଝୁ ନ ଥିବା ଲୋକଙ୍କୁ ଧର୍ମ ଉପଦେଶ ଦେଉଥିଲେ । ବର୍ତ୍ତମାନ ମଧ୍ୟ ଦକ୍ଷିଣ ଇଉରୋପର ଅନେକ ଜାଗାରେ ଗୀର୍ଜାରେ ଏହି ଲାଟିନ୍ ଭାଷାରେ ପୂଜାକର୍ମ ହୁଏ । ବେଶ୍ କେତେ ଶତାବ୍ଦୀ ଧରି ଲାଟିନ୍ ଇଉରୋପର ଦେବଭାଷା ଥିଲା, ଠିକ୍ ଆମ ଦେଶର ସଂସ୍କୃତ ଭାଷା ପରି ।

ଆମ ଦେଶର ବ୍ରାହ୍ମଣମାନେ ଜ୍ଞାନ ଓ କ୍ଷମତାର ମୋହରେ ପଡ଼ି ବର୍ଷ ବର୍ଷ ଧରି ସଂସ୍କୃତ ଭାଷାର ସିନ୍ଦୁକ ଭିତରେ ଏ ଦେଶର ଜ୍ଞାନ-ସାଗରକୁ ବନ୍ଦ କରି ରଖିଥିଲେ । ସଂସ୍କୃତ ଭାଷାର କୂଅ ଭିତରେ ଏ ଦେଶର ଚିନ୍ତାର-ସ୍ରୋତକୁ ଅଟକାଇ ଦେଇଥିଲେ । ଜ୍ଞାନକୁ କୁଳବଧୂ କରି ଲୁଚାଇ ରଖିବାର ପାଣ୍ଡିତ୍ୟ ଯେତେବେଳେ ଯେଉଁ ସଂସ୍କୃତରେ ଦେଖାଦେଇଛି, ସେଠି ଭାଷାର ମର୍ଯ୍ୟାଦା ନଷ୍ଟ ହୋଇଯାଇଛି । ସଂସ୍କୃତକୁ ଅନ୍ତଃପୁରର ଜ୍ଞାନବିଳାସର ବାହନ କରି ରଖି ଆମ ଦେଶର ଜ୍ଞାନ ଓ ଶକ୍ତି କେତେଦୂର କ୍ଷୁନ୍ନ ହୋଇଛି, ସେକଥା ଯେ କେହି ଅଳ୍ପ ବହୁତ ଜାଣେ । ଆଜି ସଂସ୍କୃତ ଭାଷା ମରିଗଲାଣି, ଇଂରାଜୀ ଭାଷା ତାର ସ୍ଥାନ ଅଧିକାର କରିଛି । ଆଗେ ସଂସ୍କୃତ ଭାଷା ଜରିଆରେ ଯେମିତି ଦଳେ ଲୋକଙ୍କୁ ଉଚ୍ଚ ଓ ଆଉ ଦଳେ ଲୋକଙ୍କୁ ଅନ୍ଧକରି ରଖା ଯାଉଥିଲା, ବର୍ତ୍ତମାନ ଇଂରାଜୀ ଭାଷା ଜରିଆରେ ଠିକ୍ ସେମିତି ହେଉଛି । କଚେରିର କର୍ମଚାରୀ, ଚଉକୀ ଟେବୁଲର ହାକିମ ଆଉ ସ୍କୁଲ କଲେଜର ଶିକ୍ଷିତମାନେ ଇଂରାଜୀ ଭାଷାକୁ ବାହନ କରି ସାରା ଦେଶର ସଂସ୍କୃତିକୁ କୁଳବଧୂ କରି ରଖିବାର ଚେଷ୍ଟା ଏପର୍ଯ୍ୟନ୍ତ ଚଳାଇଛନ୍ତି । ଇଂରେଜ ଶାସନ ଏ ଦେଶରୁ ଅଠବର୍ଷ ହେଲା ଗଲାଣି, କିନ୍ତୁ ଆମର ଦାସତ୍ୱ ଆମକୁ ଛାଡ଼ି ଯାଇ ନାହିଁ । ସଫା

ଲୁଗା, ପ୍ୟାଣ୍ଟ କୋଟ, ଚାକର—ଚପରାସୀର ନାନା ଆଭରଣ ଭିତରେ ଆମେ ନିଜକୁ ଯେତେ ବାବୁ ବୋଲି ଦେଖାଇ ହେବାର ଆଡ଼ମ୍ବର କରୁଥିଲେ ମଧ୍ୟ ଆମ ଭିତରେ ସଭ୍ୟ—ସଂସ୍କୃତ ମଣିଷର ନିର୍ଭୀକତା ଏପର୍ଯ୍ୟନ୍ତ ଆସିନାହିଁ । ଯିଏ ଆଜି ଆମର ଅଭ୍ୟାସଗତ ଓ ସଂସ୍କାରଗତ ପାଠ ପଢ଼ୁଛୁ, ତାର ମଧ୍ୟ ନିର୍ଭୀକତା ଚାଲିଯାଉଛି । ସଂସ୍କୃତି ଦୃଷ୍ଟିରୁ ଦେଖିଲେ ସେ ମଧ୍ୟ କେବଳ ମେରୁଦଣ୍ଡହୀନ, ଶ୍ରଦ୍ଧାହୀନ ଓ ଶକ୍ତିହୀନ ହୋଇ ପଡ଼ିରହୁଛି । ଆଉ ଇଂରାଜୀ ଭାଷାର ଖୋଲପା ଏହି ମେରୁଦଣ୍ଡହୀନତାକୁ ବେଶ୍ ଆଶ୍ରୟ ଦେଇ ମନ ବୁଝାଇ ରଖିଛି ।

୨୮ । ୧୦ । ୫୫

ଇଂରାଜୀ ଭାଷା ପୃଥିବୀର ବଡ଼ ଭାଷାମାନଙ୍କରୁ ଗୋଟିଏ । ଏହାର ଏକ ବଳିଷ୍ଠ ଇତିହାସ ଅଛି, ବଳିଷ୍ଠ ସାହିତ୍ୟ ମଧ୍ୟ ଅଛି । ଏହି ଭାଷାକୁ ବାହନ କରି ଶତାବ୍ଦୀ ଶତାବ୍ଦୀ ଧରି ଗୋଟିଏ ସଂସ୍କୃତି ବିକଶିତ ହୋଇଆସିଛି । ଏହି ବିଷୟରେ ଯିଏ ଟିକିଏ ଜାଣିଥିବ, ଇଂରାଜୀ ଭାଷାକୁ ସେ ନିଶ୍ଚୟ ଶ୍ରଦ୍ଧାକରି ଶିଖିବ । ଇଂରାଜୀ ଭାଷା ଜାଣି ଇଂରାଜୀ ସାହିତ୍ୟର ଅମୂଲ୍ୟ ସମ୍ପଦମାନ ସେ ନିଶ୍ଚୟ ଆବିଷ୍କାର କରିଯିବ । କିନ୍ତୁ ଆମ ଦେଶରେ ଯେଉଁ ବାବୁମାନେ କ୍ଷେତ୍ରରେ ଅକ୍ଷେତ୍ରରେ ଇଂରାଜୀ ଭାଷା କହିବାର ଅମାର୍ଜିତ ରୁଚି ଦେଖାନ୍ତି, ଇଂରେଜୀ ଭାଷା ବା ସାହିତ୍ୟ ପ୍ରତି ଯୋଗ୍ୟ ଶ୍ରଦ୍ଧା ରଖି ସେମାନେ ଏପରି କରନ୍ତି ବୋଲି ମୁଁ କଦାପି କହିବ ନାହିଁ । ଆମର ମନ ଭିତରେ ଆପଣାକୁ ଶ୍ରେଷ୍ଠ ବୋଲି ଗଣିବାର ଯେଉଁ ପ୍ରବୃତ୍ତି ଆମର ଏକପ୍ରକାର ସଂସ୍କୃତିଗତ ହୋଇ-ଯାଇଛି, ସେହି ପ୍ରବୃତ୍ତିକୁ ଯୋଗାଇ ଦେବା ପାଇଁ ଆମେ ଦର-ଇଂରାଜୀ ଓଡ଼ିଆ ଭାଷା କହି ଆମ ଦେଶର ମଣିଷଙ୍କ ଉପରେ ବଳଆଁରପଣ ଦେଖାଇ ହେଉ । କୌଣସି ଦୁଇ ଜଣ ଇଂରେଜଙ୍କୁ କେବେ କେହି ଇଂରେଜୀ ଛଡ଼ା ଅନ୍ୟ ଭାଷାରେ କଥା କହୁଥିବାର ଦେଖିବ ନାହିଁ । କୌଣସି ଦୁଇ ଜଣ ଜର୍ମାନଙ୍କୁ ଜର୍ମାନ ଛଡ଼ା ଅନ୍ୟ ଭାଷାରେ ଚିଠି ଲେଖୁଥିବାର ଦୃଷ୍ଟାନ୍ତ ଦେଖିବାକୁ

ମିଳିବ ନାହିଁ । ଆମେ ଦୁଇ ଜଣ ଓଡ଼ିଆ, ତେଣୁ ସେହି ଓଡ଼ିଆରେ ହିଁ ଆମେ କଥାବାର୍ତ୍ତା ହେବା, ଚିଠି ଲେଖିବା । ଯେ କୌଣସି କାଳ ଲାଗି ଏହାକୁ ସ୍ୱାଭାବିକ ଭଦ୍ରତା ବୋଲି ଧରିବାକୁ ହେବ । କିନ୍ତୁ ଆମ ଦେଶର ତଥାକଥିତ ହାକିମ ଓ ଶିକ୍ଷିତ ଅଭଦ୍ରତାର ଦୁଇ ପାହାଚ ଟପି ଯାଇଛନ୍ତି । ମୋ ଆଗରେ ଠିଆ ହୋଇ ମୋ କଥା ଶୁଣୁଥିବା ମଣିଷ ଇଂରେଜୀ ନ ଜାଣିଥିଲେ ମଧ୍ୟ ମୁଁ ଇଂରାଜୀରେ କଥା କହୁଥିବି, ଆଉ ସେହିପରି କରିବାକୁ କୌଣସି ପ୍ରକାର ସଙ୍କୋଚ ଅନୁଭବ କରୁ ନ ଥିବି । ଏପରି ମଧ୍ୟ ଆମ ଦେଶରେ ହେଉଛି । ଏ ସମସ୍ୟା କେବଳ ଓଡ଼ିଆ ବା ଇଂରେଜୀ ଭାଷାର ଭାଷାଗତ ସମସ୍ୟା ନୁହେଁ, ଏହା ସାମାଜିକ ଓ ଅସାମାଜିକ ସ୍ୱଭାବର ସମସ୍ୟା । ଏହା ସମ୍ମାନିତ ଓ ଅସମ୍ମାନିତ ମନୋବୃତ୍ତିର ସମସ୍ୟା । ଇଂରାଜୀ ଭାଷା ଆମ ଦେଶରେ ଦୁଇଟା ଶ୍ରେଣୀ ସୃଷ୍ଟି କରିବାରେ ବର୍ତ୍ତମାନ ମଧ୍ୟ ବେଶ୍ ସାହାଯ୍ୟ କରୁଛି । ଆମ ଦେଶର ହାକିମ ଯଦି ଆଜି ଶୁଦ୍ଧ ଓଡ଼ିଆ ଭାଷାରେ ମାର୍ଜିତ ଭାବରେ ସବୁ କଥା କହିଶିଖନ୍ତେ, ଆମ ଦେଶର ଶିକ୍ଷକ ଓ ଅଧ୍ୟାପକ ଯଦି ଅପଣା ଆପଣା ଅର୍ଜିତ ଜ୍ଞାନକୁ ଓଡ଼ିଆ ଭାଷାରେ ପ୍ରକାଶ କରିପାରିବାର ନମ୍ରତା ଅର୍ଜନ କରିପାରନ୍ତେ, ତେବେ ଏ ଦେଶର ଓ ସଭ୍ୟତାର ରଙ୍ଗ ବଦଳିଯାନ୍ତା, ଏ ଜାତିର ସ୍ୱଭାବ ବଦଳି-ଯାନ୍ତା । ବର୍ତ୍ତମାନ ମୁଷ୍ଟିମେୟ ବିଜ୍ଞ ଜନ ସହସ୍ର ସହସ୍ର ଅଜ୍ଞ ଜନଙ୍କର କ୍ଷତି କରୁଛନ୍ତି । କୋର୍ଟ କଚେରିରେ ଇଂରେଜୀପଢ଼ୁଆ ହାକିମ ଆଗରେ ଗାରଦରେ ଠିଆହୋଇଥିବା ମୂର୍ଖ ଓଡ଼ିଆ ଆପଣାର ନିର୍ବୁଦ୍ଧିଆପଣକୁ ନିନ୍ଦିବାରେ ଲାଗିଛି । ସେବକଠାରୁ ସେବା ପାଇବାର ଅଧିକାରୀ ଆମ ଦେଶରେ ଯୋଜନ ଯୋଜନ ଦୂରରେ ରହିଛି । ଏ ଦେଶର ମଣିଷ ନେହୁରା କରୁଛି, ଖୋସାମତ କରୁଛି, ଲାଞ୍ଚ ଯାଚୁଛି; ତରମର ତଥାପି ତଳେ ପଡ଼ିରହିଛି । ଏ ଦେଶର ହାକିମ ଧମକ ଦେଖାଉଛି । ଆପଣା ମହଲରେ ଇଂରାଜୀରେ କଥାବାର୍ତ୍ତା ହେଉଛି । ଇଂରାଜୀରେ ହୁକୁମନାମା ଲେଖୁଛି, ଲାଞ୍ଚ ନେଉଛି ଓ ସମାଜକୁ ଅପଣା ଅଡ଼ାରେ ଏପାଖ ସେପାଖ କରିବାରେ ଲାଗିଛି । ମଣିଷ ପ୍ରତି ଓ ଆପଣାର ସମ୍ମାନ ପ୍ରତି ଶ୍ରଦ୍ଧା ଥିଲେ କୌଣସି ହାକିମ ଏପରି କରୁ ନ ଥାନ୍ତେ । ମଣିଷକୁ ଇଂରେଜୀ କଥାର ଯୋପଡ଼ରେ ହୁଡୁଡ଼ାଇଦେଇ କାଗଜପତ୍ରର ଜଟିଳ ମେସିନ ଦେଇ କୌଣସି

ହାକିମ ଏ ଦେଶରେ ବସିବାକୁ ଭଲ ପାଉ ନ ଥାନ୍ତି । ଯିଏ ଗୋଟାଏ ଭାଷାକୁ ଯଥାର୍ଥରେ ଶ୍ରଦ୍ଧା କରେ, ଅଉ ଗୋଟାଏ ଭାଷାକୁ କଦାପି ସେ ଘୃଣା କରିପାରିବ ନାହିଁ । ଶ୍ରଦ୍ଧା ଯେତେ ପ୍ରଶସ୍ତ ଥିଲେ ମଧ୍ୟ ତା' ଭିତରେ ଘୃଣାର କୌଣସି ସ୍ଥାନ ନାହିଁ । ତେଣୁ ଇଂରାଜୀ ଭାଷାକୁ ଭଲ ପାଇବା ହାକିମ ଓଡ଼ିଆ ଭାଷାକୁ ଘୃଣା କରିବ କାହିଁକି ? ଇଂରାଜୀ ଶବ୍ଦର ବାଣ ମାରି ଓଡ଼ିଆ ମଣିଷଠାରୁ ଦୂରଛଡ଼ା ହୋଇ ରହିବାର ଅଭଦ୍ରତା ସେ ଦେଖାଇବ କାହିଁକି ?

ଆଉ ଇଂରାଜୀ ଭାଷାକୁ ଶ୍ରଦ୍ଧା କରିବାର କଥା ! ଯିଏ ଆଜି ଏ ଦେଶର କାଙ୍ଗାଳ ସଭାରେ ଇଂରାଜୀ ଭାଷାର ସୁନା ନଈ ଟେକିବାଉଛି, ତାକୁଇ ପଚାରିଯାଉ ଇଂରାଜୀ ସାହିତ୍ୟ ଓ ଇଂରାଜୀ ସଭ୍ୟତା ସହିତ ସେ କେତେ ଦୂର ପରିଚିତ ହୋଇଛି । ଆପଣାର ପାଠ୍ୟପୁସ୍ତକ ଓ ଇଂରାଜୀ ଭାଷାର କେତେଟା ଶସ୍ତା ଡିଟେକ୍‌ଟିଭ୍ ଉପନ୍ୟାସ ଛଡ଼ା ଇଂରେଜୀ ଭାଷାର କେତେଟା ବହି ସେ ପଢ଼ିଛି ଓ ପଢ଼ିବାର ଆଗ୍ରହ ରଖିଛି । ଏ ପରୀକ୍ଷାରେ ହୁଏତ ଆମ ଦେଶର ଶତକଡ଼ା ନବେ ହାକିମ ଫେଲ ହୋଇଯିବେ । ତଥାପି ସେହିମାନେ ହିଁ ଇଂରେଜୀ ଭାଷାକୁ ଆପଣା ବଡ଼ାଇକୁ ଲୁଚାଇ ରଖିବାର ଖୋଳ ପରି ବ୍ୟବହାର କରୁଛନ୍ତି । ସେହିମାନେ ଇଂରେଜୀ ଭାଷା କହି ଏ ଦେଶର ଅଜ୍ଞାନ-ମହାସମୁଦ୍ରରେ ମନ ମଉଜରେ ମାଛଧରା ବୋଟ୍ ଧରି ବୁଲୁଛନ୍ତି । ଅନେକ କୁଶିକ୍ଷା ଓ ଅନେକ କୁସଂସ୍କାରର ପରିଣାମ ସ୍ୱରୂପ ଆମ ଦେଶରେ ଏ ଅସାମାଜିକତା ଆଜିପର୍ଯ୍ୟନ୍ତ ଭରିରହିଛି ।

୨୦ । ୧୦ । ୫୫

ମଣିଷର ମନ ଭିତରେ ଭୟ ପଶିଲା ଦିନୁ ହିଁ ମଣିଷ ନିଜ ଧର୍ମର ନିଜ ଭଗବାନଙ୍କୁ ଭରସା କରିବାକୁ ଆରମ୍ଭ କଲା । ଅଭୟ ଦେବା ସବୁ ଧର୍ମ ଓ ସବୁ ଭଗବତ୍ ବିଶ୍ୱାସର କାମ । ଧର୍ମ ଓ ଭଗବାନଙ୍କର ଆଶ୍ରୟ-ଛାୟାରେ ରହି ମଣିଷ ସାଧାରଣତଃ ଅଧିକରୁ ଅଧିକ ଆନନ୍ଦ ପାଇବା କଥା, ଅଧିକରୁ ଅଧିକ

ଉତ୍ସାହ ଓ ପ୍ରେରଣା ନେଇ ଧର୍ମ ଓ ଭଗବତ୍ ବିଶ୍ୱାସର ନାନା ଆବଶ୍ୟକତାକୁ ନିର୍ଭୀକ ନିର୍ମଳ ମନରେ ପୂରଣ କରିବାର କଥା । କିନ୍ତୁ ମଣିଷ ଭିତରେ ଆଜି ସେ ପ୍ରେରଣା କାହିଁ ? ଅସଲ ଧର୍ମ ମରିଯାଇ ଆଜି ଖାଲି ମିଛ ଧର୍ମର ବାଲିବୁଦ ମଣିଷର ଗ୍ରେଣ୍ଟିଆ ଘରଟିକୁ ଅନ୍ଧାର ଉଢ଼ାଳ କରି ରଖିଛୁ । ମଣିଷକୁ ନାନାପ୍ରକାର ଖଣ୍ଡ-ଆସକ୍ତି ଓ କ୍ଷଣିକ ପ୍ରୀତିର ଝଡ ତୋଫାନରେ ବ୍ୟତିବ୍ୟସ୍ତ କରି ରଖିଛୁ । ଅସଲ ବିଶ୍ୱାସ ମରିଯାଇ ନାନାପ୍ରକାର ଖଣ୍ଡ ବିଶ୍ୱାସ ବି ମାର୍ଜିତ ଅବିଶ୍ୱାସ ମଣିଷକୁ ନାନାପ୍ରକାର ଦାସରେ ବିହ୍ୱଳ କରି ରଖିଛୁ । ଶାସ୍ତ୍ର ପୁରାଣ ଆମର ଅତି ପାଖରେ ରହିଛୁ । ଧର୍ମ ଦର୍ଶନ ବିଷୟରେ ବାଡ଼ି ଗାଡି ବକ୍ତୃତା ଅମ କାନ ଅତଡ଼ା ପକାଉଛୁ । ତଥାପି ଆମେ ଧାର୍ମିକ ଜୀବନର ଅନେକ ଦୂରରେ ରହିଛୁ; ତଥାପି ଆମେ ସବୁ ଭୟକୁ ହରଣ କରି ନେବାର ବଳବାନ୍ ବିଶ୍ୱାସର ସ୍ୱାଦ ଏପର୍ଯ୍ୟନ୍ତ ପାଇପାରିନାହୁଁ । ଆମର ଆଗ୍ରହରେ କେତେ ପ୍ରକାର ଛଳନା କରି କେତେ ପ୍ରକାର ଅବିଶ୍ୱାସ ଦିନକୁ ଦିନ ଜମାହୋଇ ଚାଲିଛୁ ।

ଏ ବର୍ଷ ପାଞ୍ଜିର ଲେଖା ଅନୁସାରେ ପଞ୍ଚଗ୍ରହକୂଟ ହେଲା । ସେଥିଲାଗି ଉତ୍କଳ ମଣିଷ ବର୍ଷ ଆରମ୍ଭରୁ ବିପଦ ଗଣୁଥିଲା । ଗ୍ରହମାନଙ୍କୁ ଶାନ୍ତ ପୂଜାପୁଅ କରି ରଖିବା ଲାଗି ଏବର୍ଷ କେତେ ଜାଗାରେ ହୋମ ହେଲା, ଯଜ୍ଞ ହେଲା, ନାମସଂକୀର୍ତ୍ତନ ହେଲା, କେତେ ବଡ଼ଲୋକ କାଙ୍ଗାଳି ଭୋଜନ କରାଇଲେ । ତଥାପି ଓଡ଼ିଶା ଉପରୁ ଗ୍ରହ-ଅପଦେବତାର ରୋଷ ତୁଟିଲା ନାହିଁ । ମରୁଡ଼ି ପରେ ବନ୍ୟାର ବିଭୀଷିକା ଆସି ସହସ୍ର ସହସ୍ର ସଂସାରକୁ ଉଚ୍ଛନ୍ନ କରି ଦେଇଗଲା, ସହସ୍ର ସହସ୍ର ଅନ୍ତ୍ୟସ୍ଥ ଭାଙ୍ଗିଦେଇ ଚାଲି । ଅଉ ମାସକ ପରେ ପୁଣି କୁଆଡ଼େ ଅଉ ଗୋଟାଏ ଘାଟି ଆସୁଛୁ । ଏଥର ବଡ ବଡ ଗ୍ରହମାନଙ୍କର ବଡ କୋପ ବାହାରିବ । ସମୁଦ୍ର ମାଡ଼ିଆସିବ, ଆକାଶରୁ ଅଗ୍ନି ବର୍ଷା ହେବ, ଇତ୍ୟାଦି ଇତ୍ୟାଦି । ସେଥିଲାଗି ଏ ଅଞ୍ଚଳର ଲୋକେ ସାଗରତୀରରେ ଗୋଟାଏ ଯଜ୍ଞ କରିବାର ଆୟୋଜନ କରୁଛନ୍ତି । ସେଥିଲାଗି ଅର୍ଥ ସଂଗ୍ରହ ଚାଲିଛୁ । ଲୋକଙ୍କର କାହିଁ ଅନ୍ଧବିଶ୍ୱାସକୁ ପୁଣି ଗୋଟାଏ ପ୍ରଶ୍ରୟ ଦେବାର ଉପକ୍ରମ ହେଉଛୁ ।

ଏଣେ ଘରେ ଖାଇ ନାହିଁ ବୋଲି ମଣିଷ କାଙ୍ଗାଳି ପରି ଘନ ଘନ ଥାନାକୁ ଦଉଡ଼ୁଛି । ପେଟଟା ଦେଖାଇ ମୁଠାଏ ଚାଉଳ ପାଇବା ଲାଗି ନାନାପ୍ରକାର କରୁଣ ଅଭିନୟରେ ସେ ଭାଗ ନେଉଛି । ପୁଣି ସେହି ମଣିଷ ବିଶ୍ୱଶାନ୍ତି ଲାଗି ଯଜ୍ଞ କରିବାକୁ ହେବ ବୋଲି ବିଶ୍ୱାସ କରି ଘରୁ ବାସନ ବିକି ପଇସା ଦେଉଛି । ମଣିଷ ଭିତରେ ରହିଥିବା ଭଗବାନଙ୍କୁ ମଣିଷ ଚିହ୍ନିପାରୁ ନାହିଁ । ମଣିଷ ନିଜେ ନିଜକୁ ଚିହ୍ନି ପାରୁନାହିଁ । ଏହାର ସ୍ପଷ୍ଟତର ପ୍ରମାଣ କୋଉଠି ଆଉ କ'ଣ ମିଳିପାରେ ?

ଆଜିକାର କାଙ୍ଗାଳ ମଣିଷ ପରି ତା'ର ଭଗବାନ ମଧ୍ୟ ଏକ ଖୋସାମତଖିଆ କାଙ୍ଗାଳ ପାଲଟି ଯାଇଛନ୍ତି । ଆଜି ସମାଜରେ ଅଧିକ ଭାଗ୍ୟବନ୍ତ ମଣିଷ ଭାଗ୍ୟହୀନ ମଣିଷକୁ ଲାଲଆଖି ଦେଖାଇ ତା'ର ସମସ୍ତ ଦାବୀ ଓ ସୁବିଧାକୁ ଆପେ ଆତ୍ମସାତ୍ କରୁଛି । ସେଇଥିଲାଗି ଏଣେ ଭଗବାନ କହିଲେ ଭୟ ଦେଖାଇବାର ଲାଲଆଖି ବ୍ୟତୀତ ସେ ଆଉ କିଛି ଦେଖିପାରୁ ନାହିଁ । ଆମର ହୀନ-ଦଶାଗ୍ରସ୍ତ ସମାଜରେ ହୀନଜନ ନାନାପ୍ରକାର ପରିଚର୍ଯ୍ୟା ଖଟି ଭାଗ୍ୟବନ୍ତ ଜନର ଅନୁଗ୍ରହ ପାଇବାର ଆଶାରେ ଜୀବନଧାରଣ କରୁଛି । କୋଟି ଗ୍ରହ ବା କୋଟି ଭଗବାନଙ୍କୁ ନାନାପ୍ରକାର ପୂଜା, ଭୋଗ ଓ ଧୂଆଁ ଧୂପର ଲାଞ୍ଚ ଦେଇ ତାର ସନ୍ତୋଷଭାଜନ ହେବା ଲାଗି ବିବ୍ରତ ମଣିଷ ଯାବତାୟୁ ଆୟୋଜନ କରିବାର କ୍ଲେଶ ଭୋଗକରି ଚାଲିଛି । ଭଗବାନ ଏ ସଂସାରର ବାହାରେ; ବିଦେଶୀ ଜମିଦାର ପରି ତାଙ୍କର ତ୍ରାସ ଓ ଭୟର ବନ୍ୟା ଓ ମରୁଡ଼ିର ଗୁମାସ୍ତା ପଠାଇ ସେ ଆମକୁ ଶାସନ କରି ରହୁଛନ୍ତି । ଏହିପରି ବିଶ୍ୱାସ ରହିଥିବା ପର୍ଯ୍ୟନ୍ତ ମଣିଷ ଭିତରେ ଲାଞ୍ଚଦିଆ ରୋଗ କଦାପି ଯିବ ନାହିଁ । ଶ୍ରେଷ୍ଠଠାରୁ ବଡ଼ ପର୍ଯ୍ୟନ୍ତ, ଶାଳଗ୍ରାମଠାରୁ ଶନି ଗ୍ରହ ପର୍ଯ୍ୟନ୍ତ ଶ୍ରେଷ୍ଠ ବଡ଼ ଦେବତାଙ୍କୁ ନାନାପ୍ରକାର ଲାଞ୍ଚ ଦେବାର ସନ୍ତ୍ରସ୍ତ ପରିକ୍ରମରେ ସେ ଆପଣାକୁ ସତତ ନିର୍ଯ୍ୟାତିତ କରି ରଖିଥିବ । ଯେତେ ରକମର ଭୟ ମଣିଷକୁ ଘାରୁଥିବ, ମଣିଷ ସେତିକି ପ୍ରକାର ପୌତ୍ତଳିକତାର ସୃଷ୍ଟି ଭିଆଇ ଚାଲିଥିବ । ଏଣେ ଆପଣା ଭିତରେ ଏହି ସଂସାରର ବିପୁଳ ଜୀବନ ଭିତରେ ସବୁ ଭୟ ଓ ଅଶାନ୍ତି ହରଣ କରିନେବାର ଅଭୟଦ୍ୱାର ମୁକ୍ତାହୋଇ ରହିଥିବ । ଯିଏ ସେ ଦୁଆରରେ ଆଘାତ କରି ଜାଣିଛି, ସେ ସମସ୍ତ ଭୟ ଓ ସଂଶୟକୁ ଡେଇଁ

ଯାଇ ପାରୁଛି, ସମସ୍ତ ଝଣ୍ଡ ବିଶ୍ୱାସର ଉତ୍ତେଜନାକୁ ସେ ଭେଦ କରିପାରୁଛି । ତା'ର ଜୀବନ, ତାର ଧ୍ୟାନ ଓ ତାର ଭଗବାନ ତାକୁ କେବଳ ଆନନ୍ଦ ଆଣି ଦେଉଛି । ଆକାଶର ସୂର୍ଯ୍ୟ ପରି ତାର ଜୀବନଯାତ୍ରା ଅବାରିତ ଭାବରେ ଚାଲିଛି ।

୨୧ । ୧୦ । ୫୪

ଏଇ ଏରିସମାରେ ଅମର ଅସଲ ପରୀକ୍ଷା ହୋଇଗଲା । ଚମ୍ପାଡମୁଣ୍ଡାରେ ଟିକିଏ ସମୟ ପାଇଲେ ଅମର ସୋପାନ ବସୁଥିଲା । ଦୈନନ୍ଦିନ କାର୍ଯ୍ୟକ୍ରମରୁ ଯେତେ ବେଶି ସମ୍ଭବ ସେତେ ସମୟ ବାହାରକରି ଆମେ ପାଠ ପଢୁଥିଲୁ । କେତେ ମନ ଦେଇ ଅଙ୍କ କଷୁଥିଲୁ । ଇତିହାସ, ଭୂଗୋଳ ଓ ବିଜ୍ଞାନର ବହି ଧରି ବସୁଥିଲୁ । ଅମେ ପାଠାଗାରରୁ ବହି ନେଇ ପଢୁଥିଲୁ । ନୂଆ ନୂଆ ବହି ପଢିପାରିବା ଲାଗି ନୂଆ ନୂଆ ଭାଷା ଶିଖିବା ଆରମ୍ଭ କରି ଦେଇଥିଲୁ । ପରମ୍ପରାଗତ ମୌଳିକ ଶିକ୍ଷାରେ ପୁଣି ସୂତାକଟା, ସଫେଇ ଓ ଅନ୍ୟାନ୍ୟ ଧନ୍ଦାମାନ ବି ରହିଛି । ଅମେ ଯେଉଁ ସବୁ ଅନୁଷ୍ଠାନରେ ପଢୁଥିଲୁ, ସେଠିକାର ବିଧାନମତେ ଧନ୍ଦାଗୁଡ଼ିକରେ ଯଥାସମ୍ଭବ ଦଖଲ ଆଣିବାକୁ ଚେଷ୍ଟା ମଧ୍ୟ କରୁଥିଲୁ । ସବୁ ପାଠ ବିଷୟରେ ନୋଟ ଲେଖି ରଖିବାର ଲୋଭ ଆମେ ଦେଖାଉଥିଲୁ । ବର୍ଷ ଶେଷରେ ପରୀକ୍ଷା ହେଉଥିଲା । ବରଷକର ଅର୍ଜିତ ଜ୍ଞାନକୁ ଆମେ କେତେଦୂର ଗଚ୍ଛିତ କରି ରଖିଛୁ, ତାର ବିଚାର ସେତେବେଳେ ହେଉଥିଲା । ଅମ ଜଙ୍ଗଲ ସ୍କୁଲରେ ହୁଏତ ଆମେ ହେଇଅ ହେବ ବୋଲି ଭାବୁଥିଲୁ । ହଁ, ଜଙ୍ଗଲ ସ୍କୁଲରେ ହୁଏତ ଦିନେ ନାନା ଅୟୋଜନ ଓ ସମାରୋହରେ ପରୀକ୍ଷା ହେବ, ପିଲାଙ୍କ ହାତରେ କାଗଜ କଲମ ଧରାଇଦେଇ ହଠାତ୍ ମାଳେ ଦୁଇ ମାଳ ପ୍ରଶ୍ନ ପଚାରି ପିଲାଙ୍କୁ ଦେଇଥିବା ଜ୍ଞାନକୁ ଅଦାୟ କରି ଅତି କୃପଣ ଶିକ୍ଷକମାନେ ହୁଏତ ଏଠି ମଧ୍ୟ ଦିନେ ଖୁବ ସନ୍ତୋଷ ପାଇବେ । କର୍ତ୍ତୃପକ୍ଷଙ୍କର ବି ମନ ମାନିଯିବ । କିନ୍ତୁ ସେ ପରୀକ୍ଷା ଅସଲ ପରୀକ୍ଷା ନୁହେଁ । ଯେତେ ଆଡମ୍ବର ସହିତ କରାଗଲେ ମଧ୍ୟ ତାହା ଅତି ଗୌଣ । ଆମର ସମସ୍ତ ଉପାର୍ଜିତ

ବିଦ୍ୟାର ଅସଲ ପରୀକ୍ଷା ଏହି ଜୀବନ ଓ ସଂସାରର ବିରାଟ ପରୀକ୍ଷାଗାରରେ ହିଁ ହେବ । ଆମେ ସଂସାର ଭିତରେ ଯେଉଁପରି ମନୋଦୃଷ୍ଟି ନେଇ ପ୍ରବେଶ କରିବା, ସମାଜରେ ବା ସଂସାରରେ ଜଣେ ହିସାବରେ ଯେତିକି ନିପୁଣ ଓ ଶୁଦ୍ଧଭାବରେ ଆମେ ଆମର ଅର୍ଜିତ ଯୋଗ୍ୟତାର ବ୍ୟବହାର କରିପାରିବା, ସଂସାରର ମଣିଷ ସହିତ ଆମେ ଯେତିକି ଏକର ସତ୍ୟ ଅନୁଭବ କରିପାରିବା, ତାହା ହିଁ ଆମ ପାଠର ମୂଲ୍ୟ ନିର୍ଦ୍ଧାରଣ କରିବ । ଆମ ସମାଜରେ ଅନେକ ପ୍ରକାର ପାଠୁଆ ଅଛନ୍ତି । ପାଠୁଆ ଏ ଦେଶରେ ଠକନ୍ତି । ଏ ଦେଶରେ ଅତି ଉପରେ ରହି ଅନେକ ପାଠୁଆ ପୁଣି ନ୍ୟୂନ ଜନଙ୍କୁ ଅନୁଗ୍ରହ ଦେଖାଇବାରେ ଆତ୍ମପ୍ରସାଦ ଲଭ କରନ୍ତି । ପାଠୁଆ ପୁଣି ସେବା ଓ ସତ୍‌କର୍ମର ଆଡମ୍ବର ଦେଖାଇ ନିଜ ଭିତରର ଅହଙ୍କାର ଓ ଅଭିମାନକୁ ନାନାପ୍ରକାର ପୋଷାକ ପିନ୍ଧାଇ ଘୋଡ଼ାଇ ରଖନ୍ତି । ଏସବୁ ଅଜ୍ଞାନର ପାଠୁଆ ହେବା ଆମର ଦରକାର ନାହିଁ । ପାଠକୁ ହଜମ କରି ଜୀବନରେ ତା'ର ସଦ୍‌ବ୍ୟବହାର କରି ନ ପାରିଲେ ଯେଉଁ ଦଶା ହୁଏ, ସେ ହୀନ ଦଶାକୁ ଆମେ ପାଠର ପୁରସ୍କାର ବୋଲି କହିବା ନାହିଁ । ଆମର ଇତିହାସ, ଭୂଗୋଳ, ଗଣିତ ଆଉ ବିଜ୍ଞାନ ଆମକୁ ଆହୁରି ଶୁଦ୍ଧ କରୁ, ଆମକୁ ଆହୁରି କର୍ମଠ କରୁ, ମଣିଷ ସହିତ ନିଷ୍କପଟ ଅନ୍ତରରେ ଏକାଠି ବସି ସୁଖ ଦୁଃଖକୁ ଗଭୀର ଭାବରେ ଅନୁଭବ କରିବାକୁ ଶିଖାଉ । ଆମ ପାଠ ଆମ ଚରିତ୍ରରେ ପରିବର୍ତ୍ତନ ଆଣୁ । ଆମର ଆଚରଣକୁ ଅଧିକ ନମ୍ର, ଭଦ୍ର ଓ ଉଦାରଶୀଳ କରୁ; ଆମର ଶରୀରକୁ ଆମର ମନର ଅଧୀନ କରି ରଖୁ; ଆମର ମନକୁ ବିଶ୍ୱନିୟନ୍ତାର ମନ ସହିତ ଖିଅ ଲଗାଇ ରଖୁ ।

ଜୀବନ ଭିତର ଦେଇ ହିଁ ଆମର ସବୁ ପାଠର ସର୍ବଶ୍ରେଷ୍ଠ ପରୀକ୍ଷା ହେବ । ଏଠି ଆପଣାକୁ, ଶିକ୍ଷକଙ୍କୁ ଓ ଆପଣାର ଅନୁଷ୍ଠାନକୁ ଠକିବାର ମିଛ ଉତ୍ସାହରେ ଯେତିକି ଆମେ ଫାଙ୍କି ଦେଇ ଯାଉଥିବା, ସଂସାରର ବିସ୍ତୃତ କ୍ଷେତ୍ରରେ ଜୀବନର ନାନା ଦାୟିତ୍ୱ ତୁଲାଇବାକୁ ଗଲାବେଳେ ଆମର ସେସବୁ ଫାଙ୍କି ଧରା ପଡ଼ିଯିବ । ବର୍ତ୍ତମାନ ଆମର ବୟସ ଅଳ୍ପ, ଅଥଚ ଗ୍ରହଣ କରିବାର ଶକ୍ତି ଅନେକ ଅଧିକ । ପୂର୍ଣ୍ଣ ସଚେତ ଭାବରେ ସଂସାରର ନାନା ଜ୍ଞାନ ଆହରଣ କରି ଅନ୍ତର ଭିତରେ ସେସବୁ ହଜମ କରିବାକୁ ହେବ । ବର୍ତ୍ତମାନ ସଚେତ ନ

ରହିଲେ ଆମର ସବୁ ପୋଥି ଓ ସବୁ ପାଠ ସତ୍ତ୍ୱେ ଆମେ ଜୀବନରେ ବଡ଼ ଦୁର୍ବଳ ହୋଇପଡ଼ିବା । ଆମର ନିଷ୍ଠାହୀନତା କେବଳ ଆମକୁ ହିଁ ଲଜ୍ଜା ଦେବ । ଆମ ଅନୁଭୂତିର ଅଗଭୀରତା ଆମକୁ ସଂସାରର ସବୁଠାରେ ଫେଲ କରାଇ-ଦେବ । ଏରସମାରେ ଆମର ପ୍ରାୟ ମାସେ ପୂରିଆସୁଛି । ଏଇ ମାସକ ଭିତରେ ଅମେ କେତେ ବିଚିତ୍ର କର୍ମକ୍ଷେତ୍ର, କେତେ ବିଚିତ୍ର ମଣିଷଙ୍କର ସମ୍ପର୍କରେ ଅସିଲୁ । ସବୁଠି ଆମେ ଶିକ୍ଷିତ, ସଚେତ ମଣିଷ ପରି ପରିସ୍ଥିତିର ଜବାବ ଦେଇ-ପାରିବୁ କି ? ସବୁଠି ଅମେ ଯଥେଷ୍ଟ ନିଷ୍ଠା ଓ ଗଭୀରତା ସହିତ ଅନୁଭବ କରି-ପାରିଛୁ କି ? କର୍ତ୍ତବ୍ୟର ତାଗଦା ଆସିଲାବେଳେ ଅମର ମନ ଓ ଶରୀର ଆମ ବିବେକର ବୋଲ ମାନିଛି କି ? ଦୁଃଖୀ ମଣିଷର ଦୁଃଖ ଆମେ ମଣିଷ ପରି ବୁଝିବାକୁ ସମର୍ଥ ହୋଇଛୁ କି ? ନା, ହୃଦୟହୀନ ଲୁହା ପରି ଏଠି ମଧ୍ୟ ଆମେ ଅତି ନିର୍ଜୀବ ଓ ନିଲଠା ହୋଇ ସମସ୍ତ କଟାଇଦେଇଛୁ । ମଣିଷର ଦୁଃଖ ଅମକୁ ନାନା ବିଚିତ୍ର କର୍ମ ଲାଗି ଟାଣିବାକୁ ଆସିଲାବେଳେ ସେହି ପୁରୁଣା ସୁଖଭୋଗୀ ଜୀବ ପରି ଏଠି ମଧ୍ୟ ଅମେ କେବଳ ଅପଣା ଲାଗି ଆରାମ ଖୋଜି ବୁଲିଛୁ । ଚାଲ, ଏଠି ଆମେ ସମସ୍ତେ ପରୀକ୍ଷକ ହେବା । ଏ ବିରାଟ ପରୀକ୍ଷା-କ୍ଷେତ୍ରରେ ଆମେ ପ୍ରତ୍ୟେକ ଅପଣାକୁ ପରୀକ୍ଷା କରିବା ।

୭ । ୧୧ । ୪୫

ଅଜକୁ ଅଠତିରିଶ ବର୍ଷ ପୂର୍ବେ ରୁଷିଅରେ ଗୋଟାଏ ଯୁଗ ବଦଳିଥିଲା । ଅନେକ ରକ୍ତପାତ କରି ଓ ଅଧିକ ଅନେକ ରକ୍ତପାତର ସୂତ୍ରପାତ କରି ସେଦିନ ରୁଷିଆର ଯୁବକ-ବିପ୍ଳବୀ ଦଳ ଦାସତ୍ୱମୋଚନର ଦୃଢ଼ ଘୋଷଣା କରିଥିଲା । ଏହାରି ଭିତରେ ରୁଷିଆର ଅନେକ ପରିବର୍ତ୍ତନ ହୋଇଛି । ସେଠି ସବୁ ମଣିଷର ଭୋଜନ, ସ୍ୱାସ୍ଥ୍ୟ ଓ ବାସବସତିର ଉନ୍ନତି ଲାଗି ଅନେକ ନିଷ୍ଠାପର ଉଦ୍ୟମ କରାଯାଇଛି । ଲୋକଶକ୍ତିର ବିପୁଳ ବିନିଯୋଗ କରାଯାଇ ବିଜ୍ଞାନ ସାହାଯ୍ୟରେ ସେଠି ମଣିଷର ଇହ ଜୀବନକୁ ଅଧିକ ସୁଖୀ କରିବାର ଅନେକ ଚେଷ୍ଟା କରାଯାଇଛି । ଅଠତିରିଶ ବରଷ ତଳେ ରୁଷିଆର

ସାଧାରଣ ମଣିଷ ଯାହା ଖାଉଥିଲା, ଯେପରି ସୁସ୍ଥ ଥିଲା ଓ ଯେପରି ଘରେ ରହୁଥିଲା, ଆଜି ତାହାଠାରୁ ସେ ଯଥେଷ୍ଟ ଭଲ ଖାଉଛି, ଯଥେଷ୍ଟ ଅଧିକ ସ୍ୱାସ୍ଥ୍ୟ ଲାଭ କରିଛି ଓ ଯଥେଷ୍ଟ ଭଲ ଘରେ ବାସ କରିବାର ସୌଭାଗ୍ୟ ଲାଭ କରିଛି । ଆଜି ସେଠି ପ୍ରତ୍ୟେକ ପିଲା ପାଠ ପଢ଼ିବାର ଅଧିକାର ପାଇଛି । ପ୍ରତ୍ୟେକ ଗାଆଁ ଆପଣା ପରିଶ୍ରମଦ୍ୱାରା ଲକ୍ଷ୍ମୀମନ୍ତ ହେବାର ସୁଯୋଗ ପାଇଛି । ଇଉରୋପ ଓ ଏସିଆର ସମଗ୍ର ଉତ୍ତର ଖଣ୍ଡବ୍ୟାପୀ ଯେଉଁ ଅଞ୍ଚଳରେ ଆଜି କୋଡ଼ିଏ କୋଟି ଲୋକ ବାସ କରୁଛନ୍ତି, ୧୯୧୭ ସାଲ ନଭେମ୍ବର ସାତ ତାରିଖରେ ସେମାନଙ୍କ ଲାଗି ନୂତନ ଭାଗ୍ୟ ଓ ନୂତନ ସମ୍ଭାବନାର ଉଦୟ ହୋଇଛି ବୋଲି କହିଲେ ଅଦୌ ଭୁଲ ହେବ ନାହିଁ । ଯେଉଁମାନଙ୍କର ଭାଷା ବା ସାହିତ୍ୟ ନ ଥିଲା, ନାନାପ୍ରକାର ଭୌଗୋଳିକ ଓ ରାଜନୈତିକ କାରଣରୁ ଯେଉଁମାନେ ସମ୍ପୂର୍ଣ୍ଣ ଅନ୍ଧାର ଭିତରେ ପଡ଼ି ରହିଥିଲେ, ସେମାନେ ଆଜି ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ପୃଥିବୀର ଦରବାରରେ ଆପଣାକୁ ପରିଚିତ କରାଇ ପାରିଛନ୍ତି । ଆଜିକାର ବିଜ୍ଞାନ ଯୁଗର ପୂର୍ଣ୍ଣ ଉପଯୋଗ କରିବାକୁ ଆସି ସେମାନେ ମଧ୍ୟ ଦକ୍ଷ ହୋଇ ପାରିଛନ୍ତି । ପୃଥିବୀର ଇତିହାସରେ ନଭେମ୍ବର ସାତ ତାରିଖ ଏକ ଅତି ବଡ଼ଦିନ । ପୃଥିବୀର ମଣିଷକୁ ଏହି ଦିନଟି ଏକ ନୂତନ ସାମାଜିକ ଧର୍ମ ଓ ନୂତନ ସାମାଜିକ ସମ୍ଭାବନାର ସୂଚନା ଦେଇ-ଯାଇଛି । ରୁଷିଆର ରାଜନୈତିକ ମତବାଦ ସହିତ ଯାହାର ଯେତେ ମତଭେଦ ଥାଉ ପଛକେ, ଏହି କଥାଟି କେହି ଅସ୍ୱୀକାର କରିପାରିବ ନାହିଁ । ସବୁ ମଣିଷର ସୁଖ ଓ କଲ୍ୟାଣ ଲାଗି ଆଜି ପୃଥିବୀରେ ଯିଏ ଯେଉଁଠି ନିସ୍ତାର ସହିତ ଚିନ୍ତା କରୁଛି, ଆଜି ଦିନଟି ଉଦ୍ଦେଶ୍ୟରେ ସେ ନିଶ୍ଚୟ ଆପଣାର ଶ୍ରଦ୍ଧା ଜଣାଇ ଯିବ । କିନ୍ତୁ ଭୋଜନ ଓ ବସତିର ସୁବ୍ୟବସ୍ଥା ହୋଇଗଲେ ଯେ ମଣିଷର ଦୁଃଖ ମେଣ୍ଟିବ ନାହିଁ, ନୂଆ ରୁଷିଆର ଏହି ପ୍ରାୟ ତିରିଶ ବରଷର ଇତିହାସ ତାହା ପ୍ରମାଣ କରିଦେଇଛି । ଖାଲି ଖାଇବା, ହଗିବା, ଆଉ ବଂଶ ବୃଦ୍ଧି କରିବାର ଦେହସନ୍ତ ହୋଇଥିଲେ ହୁଏତ ମଣିଷ ରୁଷିଆର ବିପ୍ଳବକୁ ଆଦର୍ଶ ବିପ୍ଳବ ବୋଲି କହିଥାନ୍ତା । ମଣିଷକୁ ଖାଇବାର ଓ ଆରାମରେ ରହିବାର ଲୋଭ ଦେଖାଇ ସେଠି ମଣିଷର ସମସ୍ତ ସ୍ୱତନ୍ତ୍ରତା ଅପହରଣ

କରାଯାଇଛି । କେଉଁଠି କୋଟି ମଣିଷଙ୍କୁ ପେଟ ଓ କବ୍‌ଜା କରି ଲଗାଇ ସେଠି କ୍ଷମତାଲୋଭୀର ଜଗନ୍ନାଥ ରଥ ଆଜି ମଧ୍ୟ ଚାଲୁଛି । ନାନାପ୍ରକାର ଆଇନ ଆଉ ଆଡ଼ମ୍ବରର ଯନ୍ତ୍ର ଦେଖାଇ ଆଜି ସେଠି ମଣିଷର ସୂକ୍ଷ୍ମ ଅନୁଭବ କରିବାର ଶକ୍ତିକୁ ମାରି ଦିଆଯାଉଛି । ସ୍କୁଲ କଲେଜର ସମସ୍ତ ପାଠ ଦେଇ, ସାମାଜିକ ସମସ୍ତ ବ୍ୟସନ ଓ ବିନୋଦନ ଦେଇ ସେଠି ମଣିଷକୁ କଳର କବ୍‌ଜା କରି ତିଆରି କରାଯାଉଛି । ମଣିଷର ଶରୀରଟାକୁ କେତେବେଳେ ଡରାଇ, ଧମକାଇ, କେତେବେଳେ ନାନା ଉପଭୋଗର ଲୋଭ ଦେଖାଇ ସେଠି ଆତ୍ମନ୍ତରୀ ମଣିଷର ଶାସନ ଆଜି ମଧ୍ୟ ଚାଲିଛି । ଗୋଟାଏ ପୁରୁଣା ରାଜନୈତିକ ନିଶାକୁ ନୂଆ ଆଦର୍ଶବାଦର ରଙ୍ଗ ଲଗାଇ ସେଠି ମଣିଷର ଆଖିକୁ ବେଶ୍ ଝଲକା କରି ରଖିବାର ପ୍ରଚେଷ୍ଟା ଚାଲିଛି । ମଣିଷର ଆଦର୍ଶ, ମଣିଷର ଅଭିଳାଷ, ତାର ସାହିତ୍ୟ ଓ ସ୍ୱାଭାବିକ ବିକାଶ ସବୁଟି ଉପରେ ଆଜି ଶାସକଗୋଷ୍ଠୀର କଣ୍ଟ୍ରୋଲ ସେ ଦେଶରେ ରହିଛି । ତେଣୁ ନାନାପ୍ରକାର ସୁଖ ସୁବିଧା ପାଇ ମଧ୍ୟ, ଦିବ୍ୟ ଭୋଜନ ଓ ଦିବ୍ୟ ଆୟୋଜନରେ ଶରୀରକୁ ଆରାମ ଦେବାର ସୌଭାଗ୍ୟ ପାଇ ମଧ୍ୟ ସେଠି ମଣିଷ କ୍ଳାନ୍ତି ଅନୁଭବ କଲାଣି । ସେଠାକାର ସାହିତ୍ୟିକ, ବୈଜ୍ଞାନିକ ଓ ଶିକ୍ଷକ ପୁଣି ସ୍ୱତନ୍ତ୍ର ଭାବରେ ବିଚାର କରିବାକୁ ଆଗ୍ରହୀ ହୋଇ ଉଠିଲେଣି । ହୁଏତ ଦିନେ ସେ ଦେଶରେ ଆଜି ପଡ଼ିଥିବା ସୁନା ଶିଙ୍କୁଳୀ ଛିଣ୍ଡିପଡ଼ିବ । ମଣିଷର ମନ ଭିତରେ ଆଉ ଗୋଟାଏ ବୃହତ୍ତର ବିପ୍ଳବ ସଂଘଟିତ ହେବ । ସବୁପ୍ରକାର ଅସ୍ତ୍ର ଓ ଆଦର୍ଶ-ବାଦର ଅଶିଝଲସିଆ ସାଜସଜ୍ଜା ପଛରେ ରୁଷିଆର ଏହି ନୂତନ ଆନ୍ଦୋଳନ ବିଷୟରେ ଆମକୁ ଜାଣିରଖିବାକୁ ହେବ । ରୁଷିଆର ମଣିଷ ମଧ୍ୟ ମୁକ୍ତି ଚାହେଁ, ଶାନ୍ତି ଚାହେଁ । ଦାମୀ କାଚର ଶାସନ-ଘର ଭିତରେ ଖାଇପିଇ ଟେହଲା ହୋଇ ମନକୁ ଓ ବିଚାରକୁ ବିକିଦେବାର ଶାନ୍ତି ତା'ର ମଧ୍ୟ ଅସହ୍ୟ ହୋଇ ଉଠିଲାଣି । ସୁନା ପଞ୍ଜୁରି ଭିତରେ ବନ୍ଦ ରହି ମୁକ୍ତିର ଘୋଷଣାପତ୍ର ମୁଖସ୍ଥ କରିବାର ଆତ୍ମ-ପ୍ରତାରଣା ସେ କ୍ରମେ ବୁଝିପାରିଲାଣି । ସମସ୍ତ ପ୍ରକାର ବାହ୍ୟ ଆୟତନସିଦ୍ଧ ଶାସନରୁ ମୁକ୍ତି ପାଇବା ଲାଗି ଯେଉଁ ଆତ୍ମ-ମୁକ୍ତିର ସଂଗ୍ରାମ ଲାଗି ପୃଥିବୀର ମଣିଷ ପ୍ରସ୍ତୁତ ହେଉଛି, ରୁଷିଆର ସାଧାରଣ ମଣିଷ ମଧ୍ୟ ସବୁରି ସହିତ ଯୁକ୍ତ ହୋଇ ସେହି ସଂଗ୍ରାମ କରିବାର ସ୍ୱପ୍ନ ଦେଖିଲାଣି ।

୮ । ୧୧ । ୫୫

ଆମର ବିଦ୍ୟାଳୟ ଏକ ଆନନ୍ଦ-ଭବନ ହେବ । କୁକେନ୍ଦ୍ରୀ ଗାଆଁରେ ଦର୍ଶନ ଦେଇ ଏବେ ବିନୋବାଜୀ ଏ କଥା କହୁଛନ୍ତି । ଭଲ ବକ୍ତୃତା ଅଉ ଆଦର୍ଶ କଥାରେ ଖାଲି ମୁଗ୍ଧ ଅଭିଭୂତ ହୋଇପଡ଼ି କାମ ଚଳାଇଦେଲେ ଏଠି ଚଳିବ ନାହିଁ । ଗୋଟିଏ ବିଦ୍ୟାଳୟର ଆଶିଷ-ଛତ୍ରତଳେ ଏଠି ଆମେ ଶିକ୍ଷାର୍ଥୀ ଓ ଶିକ୍ଷକ ସମସ୍ତେ ଏକଜୁଟ ହୋଇଛେ । ବିନୋବାଜୀ ଗୋଟିଏ ବିଦ୍ୟାଳୟରେ ଯାହା କହୁଛନ୍ତି, ବିଦ୍ୟା ଅର୍ଜନ କରିବାର ଶ୍ରଦ୍ଧା କରି ଆସିଥିବା ସବୁ ବିଦ୍ୟାଳୟର ଶିକ୍ଷାର୍ଥୀ ଓ ଶିକ୍ଷକ ଲାଗି ସେ ଏକ ଆହ୍ୱାନ ଏହାଦ୍ୱାରା ଦେଇଛନ୍ତି । ଯିଏ ଆଜି ସମସ୍ତ ପ୍ରକାର ଆଦର୍ଶକୁ ନାନା ଖଣ୍ଡନ-ଭଞ୍ଜନ ଓ ଖଣ୍ଡ-ବିଖଣ୍ଡର ଫୁଙ୍କାରରେ ଉଡ଼ାଇଦେଉଛି, ପୁଣି ଯିଏ ଆଦର୍ଶବାଦକୁ ଅଫିମ ଖେଳାଏ କରି ଖାଇ ଉତ୍ତେଜିତ ଜ୍ୱରରୋଗୀ ପରି ସାରା ସଂସାରଟାକୁ ବ୍ୟସ୍ତ କରିବାରେ ଧାଇଁଛି, ଉଭୟ ଶ୍ରେଣୀର ମଣିଷଙ୍କୁ ଏହି ଆହ୍ୱାନର ବିଗ୍ରହ କରିବାକୁ ହେବ । ଆମେ ଏହି ଭୁବନବ୍ୟାପୀ ଓ ଜୀବନବ୍ୟାପୀ ଆନନ୍ଦର କେତେ ଦୂରରେ ବା କେତେ ନିକଟରେ ଅଛୁଁ, ବିଦ୍ୟାର୍ଜନର ବାଟ ଚାଲିବାକୁ ଆସିଥିବା ଆମେ ପ୍ରତ୍ୟେକ ଆପଣାକୁ ଏହି ପ୍ରଶ୍ନଟି ପଚାରିବା । ଆମେ ପାଠ ପଢ଼ୁଛୁ, ଆମର ସେଥିରେ ଆନନ୍ଦ ନାହିଁ । ଆମେ କାମ କରୁଛୁ, ସେଥିରେ ଆମର ଆନନ୍ଦ ନାହିଁ । ଆମେ ପ୍ରାର୍ଥନା କରୁଛୁ । ଭଗବାନଙ୍କର ଭଜନ ଗାନ କରୁଛୁ, ସେଥିରେ ମଧ୍ୟ ଆମର ଆନନ୍ଦ ନାହିଁ । ସଂସାରରେ ଓ ସମାଜରେ ବାର ଲୋକ ବାର ପ୍ରକାର ପାଠ ପଢ଼ୁଛନ୍ତି; ତେଣୁ ଆମେ ସେମିତିଆ କୌଣସି ଗୋଟାଏ ପାଠ ପଢ଼ିବା, ସଂସାରରେ ସେହି ଜଣଙ୍କ ଭିତରେ ଜଣେ ହୋଇ ଦିଶିବା, ସଂସାରଠାରୁ ଶିକ୍ଷିତ ବୋଲି ସ୍ୱୀକୃତି ପାଇବା, ମୁଖ୍ୟତଃ ଏଇଥିଲାଗି ଆମର ପାଠପଢ଼ା, ବହିଘୋଷା ଚାଲିଛି । ପୋଷାକପତ୍ର ପିନ୍ଧି ଆପଣାକୁ ଦେଖାଇହେବାର, ପାଖିଜଣଙ୍କର ଦୃଷ୍ଟି ଆକର୍ଷଣ କରିବାର ସୌଖୀନ ଲାଳସା ପରି ଆମର ପାଠପଢ଼ା ମଧ୍ୟ ଗୋଟିଏ ଲାଳସା ହେବାକୁ ଯାଉଛି । ପାଠକୁ ଆମେ ଭଲ ପାଉଛୁ ବା ପାଠରୁ ଆମକୁ ଆନନ୍ଦ ମିଳୁଛି ବୋଲି ହୁଏତ ଆମେ ପାଠ ପଢ଼ୁ ନାହୁଁ । ପାଠ

ପଢ଼ିବାର ପଗଡ଼ି ବାନ୍ଧିଥିବା ମଣିଷକୁ ସଂସାର ଖାତିର କରୁଛି । ଏହିପରି ଗୋଟାଏ ଆତ୍ମବୁଦ୍ଧିର ପ୍ରଲୋଭନରେ ପଡ଼ି ଆମେ ପାଠ ପଢ଼ିବାର ପରିଶ୍ରମ କରୁଛୁ । ଆମେ ବଳରେ କାମ କରୁଛୁ । ମାଟିରେ ମଞ୍ଜି ପୋତି ଫୁଲଫଳ ସମ୍ଭାଉଛୁ । ଭାଙ୍ଗିଯାଉଥିବା ହିତାଚାରକୁ ସଜାଡ଼ୁଛୁ । ଏହା ପଛରେ ଆମର କେତେଦୂର ଆନନ୍ଦ ଅଛି ଓ କେତେଦୂର ବାଧ୍ୟବାଧକତା ଅଛି, ସେ କଥା ଆମେ ଆଜି ବିଚାର କରିବା । ଆପେ ସୂତା କାଟିଲେ ଅଳପ ପଇସାରେ ଆମେ ଲୁଗା ପିନ୍ଧିପାରିବା । ଶିକ୍ଷକଙ୍କର ଗାଳିରୁ ରକ୍ଷା ମିଳିଯିବ, ହୁଏତ ଏଇଥିଲାଗି ଆମେ ସୂତାକାଟିବାର ଅଭ୍ୟାସ ରଖୁଛୁ । ଆମର ପ୍ରାର୍ଥନା ବେଳେ ମଧ୍ୟ ସେଇଆ ହେଉଛି । ଉପରେ ଗୋଟାଏ ଶୃଙ୍ଖଳାର ଗୃପ ରହିଛି, ବୟସ୍କ ମାଷ୍ଟରର ପ୍ରବର୍ତ୍ତନା ରହିଛି । ସେଇଥିଲାଗି ଅଫିମଖିଆ ନେଉଳ ପରି ଆମେ ଯେତେ ଦିନ ଗୋଟାଏ ଆନୁଷ୍ଠାନିକ ନିୟମରେ ବନ୍ଧା ହୋଇପଡ଼ୁଛୁ, ସେତେଦିନ ପର୍ଯ୍ୟନ୍ତ ଆଇନ ମାନି ସବୁକଥା କରୁଛୁ । କିନ୍ତୁ ସେଠି ଶ୍ରଦ୍ଧା ବା ଆନନ୍ଦର ସ୍ଥାନ କାହିଁ ? ଉପରେ ଥିବା ଗୃପ ଅପସରିଗଲେ ମଧ୍ୟ ଯଦି ଆମେ ସୂତାକଟା ବା ପ୍ରାର୍ଥନାରେ ଶ୍ରଦ୍ଧାସ୍ମୃତି ହୃଦୟ ନେଇ ବସିପାରୁଥାନ୍ତୁ, ତେବେ ଯାଇ ହେଉଥାନ୍ତା । କେଉଁ ବିଦ୍ୟାଳୟରେ ଆଜି ପାଠପଢ଼ା ଓ ପରୀକ୍ଷା ଉପରେ ଯୋର ଦିଆଯାଉଛି, ପୁଣି କେଉଁଠି ମଣିଷର ହାତକୁ ଓ ବୁଦ୍ଧିକୁ ଦକ୍ଷ ଯନ୍ତ୍ରଟି ପରି କରି ନାନା ଧନ୍ଦା ଶିଖାଇ ଦିଆଯାଉଛି । କିନ୍ତୁ ଆନନ୍ଦ କାହିଁ ? ଏ ଦେଶର ବିଦ୍ୟାଳୟମାନଙ୍କରେ ଆଜି ବହିପଢ଼ା ହେଉଛି, କାଗଜ ଚିପା ହେଉଛି, ସୂତାକଟା, ତୁଳାଭଣା ହେଉଛି । ବଗିଚାକାମ ଓ ଗୋପାଇ ପାଳ ଅତି ନିୟମିତ ଭାବରେ ଚାଲିଛି । ଉପରୁ ଦାବୀ କରାଯାଉଥିବା ଉତ୍ପାଦନ ପରିମାଣର କୋଟା ପୂର୍ତ୍ତି-ହୋଇଯାଉଛି । କିନ୍ତୁ ଆନନ୍ଦ କାହିଁ ? ଏହି ଆନନ୍ଦର ଅଭାବରୁ ସକଳ ଜ୍ଞାନ ଓ ସକଳ ପ୍ରକାର ନିପୁଣତା ଅର୍ଜନ କରିବା ସତ୍ତ୍ୱେ ମଣିଷ ଭୀରୁ ହୋଇ-ଯାଉଛି, ଗଧ ହୋଇଯାଉଛି । ମଣିଷର ଉପାର୍ଜିତ ବିଦ୍ୟା ମଣିଷକୁ ବାନ୍ଧି ପକାଉଛି, ମୁକ୍ତ ଦେଇପାରୁ ନାହିଁ । ମଣିଷ ଜୀବନରେ ନାନା ଭୟ ଓ

ସଂଶୟର ଗଣ୍ଠି ପକାଇ ରଖିଛୁ, ମଣିଷକୁ ସହଜ ସରଳ କରିପାରୁ ନାହିଁ, ଜୀବନ ବଞ୍ଚିବା ଲାଗି ତାକୁ ସ୍ୱାଭାବିକ ପ୍ରେରଣା ଦେଇପାରୁ ନାହିଁ ।

ଜୀବନରେ ଓ ଜ୍ଞାନ ଲାଭରେ, ପାଠରେ ଓ ଧନ୍ଦାରେ ଆନନ୍ଦ ଲାଭ କରିବାକୁ ହେଲେ ଆମକୁ ଆନନ୍ଦ ଅନୁଭବ କରିବାର ଯୋଗ୍ୟତା ଅର୍ଜନ କରିବାକୁ ହେବ । ଆମର ବଞ୍ଚିବାର ଶୈଳୀକୁ ସରଳ କରିବାକୁ ପଡ଼ିବ । ଆଉ ସମସ୍ତ ବିଶ୍ୱର ସମସ୍ତ କାର୍ଯ୍ୟକ୍ରମକୁ ସରସ କରି ରଖିଥିବା ଆନନ୍ଦମୟ ଭଗବାନଙ୍କ ଉପରେ ଅଟଳ ବିଶ୍ୱାସ ରଖିବାକୁ ହେବ । ଉପନିଷଦରେ ଆନନ୍ଦକୁ ସବୁ ସୃଷ୍ଟି ଓ ସବୁ ଜୀବନର ମୂଳ ବୋଲି କୁହାଯାଇଛି । 'ଆନନ୍ଦାଦ୍ଧି ଏବ ଖଳ୍ୱିମାନି ଭୂତାନି ଜାୟନ୍ତେ । ଆନନ୍ଦେନ ଜାତାନି ଜୀବନ୍ତି । ଆନନ୍ଦଂ ପ୍ରୟନ୍ତ୍ୟଭିସଂବିଶନ୍ତି' (ତୈତ୍ତିରୀୟ ୬।୧) । ଆନନ୍ଦରୁ ହିଁ ଏହି ସକଳ ପ୍ରାଣୀ ଉତ୍ପନ୍ନ ହେଉଛନ୍ତି । ଆନନ୍ଦଦ୍ୱାରା ହିଁ ଜୀବନଧାରଣ କରିଛନ୍ତି ଏବଂ ଇହଜଗତରୁ ବିଦାୟ ନେଇ ସେହି ଆନନ୍ଦରେ ହିଁ ଲୀନ ହୋଇ ଯାଉଛନ୍ତି । ଆମର ସବୁ ଶିକ୍ଷା, ସବୁ ନିପୁଣତା ଆମକୁ ଏହି ଆନନ୍ଦର ହିଁ ଆସ୍ୱାଦ ଦେଇଯାଉ । ଆମର ଚିତ୍ତର, ମନ ଓ ଶରୀରରେ ଏହି ଆନନ୍ଦର ହିଁ ତରଙ୍ଗ ଖେଳିଯାଉ । ବିଶ୍ୱବ୍ୟାପୀ ଆନନ୍ଦ ଆମର ଜୀବନରେ ମୂର୍ତ୍ତ ହୋଇ ଆମର କର୍ମବାଣୀ ଓ ଭାବନାକୁ ଆନନ୍ଦମୟ କରି ଦେଉଥାଉ ।

୯ । ୧୧ । ୫୬

ଓଡ଼ିଶାର ନାନା ଜାଗାରେ ନଈବଢ଼ି ଅତି ପ୍ରବଳ ହୋଇଉଠିଲା । ଏଠି ଆମ ଜଙ୍ଗଲ ସ୍କୁଲରେ ମଧ୍ୟ ଆମକୁ ସେ ଅଥୟ କରି ପକାଇଲା । ଆମେ ଆଉ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । କେଉଁଠି କାହାର ଘର କାନ୍ଥ ଭୁସୁଡ଼ି ପଡ଼ୁଛି, କେଉଁଠି କିଏ ଘରଚାଳ ଉପରେ ବସି ବିକଳରେ ତ୍ରାହି ତ୍ରାହି ଡାକ ପକାଉଛି । କେଉଁଠି ଗୋରୁ ମଇଁଷି ଅତି ଅସହାୟ ଭାବରେ ଭାସି ଯାଉଛନ୍ତି । ଖାଲି ଏହିସବୁ ଚିତ୍ର ଆମ ଆଖି ଆଗରେ ଭାସିଉଠିଲା । ଶହ ଶହ ମଣିଷଙ୍କର ଦୁଃଖ ଓ ଯାତନାକୁ ସତେ ଅବା ଆମେ ପ୍ରତି ମୁହୂର୍ତ୍ତରେ ଅନୁଭବ କରିବାକୁ

ଲାଗିଲୁ । ଆପଣାର ବ୍ୟବସ୍ଥିତ ସଂସାରର ବ୍ୟବସ୍ଥିତ ଜୀବନ ଆମକୁ ଆଉ ସୁଖ ଦେଇପାରିଲା ନାହିଁ । ଦଉଡ଼ିଯାଇ ପ୍ରପୀଡ଼ିତ ମଣିଷର ଦୁଃଖରେ କିଛିତ୍ ଭାଗୀ ହୋଇ ଆସିବାକୁ ଆମେ ଅସ୍ଥିର ହୋଇଉଠିଲୁ । ସୁବିଧା ପାଇବା ମାତ୍ରକେ ସେହିପରି ଗୋଟିଏ ଗୋଟିଏ କ୍ଷେତ୍ରରେ ମାସେ ମାସେ କାମ କରିଆସିଲୁ । ଆମର ପାଠବନ୍ଦ ହୋଇଗଲା । ଖାଇବା ପିଇବା ଓ ରହିବାରେ ନାନା ସ୍ଥାନରେ ନାନା ଅସୁବିଧା ଭୋଗ କଲୁ; ତଥାପି ସେ କ୍ଷତି ଆମକୁ କ୍ଷତି ବୋଲି ଲାଗିଲା ନାହିଁ । ମଣିଷର ଦୁର୍ଦ୍ଦିନରେ ତା' ପାଖରେ ଦଣ୍ଡେ ରହି ଆମେ ତାକୁ ପ୍ରାଣପଣେ ଦମ୍ଭ ଦେଇ ଆସିଲୁ । ଏହି ଟିକକ ଆମକୁ ଅନେକ ଶିକ୍ଷା ଓ ଅନେକ ସଞ୍ଚୟର ସନ୍ତୋଷ ଦେଇଗଲା । ଏହି ସେବା-କାମରେ ବାହାରିଯିବାକୁ କେହି ଆମ ଉପରେ କୌଣସି ଚାପ ଦେଇ ନାହିଁ, କୌଣସି ପ୍ରକାର କର୍ତ୍ତୃତ୍ୱର ପ୍ରରୋଚନାରେ ଆମେ କୌଣସି ପ୍ରକାରେ ବାଧ୍ୟ ହୋଇ ନାହୁଁ । ସତେ ଅବା ଆମ ଅନ୍ତର ଭିତରୁ ଆମେ ଏପରି ଏକ ଆବଶ୍ୟକତା ଅନୁଭବ କରିପାରିଛୁ, ଅନ୍ତର ଭିତରୁ ବାହାରି ପଡ଼ିବାର ଏକ ଆହ୍ୱାନ ପାଇଛୁ, ଅତି ସ୍ୱାଭାବିକ-ଭାବରେ ଆମେ ବାହାରିଯାଇଛୁ । ପ୍ରତ୍ୟେକ ପୁରୁଷାର୍ଥର କାମ ଠିକ୍ ଏହିପରି ସ୍ୱାଭାବିକଭାବରେ ହେବା ଉଚିତ । ଅନ୍ତରରୁ ସେଥିଲାଗି ଏହିପରି ବଳେ ବଳେ ଆହ୍ୱାନ ଆସିବା ଉଚିତ ।

ଭୂଦାନରେ ଆମେ କିଛିତ୍ କାମ କରିବାର କଥା ପଡ଼ିଲାବେଳେ ମୁଁ ଠିକ୍ ଏହିପରି ଚିନ୍ତା କରେ । ବର୍ଷକରେ ଥରେ ଆମ ଦେଶରେ କେତେ ଜଣ ଭୂଦାନ-ସପ୍ତାହ ପାଳନ କରନ୍ତି । ଶନିବାର, ରବିବାରରେ ବିଦ୍ୟାଳୟର ପିଲାଏ ଗାଆଁ ବୁଲି ଭୂଦାନର ପ୍ରଚାର କରିଆସନ୍ତୁ, ଏପରି ପରାମର୍ଶ ମଧ୍ୟ ଅନେକ ଥର ଶୁଣିବାକୁ ମିଳେ । କିନ୍ତୁ ସେପରି ପରାମର୍ଶକୁ ଆଦେଶ ଦେଇ କାର୍ଯ୍ୟକାରୀ କରିବାକୁ କାହିଁକି ମୋର ମନ ବଳେ ନାହିଁ । ଗୁରୁଜୀ ଆଦେଶ ଦେବେ, ଉପରୁ ଉପଦେଶ କରିଆରେ ଚାପ ପଡ଼ିବ, ତା'ପରେ ପିଲାଏ ଚରଖା, ବହି ଓ ଲଣ୍ଠନ ଧରି ଭୂଦାନ ପ୍ରଚାର କରି ବାହାରିବେ । ଏଇଟା କାହିଁକି ମୋତେ ଗୋଟାଏ ଅଦ୍ଭୁତ ସୁଆଙ୍ଗ ପରି ଲାଗେ । ଭୂମିଦାନକୁ ଉପଲକ୍ଷ୍ୟ କରି ଆମ ଦେଶରେ ଆଜି ଏକ ବିରାଟ ପରିବର୍ତ୍ତନ ହୋଇ ଚାଲିଛି । ଏହା ପଛରେ

ମଣିଷକୁ ଓ ସମାଜକୁ ନୂଆ ଓ ନିର୍ମଳ କରି ଗଢ଼ିବାର ନିର୍ଭୀକ ଆହ୍ୱାନ ରହିଛି । ଅନ୍ୟାନ୍ୟ ଅନେକ ଆନ୍ଦୋଳନଠାରୁ ଭୂଦାନ ଆନ୍ଦୋଳନର ପ୍ରକୃତି ଏକ ସ୍ୱତନ୍ତ୍ର ଧରଣର । ଏହା ପ୍ରଧାନତଃ ଜୀବନଶୁଦ୍ଧିର ଏକ ଆନ୍ଦୋଳନ, ଆପଣାକୁ ପରିଶୁଦ୍ଧ କରି ସମାଜରେ ଶୁଦ୍ଧି ଆଣିବା ଲାଗି ଏହା ଏକ ବିରାଟ ଆନ୍ଦୋଳନ । ନିଜେ ବିନୋବାଜୀ ଏହାକୁ ଆରୋହଣ ବୋଲି କହିଛନ୍ତି । ଏଥିରେ ଉତ୍ତେଜନାର ସ୍ଥାନ ନାହିଁ, ମାଳାଧାରୀଙ୍କର ଭେକ ବାନ୍ଧି ଗୁରୁର ଅତିମାନବତ୍ୱ ଉପରେ ଆପଣାର ଯାବତୀୟ ଦାୟିତ୍ୱ ଓ କର୍ତ୍ତବ୍ୟକୁ ଉଜେଇଁ ଦେବାର କୌଣସି ଚଗଲାମି ଏଥିରେ ନାହିଁ । ଭୂଦାନର ବିଷୟରେ ଆମେ ବୁଝିବା । ଯେଉଁ ସାମାଜିକ ଓ ନୈତିକ ବିପ୍ଳବର ସଙ୍କେତ ଦେଇ ଭୂଦାନ ଆନ୍ଦୋଳନ ଏ ଦେଶରେ ଚାଲିଛି, ସେହି ବିପ୍ଳବର ଆହ୍ୱାନକୁ ଆମେ ଆମର ଅନ୍ତର ଭିତରେ ଶୁଣିପାରିବା, ଅନୁଭବ କରିପାରିବା, ଏହି ଆହ୍ୱାନର ଜବାବ ଦେବା ଲାଗି ଆମେ ଅସ୍ଥିର ହୋଇପଡ଼ିବା । କାଲି ନଈବଢ଼ି ଯେମିତି ଆମକୁ ଦୁର୍ଗତ ମଣିଷର ସେବା ଲାଗି ବାହାର କରିନେଲା, ଭୂଦାନ ମଧ୍ୟ ଦିନେ ଆମକୁ ସେମିତି ସବୁ ମୋହ ଓ ସବୁ ଅହଙ୍କାର ଛଡ଼ାଇ ଦାଣ୍ଡକୁ ବାହାର କରିନେବ । ସେତିକିବେଳେ ଆମେ ଭୂଦାନର ଯଥାର୍ଥ ସେବକ ହୋଇପାରିବା । ସେହିଦିନ କେବଳ ଆମର ସେବାଦ୍ୱାରା ଏହି ମହାନ୍ ଆନ୍ଦୋଳନର କାର୍ଯ୍ୟସିଦ୍ଧି ଲାଭ ହୋଇପାରିବ ।

ମଣିଷର ସେଇ ପୁରୁଣା ଅହଙ୍କାର ରହିଥିବ, ସେହି ପୁରୁଣା ସ୍ୱାଧିକାରପ୍ରମତ୍ତତା ସମସ୍ତଙ୍କୁ ବିବଶ କରି ରଖିବାର ବଡ଼େଇ କରୁଥିବ, ସେହି ପୁରୁଣା ଆଚାର ଓ ପୁରୁଣା ବିଚାର ଜୀବନକୁ ବ୍ୟାଧିଗ୍ରସ୍ତ କରି ରଖିଥିବ; ଅଥଚ ଗୋଟାଏ ନୂଆ ସ୍ଲୋଗାନ ବା ନୂଆ ଦଉଡ଼ଧାପଡ଼ର ଆଡ଼ମ୍ବରରେ ଆମେ ଯୁଗକୁ, ସମାଜକୁ ଓ ମଣିଷକୁ ବଦଳାଇ ଦେବାକୁ ଚାହୁଁଥିବା । ଏକଥା କୌଣସି ଦିନ ସମ୍ଭବ ହୋଇ ନ ଥାଏ, ଆଜି ମଧ୍ୟ ହୋଇପାରିବ ନାହିଁ । ଆମେ ଆମର ଅନ୍ତରକୁ ପ୍ରସ୍ତୁତ କରିବା, ଜୀବନକୁ ପ୍ରସ୍ତୁତ କରିବା, ସବୁ ପ୍ରକାରେ ଅହଙ୍କାରଶୂନ୍ୟ ହୋଇଯିବା, ତେବେ ଯାଇ ଦିନେ ଆପଣାକୁ ନିର୍ମଳ ସେବାରେ ବିତରିତ କରିଦେବାର ଆହ୍ୱାନ ବଳେ ଆସିବ । ସେଦିନ ଆମେ

ଅତି ସ୍ୱାଭାବିକ ଭାବରେ ଅନ୍ତରର ଆହ୍ୱାନ ମାନି ଅତି • ମୁକ୍ତ ଅପ୍ରମତ୍ତ ଭାବରେ ବାହାରି ଯାଇପାରିବା ।

୧୦ । ୧୧ । ୫୫

ଆମର ବିଦ୍ୟାଳୟକୁ ଏକ ଆନନ୍ଦ-ଭବନ କରିବା କଥା ଆଜି ବି ମନେ ପଡ଼ୁଛି । ସଂସାରରେ ଅନେକ ପ୍ରକାରର ଆନନ୍ଦ ରହିଛି । ଅଫିମା ଅଫିମ ଖାଇ ବି ଆନନ୍ଦ ପାଏ, କୃପଣ ଧନ ସଞ୍ଚୟ କରି ଆନନ୍ଦ ପାଏ, ଆପଣାର କ୍ଷମତା ବିସ୍ତାର କରି କେହି କେହି ଆନନ୍ଦପା'ନ୍ତି । ଆପଣାର ବିଚାର ଓ ଆଦର୍ଶକୁ ଆଉ ପଦର ଜଣଙ୍କ ଉପରେ ଲଦିବାର ଅତ୍ୟାଗ୍ରହୀ ଚେଷ୍ଟା କାରି ରଖି ମଧ୍ୟ ଅନେକ ଆନନ୍ଦ ପା'ନ୍ତି । ଆମ ଦେଶର ତଥାକଥିତ ବିଦ୍ୟାଳୟ-ମାନଙ୍କରେ ଏହି ଅତ୍ୟାଗ୍ରହର ଚରିତାର୍ଥ ହେଉଛି । ବିଦ୍ୟାଳୟର ଗଢ଼ଣ, ଚଳନ ଓ ଗ୍ରହଣୀରେ ଯେତେ ମଠାମଠି କରାଗଲେ ମଧ୍ୟ ଏପର୍ଯ୍ୟନ୍ତ ପ୍ରାୟ ସବୁ ବିଦ୍ୟାଳୟରେ ଏହି ଅତ୍ୟାଗ୍ରହୀ ମନୋବୃତ୍ତି ବଳବତ୍ତର ରହିଛି । କେଉଁଠି ଗୋଟାଏ ସିଲାବସକୁ ଆଣି ପିଲା ଉପରେ ଲଦି ଦିଆଯାଉଛି, କେଉଁଠି ପିଲା ବୁଝୁ ନ ବୁଝୁ ନାନାପ୍ରକାର ଧନ୍ଦା ଓ ଫନ୍ଦାକୁ ପିଲା ଉପରେ ମନମୁଖୀ ଚଲାଇ ଦିଆଯାଉଛି । ଆମ ବିଦ୍ୟାଳୟମାନଙ୍କରେ ସୂତା କଟାଯାଉଛି, ଲୁଗା ବୁଣାହେଉଛି, ଆଉରି ଅନେକ ପ୍ରକାର ଧନ୍ଦା ଚାଲୁଛି । କାଗଜପତ୍ରର ହିସାବ ଓ କୋଠାପୂରଣ କରିବାରେ ହାକିମଙ୍କଠାରୁ ଆରମ୍ଭ କରି ଆଦେଶ ପାଳନ କରୁଥିବା ଶିକ୍ଷକ-ସିପାହୀ ପର୍ଯ୍ୟନ୍ତ ସମସ୍ତେ ବେଶ୍ ମସ୍ତ ଓ ବ୍ୟସ୍ତ ରହିଛନ୍ତି । ସେତିକ କରିଦେଇ ସେମାନେ ସନ୍ତୋଷ ବି ପାଉଛନ୍ତି । କିନ୍ତୁ ଏଣେ ପିଲା ଯେଉଁ ଅନ୍ଧାରକୁ ସେଇ ଅନ୍ଧାରରେ ପଡ଼ିଛି । ପାଠ ମୁଖସ୍ଥ କରିବାର ବା ଧନ୍ଦା ଶିଖିବାର କସରତ୍ କରି ତା'ର ସବୁ ସ୍ଫୂର୍ତ୍ତି କୁଆଡ଼େ ମରିଯାଉଛି । ପ୍ରଧାନତଃ ବାଧହୋଇ ସେ ସବୁ କଥା କରୁଛି । ବାଧହୋଇ ପାଠ ପଢୁଛି, ବାଧହୋଇ ସୂତା କାଟୁଛି, ବାଧହୋଇ ବଗିଚାକାମ କରୁଛି, ବାଧହୋଇ ପ୍ରାର୍ଥନାଧାଡ଼ିକୁ ଯାଉଛି । ବୟସ୍କ ବିଧାୟକ କରିଦେଇଥିବା ରୁଟିନ୍ ଅନୁସାରେ ଆମ ଦେଶର

ବାଳକ-ବାଳିକା ବିଦ୍ୟାଳୟର ଡ୍ରିଲ୍-ଘରେ ଜାତ ଏମିତି ବସାଁଇଛନ୍ତି, ଯାଁ ଆସ କରୁଛନ୍ତି ।

ଏମିତି ବ୍ୟବସ୍ଥାକୁ ଚାଲୁ ରଖିଥିବା ପର୍ଯ୍ୟନ୍ତ ଆମେ ପିଲା କି ଶିକ୍ଷକ କାହାର ଲାଗି ଆନନ୍ଦ ସୃଷ୍ଟି କରିପାରିବା ନାହିଁ । ପିଲା ବାଧ୍ୟହୋଇ ପାଠ ପଢ଼ିବ, ଖାଲି କର୍ତ୍ତବ୍ୟ ରକ୍ଷା କରିବାକୁ ଶିକ୍ଷକ ପାଠ ପଢ଼ାଇବ ବା ଧନ୍ଦା ଶିଖାଇବ । ବିଦ୍ୟାଳୟକୁ ଆନନ୍ଦ-ଭବନ କରି ଗଢ଼ିବାର ସ୍ୱପ୍ନ ଆମର ଖାଲି ସ୍ୱପ୍ନରେ ହିଁ ରହିଯିବ । ଏ ଦେଶର ଶିକ୍ଷାକ୍ଷେତ୍ରରେ ବୟସ୍କ ମନର ଅଲକ୍ଷଣା ଆତ୍ମପ୍ରତିଷ୍ଠା କରିବାର ଉଦ୍ୟମ ଚାଲିଥିବ । ଆମର ଶିକ୍ଷାକୁ ଆନନ୍ଦର ଭୂମି ଉପରେ ପ୍ରତିଷ୍ଠିତ କରିବାକୁ ହେଲେ ଆଗ ଆମର ମନକୁ ବଦଳାଇବାକୁ ପଡ଼ିବ । ଆମର ଆପଣା ଆଦର୍ଶ, ଆପଣା ରୁଚି ଓ ଆପଣା ମତବାଦ ବିଷୟରେ ଆମକୁ ଅନେକ ଉଦାର ହେବାକୁ ପଡ଼ିବ । ବିଦ୍ୟାଳୟକୁ ଆସୁଥିବା ପ୍ରତ୍ୟେକ ବିଦ୍ୟାର୍ଥୀକୁ ଆମେ ଯଥୋଚିତ ଶ୍ରଦ୍ଧା ଓ ସମ୍ମାନ କରିବା । ପ୍ରତ୍ୟେକ ବିଦ୍ୟାର୍ଥୀର ଆଶା ଓ ଆକାଙ୍କ୍ଷାକୁ ସମ୍ମାନ କରିବା, ତା'ର ସମ୍ଭାବ୍ୟ ଜୀବନକୁ ସମ୍ମାନ କରିବା । ପ୍ରତ୍ୟେକ ଜୀବନ-କଳିକୁ ତା'ର ଆପଣା ରୀତିରେ ସ୍ୱତନ୍ତ୍ର ଧାରାରେ କୁସୁମିତ ହେବାକୁ ଦେବାର ଭଦ୍ରତା ଆମର ରହିବ । ବିଦ୍ୟାଳୟରେ ଇତିହାସ, ଭୂଗୋଳରୁ ଗୁଡ଼ାଏ ଘୋଷାଇ ପକାଇବା, ଗୁଡ଼ାଏ ସୂତା କଟାଇ ପକାଇବା ବା ଲୁଗା ବୁଣାଇପକାଇବା ଅପେକ୍ଷା ଶ୍ରଦ୍ଧାର ଏକ ବାତାବରଣ ସୃଷ୍ଟି କରିବା ଆମର ପ୍ରଧାନତର ଲକ୍ଷ୍ୟ ହୋଇ ରହିବ । ଆଜି ନାନା ଭେକ ଧରି ଚାଲୁଥିବା ନାନା ନାମର ବିଦ୍ୟାଳୟ ମାନଙ୍କରେ ଯେଉଁ ରୁଟିନ୍‌ର ରାଜତ୍ୱ ଚାଲୁଛି, ଯଥେଷ୍ଟ ଶ୍ରଦ୍ଧା ଦେଇ ସେହି ରାଜତ୍ୱକୁ ଶେଷ କରିଦେବାକୁ ପଡ଼ିବ । ପିଲା ପାଠ ପଢ଼ୁ, ସୂତା କାଟୁ କି ଯାହା କରୁ, ଏକ ସ୍ୱତଃପ୍ରବୃତ୍ତ ଶ୍ରଦ୍ଧାଦ୍ୱାରା ପ୍ରେରିତ ହୋଇ ସେ ତାହା କରୁ, ଏହା ହିଁ ଆମର ଆଦର୍ଶ ରହିବା ଉଚିତ । ମୁଁ କାହାରି ଭୟରେ ପାଠ ପଢ଼ୁ ନାହିଁ, କାହାରି ଭୟ ବା ଚାପରେ ମୁଁ ସୂତା କାଟୁ ନାହିଁ, ଏପରି ଜଣି କି କଥା ଆମ ବିଦ୍ୟାଳୟର ପିଲାଏ ଯେଉଁ ଦିନ କହିପାରିବେ, ସେହିଦିନ ଆମ ଦେଶର ପିଲାଙ୍କ ଲାଗି ଆନନ୍ଦ-ଭବନର ମଳିକୁଆ ପଡ଼ିବ । ଆଜି ଅତି

ନମ୍ରଭାବରେ ଆମକୁ ଅପସରିଯିବାକୁ ପଡ଼ିବ, ପିଲାର ବାଟରୁ ହଟିଯିବାକୁ ପଡ଼ିବ । ବୟସ୍କତାର ସମସ୍ତ ସଂସ୍କାରଗତ ଅହଙ୍କାର ଜୋର କରି ପିଲାର ଉପରେ ଚପିଦେବାର ଲୋଭ ଛାଡ଼ିଦେବାକୁ ପଡ଼ିବ । ମୁଁ ଯେଉଁପରି ଶିକ୍ଷାକୁ ସମର୍ଥନ କରୁଛି, କେବଳ ସେହିପରି ଶିକ୍ଷାଦ୍ୱାରା ହିଁ ସବୁ ପିଲାଙ୍କର ମଙ୍ଗଳ ହେବ; କେବଳ ତାହାଦ୍ୱାରା ହିଁ ପିଲାଏ ସୁନ୍ଦର, ସମତୁଲ ଓ ସୁସ୍ଥଜୀବନ ଗଢ଼ି-ପାରିବେ, ଏପରି ଦମ୍ଭ ମୋତେ ଛାଡ଼ିବାକୁ ହିଁ ପଡ଼ିବ । ଏ ଦେଶରେ ପିଲାଙ୍କୁ ଆନନ୍ଦ ଦେବ ବୋଲି ଯିଏ ଆଜି କଳ୍ପନା କରୁଛି, ଏ ଦେଶରେ ଜୀବନରେ ସରସତା ଓ ନାନ୍ଦନିକତାର ସହଜ ପ୍ରକାଶ ଆଣିବାର ସ୍ୱପ୍ନ ଯିଏ ଦେଖୁଛି, ତାକୁ ଅନେକ ଶ୍ରଦ୍ଧା ଓ ଅନେକ ଉଦାହରଣଦ୍ୱାରା ଏ କାମରେ ହାତ ଦେବାକୁ ହେବ ।

ସଂସାରରେ ଆଜି ଆଦର୍ଶବାଦର ଲଢ଼େଇ ଚାଲିଛି । ସଂସାରରେ ପ୍ରତ୍ୟେକ ମତବାଦର ଶାସକ କେବଳ ତା'ର ମନମୁତାବକ ଶିକ୍ଷାନୀତିକୁ ବିଦ୍ୟାଳୟ ଉପରେ ଲଦାଇଦେବାକୁ ଇଚ୍ଛା କରୁଛି । ସମାଜର ସେବକ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ଆପଣାର ବିଚାରକୁ ପିଲାର ମନ ଉପରେ ଲଦି ଦେବାକୁ ଚାହୁଁଛି । ପିଲା କେତେ ଦୂର ତା'ର ବିଚାରର ଛାଞ୍ଚ ଅନୁଯାୟୀ ଆପଣାକୁ ଚଳାଇ ପାରିଲା ବା ନ ପାରିଲା, ସେହି ଅନୁସାରେ ସେ ପିଲାର ପାଠ, ସ୍ୱଭାବ ଓ ଚରିତ୍ରର ବିଚାର କରୁଛି । ସେହି ମୋହର ତରାଜୁରେ ତଉଲି ସେ ପିଲାର ନମ୍ରତା ବା ଉଦ୍ଧତତା ପରୀକ୍ଷା କରୁଛି । ପିଲାର ଜୀବନ ଗଢ଼ିବା ଅପେକ୍ଷା ଆପଣା ମତ ଓ ଖିଆଲକୁ ପିଲା ଉପରେ ଲଦିଦେବା ବର୍ତ୍ତମାନ ଦମ୍ଭୀ ବ୍ୟବସ୍ଥାପକର ପ୍ରଧାନ ମତଲବ ହୋଇଛି । ଯେଉଁଠି ଜବରଦସ୍ତି ଥାଏ, ଯେଉଁଠି ବାଦ ପ୍ରଚାରର ଗନ୍ଧ ଥାଏ, ସେଠି କୌଣସି ପ୍ରକାରେ ସ୍ୱାଭାବିକ ଆନନ୍ଦ ସମ୍ଭବ ହୋଇପାରେ ନାହିଁ । ଆପଣା ଝୁଆଡ଼କୁ ସମସ୍ତଙ୍କୁ ଅଡ଼ାଇଆଣି ଆପଣା ଅହଙ୍କାରକୁ ପରିପୁଷ୍ଟ କରିବାର ଉତ୍ତେଜନାରେ ବିଦ୍ୟାଳୟର ପବିତ୍ରତାକୁ ନଷ୍ଟ କରି ଦିଆଯାଏ । ବିଦ୍ୟାଳୟକୁ ଆନନ୍ଦଭବନ କରିବାର ସ୍ୱପ୍ନ ଅତି ତାଚ୍ଛଲ୍ୟର ସହିତ ଫୋପାଡ଼ି ଦିଆଯାଏ । ଆମର ଅହଙ୍କାରଦ୍ୱାରା ନୁହେଁ, ଆମର ମୋହ ବୁଦ୍ଧିର ଚାପଦ୍ୱାରା ନୁହେଁ,

କେବଳ ଆମର ଶ୍ରଦ୍ଧାଦ୍ୱାରା ହିଁ ଆମର ବିଦ୍ୟାଳୟ ଆନନ୍ଦଭବନ ହୋଇ-
ଯିବ ।

୧୧ । ୧୧ । ୫୫

ଆଜି ଜନ୍ମଦିନରେ ଆପଣାକୁ ଠିକ୍ ଶିଶୁଟି ପରି ଲାଗୁଛି । ତିରିଶ ବର୍ଷ ବୟସର ସବୁ ଉପାର୍ଜନ ଓ ଅଭିମାନ ଆଜି ଦେହ ଉପରୁ ଖସିପଡ଼ିଲା ପରି ଲାଗୁଛି । ଜୀବନଟା ବଡ଼ ହାଲୁକା ମନେହେଉଛି । ଆଗରୁ ସାରା ଆଖି ଦୁଇଟାକୁ ବହୁତ ଦୂର ଟାଣିନେଉଛି । ଜୀବନ ବିଷୟରେ ସବୁ ପ୍ରକାର ଅଳସ ଭାବନା ଦୂରକୁ ହଟିଯାଉଛି । ଆଜି ବାରବାର ଶିଶୁର କ୍ଷୁଧା, ଶିଶୁର ଜିଜ୍ଞାସା ଓ ଶିଶୁର ସ୍ନେହଶୀଳତାରେ ଅନ୍ତର ମନ ପୂରିଉଠୁଛି । ଆମ ଘରମାନଙ୍କରେ ଜନ୍ମଦିନକୁ ଗୋଟାଏ ଉତ୍ସବ ପରି ପାଳନ କରାଯାଏ । କେତେ ପିଠାପଣା ହୁଏ, କେତେ ସତ୍କାର ଓ ଆଦରରେ ପୂଜା ଓ ବନ୍ଦାପନା ହୁଏ । ମଣିଷର ବୟସ ଯେତେ ବେଶୀ ହୋଇଥିଲେ ମଧ୍ୟ ସେହି ଜନ୍ମଦିନରେ ତାକୁ ସମସ୍ତେ ପିଲାଟିପରି ଭାବନ୍ତି, ପିଲାର ଆଦର ଦିଅନ୍ତି । ସବୁ ବୟସର ବୟସ୍କତାକୁ ଡେଇଁ ମଣିଷ ସେଦିନ ସତକୁ ସତ ପିଲାଟିଏ ହୋଇଯାଏ । ନୂଆ ଆନନ୍ଦ ଆଉ ନୂଆ ମନରେ ପୁଣି ଆପଣାର ଜୀବନ ଆରମ୍ଭ କରେ । ଆମର ବୟସ ବା ଆମର ବୁଢ଼ା ହେବା ଆମ ଜୀବନର ସମସ୍ତ କଥା ନୁହେଁ । ଆମର ବିକାଶ ଓ ଆମର ଆନନ୍ଦ, ଆମର ଜିଜ୍ଞାସା ଓ ଆମର ଶ୍ରଦ୍ଧା ଆମର ବାଲପାଚିବା ସତ୍ତ୍ୱେ ଯେ ଆମକୁ ପିଲାଟି ପରି ସରସ କରି ରଖେ, ଆମ ସମସ୍ତଙ୍କୁ ଏହି ସତ୍ୟଟି ଅନୁଭବ କରିବାକୁ ହେବ । ଏହି ଅନୁଭବ ଲାଭ କରିବାରେ ଆମକୁ ଅଧିକ ପ୍ରେରଣା ଦେବାକୁ ସମାଜର ଅଭିଜ୍ଞ ମଣିଷ ଜନ୍ମଦିନ-ଉତ୍ସବର ସୃଷ୍ଟି କରିଛି । ବରଷକରେ ଅନ୍ତତଃ ଦିନେ ଏ ସଂସାରରେ ମଣିଷ ଆପଣାକୁ ବିରାଟ ଶିଶୁ ବୋଲି କଳ୍ପନା କରୁ, ସେଇଥିଲାଗି ଜନ୍ମଦିନ-ଉତ୍ସବ ମଣିଷ ଲାଗି ଏତେ ଆଦରର ବ୍ୟବସ୍ଥା କରାଯାଇଛି ।

ଖାଲି ଉପଭୋଗ କରିବା ଲାଗି ସଂସାରରେ ମଣିଷର ଜନ୍ମ ହୋଇ ନାହିଁ । ଉପଭୋଗ ପଛରେ ଧାଇଁ ବୁଲିବାକୁ ଯିଏ ଏକମାତ୍ର ଜୀବନ ବୋଲି ଗ୍ରହଣ କରିଛି, ଶାରୀରିକ ବାର୍ଦ୍ଧକ୍ୟ ଆସିବା ପୂର୍ବରୁ ହୁଏତ ସେ ବୁଢ଼ା ହୋଇ ବସିବ, ଅତି କ୍ଲାନ୍ତ ହୋଇପଡ଼ିବ । ଅନେକ ଧର୍ମଗ୍ରନ୍ଥରେ ସଂସାରକୁ ଦେଖି ଓ ନାନା ଭ୍ରାନ୍ତିରେ ପଡ଼ି ଆମେ ଉପଭୋଗକୁ ହିଁ ଜୀବନ ବୋଲି ଧରିନେଉ । ସେହିପରି ସେହିଭଳି ଗୋଟିଏ ଭ୍ରାନ୍ତି ବର୍ତ୍ତମାନ ଆମ ସମାଜର ନୀତି ଓ ବିବେକକୁ କାମୁଡ଼ି ଧରିଛି । ଯୌବନ ଆସି ପହଞ୍ଚିବା ପୂର୍ବରୁ ଆମେ ଯୌବନର ନାନା ଉପଭୋଗରେ ମାତିବାକୁ ଆରମ୍ଭ କରିଦେଉଛୁ । ନାନାପ୍ରକାର ଆଭରଣରେ ଜୀବନଟାକୁ ଜଟିଳ କରି ଦେଖାଇ ଆମେ ଆବଶ୍ୟକତା ବଢ଼ାଇବାର ଓ ଉପଭୋଗ କରିବାର ନିଶା ଖାଇବସିଛୁ । ଛାତ୍ରାବସ୍ଥାକୁ ଆଗେ ଆମ ଦେଶର ଜୀବନକୁ ଓ ଅଭ୍ୟାସକୁ ସଂଯତ ଓ ପରିପକ୍ୱ କରିବାର ଅବସ୍ଥା ବୋଲି ଧରାଯାଉଥିଲା । ଆମ ଦେଶର ଛାତ୍ର ଆପଣାକୁ ନାନାପ୍ରକାର ଶୃଙ୍ଖଳା ଭିତରେ ଆପଣା ଜୀବନର ଆବିଷ୍କାର କରିବାକୁ ଆପଣାର ସବୁଠାରୁ ବଡ଼ କର୍ତ୍ତବ୍ୟ ବୋଲି ମନେ କରୁଥିଲା । ଆଜି ସେପରି ହେଉ ନାହିଁ । ଆଜି ଉପଭୋଗ ହିଁ ଜୀବନର ମାନଦଣ୍ଡ ହୋଇଛି । ଉପଭୋଗ ହିଁ ଖାଡ଼ିରେ ପାଇବାର ମେରୁଦଣ୍ଡ ହେଉଛି । ମଣିଷ ଯେପରି ଅଧିକରୁ ଅଧିକ ଉପଭୋଗ କରିପାରିବ, ଉପଭୋଗର ଅଧିକାଧିକ ସାମଗ୍ରୀ ସହିତ ଆପଣାର ଇହ ଜୀବନକୁ ଗୁନ୍ଥି ଦେଇ-ପାରିବ, ସେଇଥିଲାଗି ଘରେ, ବାହାରେ ନାନା ବ୍ୟବସ୍ଥା ହେଉଛି । ପାଠ ପଢ଼ିବା ଓ ବିଦ୍ୟା ଅର୍ଜନ କରିବାକୁ ମଧ୍ୟ ଉପଭୋଗୀ ଜୀବନର ଦାସୀ କରି ରଖାଯାଉଛି । ଯିଏ ବେଶୀ ପାଠ ପଢ଼ିବ, ଯିଏ ପାଠକୁ ବିକି ସେତେ ଅଧିକ ପଇସା ରୋଜଗାର କରିପାରିବ, ଉପଭୋଗର ସେତେ ବେଶୀ ସାମଗ୍ରୀ ଭିତରେ ଜୀବନକୁ ବ୍ୟସ୍ତ କରି ରଖିପାରିବ । ଏହା ହିଁ ଆଜି ଆମ ସମାଜର ଅଘୋଷିତ ଉଦ୍ଦେଶ୍ୟ ହୋଇଛି । ବାପ, ମାଆ, ପରିବାର, ସଂସାର, ଶିକ୍ଷକ ଓ ପାଠ ସମସ୍ତେ ମିଶି ଆଜି ଆମକୁ ଉପଭୋଗର ଅଧୀନ କରି ରଖି ଶୀଘ୍ର ବୁଢ଼ା କରିଦେବାର ଷଡ଼ଯନ୍ତ୍ର ଚଳାଇଛନ୍ତି ।

ଉପଦେଶ କରିବା ଯଦି ଆମ ଜୀବନର ଉଦ୍ଦେଶ୍ୟ ହୋଇଥାଆନ୍ତା, ତେବେ ଲକ୍ଷ୍ମୀ ବଜାରର କୋଠାଘର ଛାଡ଼ି ଆମେ ଜାଣିଶୁଣି ଏ ଅରଣ୍ୟର ବିଦ୍ୟାଳୟକୁ ଆସି ନ ଥାନ୍ତେ । ଆପଣାକୁ ନାନାପ୍ରକାର ସାମଗ୍ରୀଦ୍ୱାରା ଆବୃତ ଓ ବର୍ଦ୍ଧିତ କରି ନୁହେଁ, ଆପଣାର ଆଗ୍ରହକୁ ଅଧିକ ଉନ୍ନତ କରିବାକୁ ଆମେ ଏଠିକୁ ଆସିଛୁ । ଯେଉଁ ପକ୍ଷୀଜାତି ବସନ୍ତ ଋତୁର ଅନୁସନ୍ଧାନ କରି ସଂସାରର ଏଣେତେଣେ ନାନା ଦେଶରେ ଓ ନାନା କଟିବନ୍ଧରେ ଆପଣା ଲାଗି ବିଭିନ୍ନ ସମୟରେ ନୀଡ଼ ରଚନା କରନ୍ତି, ସେହି ପକ୍ଷୀ ଜାତିର ଧର୍ମ ନେଇ ଆମେ ଏଠାରେ ସମବେତ ହୋଇଛୁ । ଏହିପରି ନାନା ଆଡ଼େ ବିଚରଣ କରିବାର ଅଭ୍ୟାସ ରଖିଥିଲେ ମଣିଷ ଯୁଆଡ଼େ ଯିବ, ସେଠି ବସନ୍ତର ଅନୁଭବ ଲାଭ କରିପାରିବ । ଗୋଟାଏ ପରିଧି ଭିତରେ ଆବଦ୍ଧ ରହିଗଲେ ଦିନେ ନା ଦିନେ ବାର୍ଦ୍ଧକ୍ୟ ଆସିବ, ଜୀବନ-ଝରଣାର ରସ-ପ୍ରବାହ ବନ୍ଦ ହୋଇଯିବ । ଆମେ ସାରାଜୀବନ ସବୁଠାରେ ପିଲାର ଆଗ୍ରହ ରଖିଥିବା । କୌଣସି ପ୍ରକାର ମୋହାସ୍ତନରେ ଆମେ ଆପଣାକୁ ବାନ୍ଧି ପକାଇବା ନାହିଁ । ଠିକ୍ ଏହିପରି ଗୋଟାଏ ଉତ୍ସାହ ରଖିଥିଲେ ଆମେ ବାର୍ଦ୍ଧକ୍ୟକୁ ଜୟ କରିପାରିବା । ବୟସକୁ ଜୟ କରିପାରିବା । ସବୁ ପ୍ରକାର ଅହଙ୍କାର ଓ ମୋହ ମଣିଷକୁ ବୁଢ଼ା ହେବାର ବିପଦରେ ଆଣି ପକାଇଦିଏ, ସବୁ ପ୍ରକାର ଦୁର୍ବଳ ସଂସ୍କାର ମଣିଷକୁ ଶୀଘ୍ର ସ୍ଥାବର କରିପକାଏ, ସବୁ ପ୍ରକାର ଶ୍ରଦ୍ଧା ମଣିଷକୁ ଶିଶୁର ଜିଜ୍ଞାସା ନେଇ ବଞ୍ଚିରହିବାକୁ ଅଧିକ ଶକ୍ତି ଦିଏ । ଆମେ ଆମର ସବୁ ଅହଙ୍କାର ଓ ଅଭିମାନ ଛାଡ଼ିଦେବା । ଆମେ ପଣ୍ଡିତର ଅଭିମାନ ଛାଡ଼ିବା, ବାବୁ ହେବାର ଅଭିମାନ ଛାଡ଼ିବା, ଜ୍ଞାନର ମଧ୍ୟ ଅଭିମାନ ଛାଡ଼ିବା । ପ୍ରତ୍ୟେକ ଦିନ ଆମେ ନବଜୀବନର ଅନୁଭୂତି ଲାଭ କରିବାକୁ ଚେଷ୍ଟା କରିବା । ପ୍ରତ୍ୟେକ ଦିନ ଆମର ନବଜନ୍ମ ହେଉଥିବ । ତେବେ ଯାଇ ଆମେ ଯଥାର୍ଥ ଭାବରେ ଜନ୍ମଦିନର ଆନନ୍ଦ ପାଇ-ପାରିବା, ଜନ୍ମଦିନର ମହତ୍ତ୍ୱର ବୁଝିପାରିବା । ଋକ୍ ବେଦର ଋଷି ସୋମ ଦେବତାଙ୍କୁ ଠିକ୍ ଏହି ପ୍ରାର୍ଥନା ଜଣାଇଥିଲେ, "ମାସୁ ନଃ ସୋମ ମୃତ୍ୟବେ ପରା ଦାଃ ପଶ୍ୟେମ ନୁ ସୂର୍ଯ୍ୟମୁଚ୍ଚରନ୍ତମ୍ (୧୦।୫୯-୪)—ହେ ସୋମ, ମୃତ୍ୟୁ ପ୍ରାପ୍ତ କରିବା ଲାଗି ଆମକୁ କଦାପି ପରିତ୍ୟକ୍ତ କର ନାହିଁ, ଅର୍ଥାତ୍

ଆମକୁ ମୃତ୍ୟୁ ଆଡ଼କୁ ଯିବାକୁ ଦିଅ ନାହିଁ । ଆମେ ସର୍ବଦା ଉଦୀୟମାନ ହେଉଥିବା ଆକାଶଗଙ୍ଗା ସୂର୍ଯ୍ୟର ଦର୍ଶନ କରୁଥାଉ ।"

୧୪ । ୧୧ । ୫୫

୧୯୪୫ ମସିହା ଅକ୍ଟୋବର ଚବିଶ ତାରିଖ ଦିନ ସାନ୍‌ଫ୍ରାନସିସ୍କୋ ସହରରେ ଜାତିସଂଘର ପ୍ରଥମ ଜନ୍ମ ହୋଇଥିଲା । ସେହିଦିନଠାରୁ ପ୍ରତ୍ୟେକ ବର୍ଷ ଏହି ଦିନଟିରେ ନାନା ଦେଶରେ ଜାତିସଂଘ ଦିବସ ପାଳିତ ହୁଏ । ଆମ ଦେଶର ସରକାରଙ୍କ ଉଦ୍ୟମରେ ମଧ୍ୟ ଏହି ଜନ୍ମଦିବସଟି ପାଳନ କରାଯିବାର ଚେଷ୍ଟା କରାଯାଏ । ଏ ଦେଶରେ ଶତକରା ଅଶୀ ଲୋକ ହୁଏତ ଜାତିସଂଘ କହିଲେ କିଛି ବୁଝନ୍ତି ନାହିଁ । ତେଣୁ ଲୋକଙ୍କର ହୋଇ ଏ ଦେଶର ସରକାର ଭାରତରେ ଜାତିସଂଘର ଉତ୍ସବଟି ପାଳିତ ହେବା ବ୍ୟବସ୍ଥା କରେ । ସେଥିଲାଗି ଏ ଉତ୍ସବଟିରେ ଅନେକ ସମୟରେ ସରକାରୀ କାଇଦାର ଗନ୍ଧି ଏତେ ପ୍ରବଳ ହୋଇଉଠେ ଯେ ଉତ୍ସବଟିର ସ୍ୱାଭାବିକତା ସହଜରେ ଧରାପଡ଼େ ନାହିଁ । ଏବର୍ଷ ସେହିପରି ଏକ ଘଟଣା ଘଟିଲା । ଏ ବର୍ଷ ଦଶହରା ଛୁଟିଟି ଭିତରେ ଜାତିସଂଘ-ଦିବସଟି ପଡ଼ିଲା । ସେଦିନ ସରକାରୀ ହାକିମ ଓ ଅମଲା ସହରରେ ନ ଥିଲେ । କୌଣସି କଚେରୀ ବା ଅଫିସ ଖୋଲା ନ ଥିଲା । ତେବେ ଜାତିସଂଘର ଜନ୍ମତିଥିକୁ ପାଳନ କରନ୍ତା କିଏ ? ସତେ ଅବା କଚେରୀ, ଅଫିସ, ହାକିମ ବା ଅମଲାଙ୍କ ଛଡ଼ା ଦେଶ କହିଲେ ଏ ଅସହାୟ ଦେଶରେ ଆଉ କିଛି ବୁଝାଏ ନାହିଁ । ଏହିସବୁ ଅସୁବିଧା ଦୃଷ୍ଟିରୁ ଦେଶର ବଡ଼ ବଡ଼ ହାକିମ ଓ ଶାସକମାନେ ଗୋଟାଏ ନୂଆ ବୁଦ୍ଧି ପାଞ୍ଚିଲେ । ଅକ୍ଟୋବର ଚବିଶ ତାରିଖ ଦିନ ସଂସାରଯାକ ଜାତିସଂଘର ଜନ୍ମଦିବସ ପାଳନ କରନ୍ତୁ, ଆମର ଆଉ ଦିନେ ପାଳନ କରିବା । ଏହି ନୀତିରେ ଆମ ଓଡ଼ିଶାରେ ନଭେମ୍ବର ମାସ ୧୨ ତାରିଖରେ ଉତ୍ସବଟି ପଡ଼ିଲା । ଆଗରୁ ସରକାରୀ ଚିଠିପତ୍ରମାନ ସ୍କୁଲମାନଙ୍କୁ ପଠାଗଲା । ପିଲାଙ୍କୁ ବାଣ୍ଟିବା ଲାଗି ପତାକାମାନ ମାଷ୍ଟରଙ୍କର ମାରଫତରେ ଦିଆଗଲା, ଇତ୍ୟାଦି ଇତ୍ୟାଦି । ଉପରୁ ନିର୍ଦ୍ଦେଶ ପାଇ ସେଦିନ ମାଷ୍ଟରମାନେ ଶୋଭାଯାତ୍ରା ଓ ସଭାମାନ କରିଥିବେ । ଉପର

ହାକିମଙ୍କର ମର୍ଜି ଅନୁସାରେ ଆପଣା ସ୍କୁଲରେ ଉତ୍ସବଟି ଯେପରି ଭାବରେ ପାଳିତ ହେଲା, ତା'ର ଏକ ବିବରଣୀ ସରକାରୀ ଭାବରେ ଲେଖି ପଠାଇଥିବେ ।

ସଂସାରରେ ମଣିଷ ମଣିଷକୁ ଘୃଣା କରୁଛି । ମଣିଷ ମଣିଷର ବନ୍ଧୁ ହୋଇ ରହିପାରନ୍ତା; ମଣିଷ ମଣିଷ ସହିତ ଆଜି ଜୀବନର ହାଟରେ ପ୍ରତିଯୋଗିତା କରି ଆପଣାର ଶକ୍ତି ସାରୁଛି । ମଣିଷ ମଣିଷ ସହିତ ସହଯୋଗ କରିପାରିଲେ ଆପଣା ଶକ୍ତିର ଅଧିକ ସଦ୍‌ବ୍ୟବହାର କରିପାରନ୍ତା । ନାନାପ୍ରକାର କଳୁଷିତ ଜାତୀୟତା, ଦେଶ, ଧର୍ମ ଓ ସଭ୍ୟତାର ମୋହାବରଣ ଭିତରେ ପଡ଼ି ମଣିଷ ମଣିଷଠାରୁ ବିଚ୍ଛିନ୍ନ, ତ୍ରସ୍ତ ଓ ଉତ୍ତେଜିତ ହୋଇ ରହିଛି । କିନ୍ତୁ ପ୍ରତ୍ୟେକ ମଣିଷର ଜୀବନକୁ ସମ୍ମାନ ଦେଇପାରିଲେ ସେ ସଂସାରରେ ନାନା ଧର୍ମ ଓ ନାନା ଦୃଷ୍ଟିର ସମନ୍ୱୟ କରିପାରନ୍ତା, ସଂସାରରେ ଅଧିକ ଶାନ୍ତି ଓ ଅଧିକ ଆନନ୍ଦ ସମ୍ଭବ କରିପାରନ୍ତା । ମଣିଷ ଆଜି ଯେଉଁ ଦଶାରେ ପଡ଼ିଛି, ତାହାକୁ ଦୁର୍ଦ୍ଦଶା ହିଁ କହିବାକୁ ହେବ । ଏହି ଦସ୍ୟୁମାସ୍ୟ ଦୁର୍ଦ୍ଦଶା ଦୂର କରିବା ଲାଗି, ସବୁ ମଣିଷଙ୍କର ଶକ୍ତିକୁ ତୁଳ କରିବା ଲାଗି ଦଶ ବର୍ଷ ତଳେ ଜାତିସଂଘର ସୃଷ୍ଟି ହୋଇଥିଲା । ସଂସାରରେ ଶାନ୍ତି ଓ ମିତ୍ରତା କାମନା କରି ହିଁ ଏହି ଅପୂର୍ବ ଅନୁଷ୍ଠାନ ଜନ୍ମଲାଭ କରିଥିଲା । ପୃଥିବୀରେ ସମସ୍ତଙ୍କର ସଦିଚ୍ଛା ଓ ସହଯୋଗରେ ସବୁ ମଣିଷର ରୋଗ ଓ ଦାରିଦ୍ର୍ୟ ଦୂର ହୋଇ-ପାରିବ, ଆକାଶତଳେ ସବୁ ପିଲା ଓ ବୟସ୍କ ପାଠପଢ଼ି ସଂସାରରେ ସୁସ୍ଥ ନାଗରିକ ହେବାର ସୁଯୋଗ ପାଇବେ, ମଣିଷର ଆୟୁକୁ ଖାଇଯାଉଥିବା ଭୟାବହ ରୋଗମାନଙ୍କ ବିରୁଦ୍ଧରେ ଚକାସ୍ରାର ଶକ୍ତିଶାଳୀ ଅଭିଯାନ ଚାଲିବ । ମଣିଷର ଧ୍ୱଂସ ଲାଗି ନୁହେଁ, କିନ୍ତୁ ମଣିଷର ସମୃଦ୍ଧି ଲାଗି ସଂଯୁକ୍ତ ଯୋଜନାରେ ବିଜ୍ଞାନର ବିବେକପୂର୍ଣ୍ଣ ନିୟନ୍ତ୍ରଣ ହୋଇପାରିବ, ଜାତିସଂଘ ପଛରେ ଏହି ମହତ୍ ଉଦ୍ଦେଶ୍ୟମାନ ଥିଲା—ଆଜି ମଧ୍ୟ ରହିଛି । କିନ୍ତୁ ଦୁର୍ଭାଗ୍ୟବଶତଃ ଜାତିସଂଘ ଆଜି ରାଜନୈତିକ ପକ୍ଷମାନଙ୍କର କବଳରେ ପଡ଼ିଛି । ସେଥିଲାଗି ଜାତିସଂଘର ଆଲୋଚନା-ମନ୍ଦିରରେ ମଣିଷ ବିରୁଦ୍ଧରେ ମଣିଷ ଠିଆହୋଇ ଆଜି ବେଶ୍ କଳହ କରିପାରୁଛି, ବେଶ୍ ଆପଣାର ସ୍ୱାର୍ଥଜନିତ ଭୟକୁ ପ୍ରକଟ

କରିପାରୁଛୁ, ନାନାପ୍ରକାର ଅସଦୁପାୟରେ ବେଶ୍ ମଣିଷକୁ ମଣିଷ ସହିତ ଲଢ଼େଇ ଦେଇପାରୁଛୁ । ଏ ଯୁଗର ଘୃଣା ଓ ଏ ଯୁଗର ରାଜନୀତିକୁ ପୁଞ୍ଜିକରି ଧରିଥିବା ଲୋକଙ୍କର ବା ଦୃଷ୍ଟିକୋଣର ଆୟତ୍ତରେ ଥିବାଯାଏ ଜାତିସଂଘ ଆପଣା ଲକ୍ଷ୍ୟରେ ବେଶୀଦୂର ଆଗେଇପାରିବ ନାହିଁ । ସାରା ପୃଥିବୀର ଶିକ୍ଷକ, ସାରା ପୃଥିବୀର ଦାର୍ଶନିକ ଓ ବୈଜ୍ଞାନିକ ଏହି ଅନୁଷ୍ଠାନର ସୂତ୍ରଧର ହୋଇ ରହିବା ଉଚିତ । ଶିକ୍ଷା ଓ ସେବାର ସୂତ୍ରଦ୍ୱାରା ହିଁ ସଂସାରର ବିଚ୍ଛିନ୍ନ ମଣିଷ-ମନକୁ ପୁଣି ଏକତ୍ର ଏକନିଷ୍ଠ ଓ ଶ୍ରଦ୍ଧାଶୀଳ କରି ବାନ୍ଧିବା ସମ୍ଭବ ହେବ । ପ୍ରତିବର୍ଷ କେବଳ ପୃଥିବୀର କେତେଟା ଜାଗାରେ ଯୁଦ୍ଧ ବନ୍ଦ କରିବାର କଥାବାର୍ତ୍ତା କରିବା ବଡ଼ପଣ୍ଡା ହିସାବରେ ପୃଥିବୀର ଭାଗ୍ୟ ନିର୍ଣ୍ଣୟ କରିନେବାର ଆଡ଼ମ୍ବର କରି କେହି ପୃଥିବୀର ହୃଦୟକୁ ଯୋଡ଼ି-ପାରିବ ନାହିଁ ।

ଅଥର୍ବବେଦରେ (୧୯।୯।୧୪) ଆମର ଋଷିମାନେ ହୃଦୟ ଯୋଡ଼ିବାର ଶାନ୍ତି ଲାଗି ମନ୍ତ୍ର ଘୋଷଣା କରିଯାଇଛନ୍ତି, "ପୃଥିବୀ ଶାନ୍ତିରନ୍ତରୀକ୍ଷଂ ଶାନ୍ତିର୍ଦ୍ୟୌଃ ଶାନ୍ତିରାପଃ ଶାନ୍ତିରୋଷଧୟଃ ଶାନ୍ତିର୍ବନସ୍ପତୟଃ ଶାନ୍ତିର୍ବିଶ୍ୱେ ମେ ଦେବାଃ ଶାନ୍ତିଃ ସର୍ବେ ମେ ଦେବା ଶାନ୍ତିଃ, ଶାନ୍ତିଃ ଶାନ୍ତିଃ ଶାନ୍ତିଭିଃ । ତାଭିଃ ଶାନ୍ତିଭିଃ ସର୍ବଶାନ୍ତିଭିଃ ଶମୟାମୋଽହଂ ଯଦିହ ଘୋରଂ ଯଦିହ କ୍ରୂରଂ ଯଦିହ ପାପଂ ତଚ୍ଛାନ୍ତଂ, ତଚ୍ଛିବଂ ସର୍ବମେବ ଶମସ୍ତୁ ନଃ"-ସକଳ ବିଶ୍ୱଦେବ ମୋର ଶାନ୍ତିବିଧାନ କରନ୍ତୁ । ସଂସାରରେ ଯାହା ଭୟଙ୍କର, ଯାହା ନିଷ୍ଠୁର ଓ ଯାହା ପାପମୟ, ଏହି ଶାନ୍ତିଦ୍ୱାରା ଆମେ ସେହି ସକଳକୁ ଶାନ୍ତ କରିଦେଉ । ସେ ସକଳ ଆମ ଲାଗି ଶାନ୍ତ ହୁଅନ୍ତୁ, କଲ୍ୟାଣକର ହୁଅନ୍ତୁ । ଏ ସଂସାରରେ ଯାହା ଭୟଙ୍କର, ଯାହା ନିଷ୍ଠୁର ଓ ଯାହା ପାପମୟ, ସେ ସମସ୍ତ କ୍ଷେତ୍ରରେ ଆମେ ଶାନ୍ତି ପ୍ରତିଷ୍ଠା କରିବା ଲାଗି ଉଦ୍ୟତ ହେବା । ଆଜି ଆମର ଶିକ୍ଷା ଓ ଜ୍ଞାନ କେବଳ ଏହି ଶାନ୍ତିପ୍ରତିଷ୍ଠାର ସହାୟକ ହେଉ । ଜାତିସଂଘର ଜନ୍ମୋତ୍ସବରେ ଏହାଠାରୁ ମହତ୍ତର ସଂକଳ୍ପ ଆଉ କ'ଣ ନିଆଯାଇପାରେ ?

୧୫।୧୧।୫୫

କାଲି ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କର ଜନ୍ମଦିନ ଥିଲା । ସେ କଥା ସମସ୍ତେ ଜାଣିଲେ । ଖବରକାଗଜମାନଙ୍କରେ ଲେଖାମାନ ବାହାରିଲା । ଫଟୋମାନ ମଧ୍ୟ ବାହାରିଲା । କିନ୍ତୁ କାଲି ସାରା ଭାରତ ପାଇଁ ଆଉ ଗୋଟାଏ ବଡ଼ଦିନ ଥିଲା । କାଲି ଶିଶୁ ଦିବସ ପାଳନ କରିବାର କଥା । ସେକଥା ହୁଏତ ଅନେକ ଜାଣିଲେ ନାହିଁ । ଏପରି କି ଯେଉଁ ପିଲାଙ୍କୁ ଅଧିଷ୍ଠିତ କରାଇ କାଲି ଉତ୍ସବଟି ପାଳିତ ହେଲା, ସେ ପିଲାମାନେ ମଧ୍ୟ ହୁଏତ ଆପଣା ମହତ୍ତ୍ୱର ଦିନଟି ବିଷୟରେ କିଛି ଜାଣିଲେ ନାହିଁ । ଯେଉଁ ଦେଶରେ ପ୍ରତ୍ୟେକ ପିଲା ଲାଗି ପେଟପୂରା ଖାଇବାର ବା ସୁସ୍ଥ ରହି ପାଠ ପଢ଼ିବାର ଏପର୍ଯ୍ୟନ୍ତ ବ୍ୟବସ୍ଥା ହୋଇ ନାହିଁ, ସେ ଦେଶର ପିଲାଏ କପରି ଆପଣା ସମ୍ମାନର କଥାଟା ଜାଣିବେ ? ଦଶ ବର୍ଷ ତଳେ ଆମ ଦେଶ ସ୍ୱାଧୀନ ନ ଥିଲା । ଏ ଦେଶର କେତେ କୋଟି ପିଲାଙ୍କର କଥା କେହି ବିଚାରିବାକୁ ମଧ୍ୟ ଆସୁ ନ ଥିଲା । ଯାହା ବାପର ପଇସା ଥିଲା ବା ଯାହା ଘରେ ଜମିବାଡ଼ି ଥିଲା, ସେହି ପିଲାଏ ଦି' ଅକ୍ଷର ପାଠ ପଢ଼ୁଥିଲେ । ସେହିମାନେ ମଟର, ରେଲ ଚଢ଼ି କଟକ ଆସୁଥିଲେ । ରାଜା ରାଜୁଡ଼ାଙ୍କ ପୁଅ ଝିଅମାନେ ରାୟପୁର ବା ଡେରାଡ଼ୁନ ପାଠ ପଢ଼ିବାକୁ ଯାଉଥିଲେ । ରାଜାଙ୍କୁ ଖଜଣା ଗଣୁଥିବା ପ୍ରଜାଙ୍କର ପିଲାଏ ଲଙ୍ଗଳା ବା ଦରଲଙ୍ଗଳା ହୋଇ ଗାଈ ଚରାଇ ବୁଲୁଥିଲେ । ଭାତ ଆଉ ସୁନୁସୁନିଆ ଶାଗରେ ସେମାନଙ୍କର ହୁଏତ ବରଷରେ ଛ' ମାସ କଟୁଥିଲା । ଅନେକ ଦିନ ହୁଏତ କିଛି ମିଳୁ ନ ଥିଲା । ଆଉ ପାଠ ପଢ଼ିବା କଥା ପଚାରେ କିଏ ? ଏ ଦେଶରେ ଏପରି ହୀନ ଅବସ୍ଥାରେ ଏତେଗୁଡ଼ିଏ ପିଲା ଅଛନ୍ତି, ସଭ୍ୟ ସଂସାର କର୍ମଯୋଜନା ଭିତରେ ସେ କଥା କେହି ଭାବିପାରୁ ନ ଥିଲା । ସ୍ୱାଧୀନତା ପାଇବାର ଆଜିକୁ ଆଠବର୍ଷ ହୋଇଗଲାଣି; ତଥାପି ନିର୍ଲିପ୍ତ ଦୃଷ୍ଟିରେ ଦେଶକୁ ଓ ସମାଜକୁ ଦେଖୁଥିବା ଯେ କେହି କହିପାରିବେ ଯେ ଏ ଦେଶର ପିଲାଙ୍କ ଲାଗି ଯେତିକି ଯତ୍ନ ଓ ଶ୍ରଦ୍ଧା ମିଳିବା କଥା, ତାହା ଆଜି ହେଉ ନାହିଁ । ପିଲା ଭିତରେ ଭଗବାନ ଅଛନ୍ତି, ଏ କଥା ଆମେ ଶାସ୍ତ୍ର ପୁରାଣରେ ପଢ଼ିଛୁ, ଗୁରୁ ମୁଖରୁ ମଧ୍ୟ ଶୁଣିଛୁ; କିନ୍ତୁ ଆମ ଗାଆଁର ପାଣୋହି କି ହାଡ଼ିସାହିରେ

ଯେଉଁ ବାଳ ଗୋପାଳମାନେ ରହିଛନ୍ତି, ସେମାନଙ୍କୁ ଆମେ ଯଦି ନେହେଲେ ଆଦର ଦେଖାଇ ନାହୁଁ, ଯଦିନେ ସୁଦ୍ଧା ଆପଣାର ଉଦ୍ଧତ ଦୃଷ୍ଟିର ବାଧା କାଟିଦେଇ ସେମାନଙ୍କ ପାଇଁ ଆମେ ଚିନ୍ତା କରି ନାହୁଁ । ଦେଶ ସ୍ୱାଧୀନ ହେଲା, ଏଥର ଆମ ଭିତରେ ରହିଥିବା ସୁପ୍ରବୃତ୍ତିଗୁଡ଼ିକୁ ଜାଗ୍ରତ କରିବାକୁ ହେବ, ଆମର ଦୃଷ୍ଟିକୁ ଆହୁରି ଗଭୀର କରିବାକୁ ହେବ । ଆମର ଅନୁଭୂତିକୁ ଆହୁରି ସୂକ୍ଷ୍ମ ଓ ପ୍ରାଣବନ୍ତ କରିବାକୁ ହେବ । ଦେଶର ସବୁ ପିଲାଙ୍କୁ ଆମେ ଆଦର କରିବା, ସଭିଙ୍କୁ ଆମେ ଆମ ନିଜ ଘରର ପିଲାଙ୍କ ପରି ଗ୍ରହଣ କରିବା । ସେମାନଙ୍କ ଜୀବନକୁ ଅଧିକ ସୁସ୍ଥ ଓ ସୁନ୍ଦର କରିବାକୁ ଆମେ ସମସ୍ତେ ମିଶି କିଛି କରିବା, ଏହା ମଧ୍ୟ ଗୋଟିଏ ସୁପ୍ରବୃତ୍ତି । ଶିଶୁଦିବସକୁ ଆମେ ପାଳନ କରିବା ପ୍ରଧାନତଃ ଏହି ସୁପ୍ରବୃତ୍ତିଟି ଆମ ଭିତରେ ଜାଗ୍ରତ କରିବା ପାଇଁ । ଆମେ ପିଲା ପ୍ରତି ନିଷ୍ଠୁର ହେବା ନାହିଁ । ନାନାପ୍ରକାର ଉଗ୍ର ଉତ୍ତେଜିତ ଶାସନଦ୍ୱାରା ଆମେ ପିଲାର ବିକାଶକୁ ସଙ୍କୁଚିତ କରିଦେବା ନାହିଁ, ପିଲାକୁ ନାନାପ୍ରକାର ଅଫିମ ଖୁଆଇ ତା'ର ଆନନ୍ଦକୁ ଆମେ ମାରିଦେବା ନାହିଁ । ଆମ ଦେଶରେ ଓ ଆମ ସମାଜରେ ପିଲା ପ୍ରତି ଅନେକ ଅନ୍ୟାୟ କରାଯାଉଛି । ଏ ଅନ୍ୟାୟ କରିବାର ଦୁଷ୍ଟ ଅଭ୍ୟାସ ଆମେ ପରିତ୍ୟାଗ କରିବା । କାଲି ଶିଶୁ ଦିବସରେ ଅନେକ ଜାଗାରେ ନାଟକ ଓ ଅଭିନୟମାନ ହୋଇଥିବ ।ଅନେକ ଜାଗାରେ ପିଲାଙ୍କୁ ମିଠେଇ ବଣ୍ଟା ଯାଇଥିବ । ଏସବୁ ତ କ୍ଷଣିକ ଉନ୍ମାଦନା ବା ଉଚ୍ଛ୍ୱାସର ଗୋଟିଏ ଗୋଟିଏ ଦୃଷ୍ଟାନ୍ତ । ଏହି କ୍ଷଣିକ ପ୍ରୀତି ଆମର ଶ୍ରଦ୍ଧାକୁ ଯଥେଷ୍ଟ ଗଭୀର ଓ ଯଥେଷ୍ଟ ଉଦାର କରି ପାରିବ ନାହିଁ । ରାଜନୀତି, ଯୁଦ୍ଧନୀତି ଓ ଅର୍ଥନୀତିର ନାନା ଦ୍ୱନ୍ଦ୍ୱ ଆଜି ମଣିଷ ସହିତ ମଣିଷର ସମ୍ପର୍କକୁ ବଡ଼ କୁଟିଳ କରି ରଖିଛି । ମଣିଷ ପାଖରେ ମଣିଷର ଦୁଆର ଆଉ ସ୍ୱାଭାବିକ ଭାବରେ ଖୋଲି ଯାଉ ନାହିଁ । ନାନାପ୍ରକାର ପ୍ରାଚୀରର ବେଷ୍ଟନୀ ଭିତରେ ଆପଣାକୁ ଆବଦ୍ଧ କରି ରଖି ଅଭିମାନୀ ମଣିଷ ଆଜି ବଡ ଦୀନଦୁଃଖୀ ଭାବରେ ସମୟ କାଟୁଛି । ସବୁ ମଣିଷ ଗୋଟିଏ କ୍ଷେତ୍ରରେ ଏକତ୍ର ହୋଇପାରିବେ, ଏପରି ଅବକାଶ ଆମ ସମାଜରେ ଖୁବ୍ କମ୍ ରହିଛି । ପିଲାଙ୍କ ଭଲ ଆମେ ସମସ୍ତେ ଇଚ୍ଛା କରୁଛୁ, ଆମେ ସମସ୍ତେ

ପିଲାଙ୍କୁ ଭଲ ପାଉଛନ୍ତି, ସଂସାରର ଧର୍ମ, ସଂସ୍କୃତି ଓ ବର୍ଣ୍ଣର ଭେଦ ପିଲାଙ୍କୁ ସ୍ପର୍ଶ କରିପାରି ନାହିଁ । ଏହି ପିଲାଙ୍କର କଲ୍ୟାଣ କରିବା କ୍ଷେତ୍ରରେ ଆମେ ସଂସାରରେ ସମସ୍ତେ ମିଳିତ ହୋଇପାରିବା । ମଣିଷକୁ ମଣିଷ ସହିତ ଏକତ୍ର କରିବା ଲାଗି ଏପରି ନିର୍ମଳ କ୍ଷେତ୍ର ସଂସାରରେ ଆମେ ଖୁବ୍ କମ୍ ପାଇବା । ଆମ ପିଲାଏ ଆମର ଜୀବନ ଓ ମନକୁ ଅନେକ ସୁନ୍ଦର କରିଦେଇ ପାରିବେ ।

ପିଲାଙ୍କର କାମ ଆମେ କରିବା ବୋଲି କୌଣସି ପ୍ରକାର ଉତ୍ତେଜନା ବା ଅହଙ୍କାର ଯେପରି ଆମକୁ ସ୍ପର୍ଶ ନ କରେ । ପିଲାପାଇଁ କାମ କରି, ପିଲାଙ୍କୁ ଭଲ ପାଇ ଆମେ ପିଲାଙ୍କଠାରୁ ଶିଖିବା । ଆମେ ପିଲା ପରି ନିର୍ମଳ ହେବା । ପିଲାଙ୍କର ସେବା ଆମକୁ ସବୁ ମଣିଷ ଭିତରେ ରହିଥିବା ଭଲ ପ୍ରବୃତ୍ତିର ସ୍ମରଣ କରାଇଦେବ । ଯୀଶୁଖ୍ରୀଷ୍ଟ ତ ଏ ବିଷୟରେ ଅନେକ ଆଗରୁ ବଳି ଯାଇଛନ୍ତି । ସେ କହିଛନ୍ତି, ଯିଏ ଆପଣାର ମନକୁ ପିଲାଟିର ମନ ପରି କରିଦେଇପାରିବ, କେବଳ ସେହି ସ୍ୱର୍ଗ ରାଜ୍ୟରେ ପ୍ରବେଶ କରିବାର ଯୋଗ୍ୟତା ଅର୍ଜନ କରି ପାରିବ । ସବୁ ଜଟିଳତା ତୁଟିଲେ, ହୃଦୟର ସବୁ ଗଣ୍ଠି ଫିଟିଲେ ଯାଇ ଭଗବାନ ବା ବିଶ୍ୱଜୀବନର ଖିଅ ଆମ ଜୀବନ ସହିତ ଯୋଡ଼ି ହୋଇଯିବ । ପିଲାର ସରଳତାକୁ ଆପଣା ଜୀବନରେ ଫୁଟାଇପାରିଲେ ଆମେ ଜୀବନରେ ଉଚ୍ଚକୋଟୀର ଆନନ୍ଦ ପାଇବା । ବାଳଗୋପାଳର ମହିମା ଅନେକ, ତାକୁ ଆମେ ଆଉ ଅବଜ୍ଞାର ସହିତ ଦୂରରେ ପକାଇ ରଖିବା ନାହିଁ ।

---

— ୭ —

୨୭ । ୧୧ । ୫୫

ଆପଣାର ଦୁର୍ବଳତା କଥା ମନେପଡ଼ିଲାବେଳେ ବାଇବେଲର ସେହି ଦୁର୍ବଳା ସ୍ତ୍ରୀ ଲୋକଟିର କଥା ମୋର ବାର ବାର ମନେପଡ଼େ । ସଂସାର

ଯାହାକୁ କୁଳଟା କହି ଟେକା ପଥର ପକାଇ ମାରିଦେବାକୁ ଧାଇଁ ଥିଲା, ମାନବପୁତ୍ର ତାହାକୁ ଆପଣାର ଅଭୟ ଦେଇ ରଖିଲେ, ତା'ର ସମସ୍ତ ପାପ ପଖାଳି ଦେଇ ତାକୁ ଉଜ୍ଜ୍ୱଳ କରିଦେଲେ । ମଣିଷ ଭିତରେ ବିଦ୍ୱେଷ ରହିଛି । ମଣିଷ ଭିତରେ ଘୃଣା ରହିଛି । ତେଣୁ ତାର ସୁବିଧା ପାଇଁ ତା'ର ସଂସ୍କାରଦ୍ୱାରା ଗଢାଯାଇଥିବା ସମାଜରେ ମଧ୍ୟ ନାନାପ୍ରକାର ବିଦ୍ୱେଷ ଓ ଘୃଣା ଭର୍ତ୍ତି ହୋଇ ରହିଛି । କିନ୍ତୁ ଭଗବାନଙ୍କ ଦୃଷ୍ଟିରେ ବିଦ୍ୱେଷ ବା ଘୃଣାର ସ୍ଥାନ ନାହିଁ । ପାପ ପୁଣ୍ୟର ହାଟରେ ଭଗବାନ ତ ମଣିଷ ସହିତ ପ୍ରତିଯୋଗିତା କରୁ ନାହାନ୍ତି ଯେ ମଣିଷର ପାପରେ ସେ ସୁଖୀ ହେବେ ବା ପୁଣ୍ୟରେ ଈର୍ଷା କରିବେ । କେବଳ ମଣିଷ ସେ କଥା କରେ । ନୈତିକତାକୁ ପଣ୍ୟ କରି ସମାଜର ବଜାରରେ ମଣିଷ ବଣିଜ କରି ବାହାରେ । ସେହି ବଣିଜରେ ଯିଏ ଲାଭବାନ୍ ହୁଏ, ସେ କୃତାପଟ ମାରେ; ଭଲ ହେବାର ଦମ୍ଭ କରେ । ଯିଏ ଧରାପଡିଯାଏ, ସେ ହାରେ; ସେ ସଭିଙ୍କର ଉପହାସର ପାତ୍ର ହୁଏ, ସଂସାରର ସବୁ ପାପର ଚୂନକାଳି ତାହାର ମୁହଁରେ ବୋଳାହୁଏ । ଭଗବାନ୍ ପ୍ରତ୍ୟେକ ମଣିଷକୁ ଭଲ ପା'ନ୍ତି । ଯିଏ ସ୍ୱଚ୍ଛ ହୁଏ, ନିର୍ମଳ ହୁଏ, ତାହାର ଉପରେ ଭଗବାନ ପ୍ରସନ୍ନ ହୁଅନ୍ତି । ଯିଏ ଅନ୍ଧାର ଭିତରେ ଗୋଡ଼ ଖସାଇ ଅବାଟରେ ଖସି ଚାଲିଯାଏ, ଆପଣାକୁ ଯିଏ ଚିହ୍ନିପାରେ ନାହିଁ, ଭଗବାନ ଶ୍ରଦ୍ଧାର ସହିତ ତାକୁ ମଧ୍ୟ ସାହାଯ୍ୟର ହାତ ବଢାଇ ଦିଅନ୍ତି । ପାପର କାଦୁଅରେ ଯିଏ ଯେତେ ବେଶୀ ବୁଡ଼ିରହିଥାଉ ପଛକେ, ଯାହାର ଯେଉଁଠି ନିଦ ଭାଙ୍ଗେ, ମୋହର ଅଳସ୍ୟ ସେଇଠି ତୁଟିଯାଏ; ସେଇଠି ଆଶିଷର ଆଲିଙ୍ଗନ ଦେଇ ଭଗବାନ ତାକୁ ଉପରକୁ ଉଠାଇନେବାକୁ ଆସନ୍ତି । ତା'ର ଉତ୍ଥାନରେ ମଧ୍ୟ ଭଗବାନ ଖୁସୀ ହୁଅନ୍ତି । ଯାହାର ନିଦ ଯେଉଁଠି ଭାଙ୍ଗେ, ସେଠି ତାର ସୂର୍ଯ୍ୟ ଦର୍ଶନ ହୁଏ ।

ଆମର ସ୍ୱଭାବରେ ଅନେକ ପ୍ରକାର ରୋଗ ରହିଛି । ଆମର ଆଗ୍ରହରେ ଅନେକ ବିକାର ରହିଛି । ଆମର ପ୍ରେମ ଓ ଭଲ ପାଇବାରେ ଅନେକ ମଳିନତା ରହିଛି । ଆମର ଭକ୍ତିରେ ଅନେକ ଦୁର୍ବଳତା ରହିଛି । ଏଥିଲାଗି ଆମେ ପ୍ରତ୍ୟେକେ ନିଶ୍ଚୟ ଦାୟୀ । କିନ୍ତୁ ଆମ ଅପେକ୍ଷା ଆମର ରୁଗ୍ଣ

ସମାଜ ଅଧିକ ଦାୟୀ । ସମାଜର କୁଶିକ୍ଷା ଆମ ଭିତରେ ନାନାପ୍ରକାର ବିକାରର ଜୀବାଣୁ ଭର୍ତ୍ତି କରିଦେଇଛି । ଭିତରେ ନାନାପ୍ରକାର ମୂଢ଼ ଓ ମଳିନ ହେବାର ପ୍ରଶ୍ରୟ ଦେଇ ତାହାରେ ଆମ ସମାଜ ଆମ ଭିତରେ ନାନା ନୈତିକତାର କଡ଼ୁ ଔଷଧ ଭରି ଦେଇଛି । ତାହାରେ ଆମେ ସମସ୍ତେ ଭଦ୍ରଲୋକ ହୋଇ ସଂସ୍କୃତିର ମଧୁର ଝାକରି ମାରି ମାରି ବୁଲୁଛୁ; କିନ୍ତୁ ସମସ୍ତେ ସଂସ୍କୃତିକୁ ହଜମ କରି ସ୍ୱାଭାବିକ ଜୀବନରୂପେ ତାକୁ ଫୁଟାଇପାରିବାର ଆମର ନୈତିକ ପାକସ୍ଥଳୀକୁ ତେଣେ କେତେ ପ୍ରକାର କୃତ୍ରିମତାର ତାପ ପୋଡ଼ି ପାଉଁଶ କରିଦେଇ ସାରିଲାଣି । ସେଥିଲାଗି ଆମର ନୈତିକତା ଆମକୁ ନମ୍ର କରିବା ପରିବର୍ତ୍ତେ ଆମକୁ ଉଗ୍ର କରି ପକାଉଛି । ଆପଣାକୁ ବୁଝିପାରିବାର ଶକ୍ତି ଆମେ ହରାଇ ବସିଛୁ । ନିତ ସାହସରେ ସହିତ ଆପଣା ଉପରେ ଦୃଷ୍ଟିପାତ କରିବାର ସ୍ୱାଭାବିକତା ଆମର ଚାଲିଯାଉଛି । ସମାଜର ଏ ମିଥ୍ୟାବିବେକ ଆମକୁ ବଦଳାଇବାକୁ ହେବ । ପରସ୍ପର ସହିତ ନୈତିକ ପ୍ରତିଯୋଗିତା ନ କରି ଅପରକୁ ଧରି ପକାଇଦେଇ ଆପଣାକୁ ଆଖି ଆଢ଼ୁଆଳରେ ରଖିବାର ଧୃଷ୍ଟତା ଆମେ କରିବା ନାହିଁ । ଏଥିଲାଗି ଆମ ପ୍ରତ୍ୟେକଙ୍କୁ ନିର୍ମଳ ଆଧ୍ୟାତ୍ମିକ ଦୃଷ୍ଟି ଅର୍ଜନ କରିବାକୁ ହେବ । ଏଥିଲାଗି ସବୁପ୍ରକାର ଲାଜ ଆଉ ଅପବାଦକୁ ପାଣିରେ ପକାଇଦେଇ ଶୁଦ୍ଧ ଓ ସ୍ୱାଭାବିକ ହେବାର ସାଧନା ଆମକୁ କରିବାକୁ ହେବ । ମଣିଷକୁ ଚାକିରି ଯୋଗାଇଦେବା, ଧନ୍ଦା ଯୋଗାଇଦେବା ବା ହାଟ ବଜାରରେ ଲାଭବାନ କରାଇଦେବା ଶିକ୍ଷାର ପ୍ରଧାନ କାମ ନୁହେଁ । ଚରିତ୍ର ନିର୍ମାଣ ହେଉଛି ଶିକ୍ଷାର ପ୍ରଧାନ କାମ । ଏଇଠି ଶିକ୍ଷାଳୟର ସବୁ କାରିଗରି ଓ କୃତିତ୍ୱର ପ୍ରକୃତ ପରୀକ୍ଷା ହେବ । ଏ ଚରିତ୍ର ବାହାରୁ ଆମ ହାତରେ ଖସି ପଡ଼ିବ ନାହିଁ । ଆମ ଆଗ୍ରହକୁ ଦବାଇଦେଇ ଓ ଆମର ମାନୁଷିକ ପ୍ରବୃତ୍ତିଗୁଡ଼ିକୁ ମାରି ଦେଇ କୌଣସି ଉତ୍ତେଜିତ ନୀତିବାଦୀ ଆମର ଚରିତ୍ରକୁ ଉଚ୍ଚତର କରି ତିଆରି କରିପାରିବ ନାହିଁ । ଯେତେ ଥର ମଣିଷ ଉପରେ ଏପରି ଜବରଦସ୍ତି ଚାଲିଛି, ସେତେଥର ନୀତି ହାରି ମାନିଛି, ରାକ୍ଷସ ଜିତିଛି । ଆମେ ଆଗ୍ରହର ବାଟକୁ ବଦଳାଇଦେବା, ଆଗ୍ରହର ସ୍ତରକୁ ବଦଳାଇଦେବା । ସଂକୀର୍ଣ୍ଣ କାଠ ଜୀବନର ନାନା ଲାଳସା ଓ ଲୁବ୍ଧତାକୁ

'ଆମେ ଆମର ଆଗ୍ରହକୁ ମୁକ୍ତ କରିବା । ସମସ୍ତ ପ୍ରକାର ମୋହରୁ ଆମେ ଆମର ଶ୍ରଦ୍ଧାକୁ ମୁକ୍ତ କରିବା । ଆମ ଭଲ ପାଇବାକୁ ଅଧିକ ଶୁଦ୍ଧକରି ଆମେ ମୋହକୁ ଜୟ କରିବା । ଆମ ଉପରେ ଶାସନ କରିବାକୁ ଆସୁଥିବା ରାକ୍ଷସକୁ ଜୟ କରିବା ।

ବୃହଦାରଣ୍ୟକ ଉପନିଷଦର ଯାଜ୍ଞବଲ୍କ୍ୟ ଓ ମୈତ୍ରେୟୀଙ୍କ ଉପାଖ୍ୟାନଟି (୨।୪।୩) ଆମେ ମନେ ରଖିବା । ଋଷି ଯାଜ୍ଞବଲ୍କ୍ୟ ଯେତେବେଳେ ସ୍ତ୍ରୀ ମୈତ୍ରେୟୀଙ୍କୁ ଧନ ସମ୍ପତ୍ତି ଅର୍ପଣ କରି ବାନପ୍ରସ୍ଥରେ ଯିବାକୁ ବାହାରିଲେ, ମୈତ୍ରେୟୀ କହିଲେ, "ଯେ ନାହଂନାମୃତା ସ୍ୟାଂ କିମହଂ ତେନ କୁର୍ଯ୍ୟାଂ —ଯାହାଦ୍ୱାରା ମୁଁ ଅମୃତତ୍ତ୍ୱ ଲଭ କରିପାରିବି ନାହିଁ, ତାକୁ ନେଇ ମୁଁ କ'ଣ କରିବି ?" ଆମର ଆଗ୍ରହ ଆମ ଦେହାଭିମାନରୂପ ବିକାର ହୋଇ ଯେତେବେଳେ ଆମକୁ ଗ୍ରାସ କରିବାକୁ ଆସୁଛି, ଆମେ ସେତେବେଳେ ଠିକ୍ ଏଇ ଜବାବ ଦେବା । ଯାହାଦ୍ୱାରା ମୁଁ ଅମୃତତ୍ତ୍ୱ ଲଭ କରିପାରିବି ନାହିଁ, ତାକୁ ନେଇ ମୁଁ କଣ କରିବି ? ଏହି ଅମୃତତ୍ତ୍ୱଲଭର ଜିଜ୍ଞାସା କାଠିରେ ଆମେ ଆମର ଆଗ୍ରହକୁ ପରୀକ୍ଷା କରିବା, ଆମର ଭଲ ପାଇବା ଗୁଣକୁ ପରୀକ୍ଷା କରିବା ବା ଆମର ବୁଦ୍ଧିକୁ ପରୀକ୍ଷା କରିବା । ଯେଉଁ ଆଗ୍ରହ, ଯେଉଁ ବୁଦ୍ଧି ଓ ଯେଉଁ ଭଲ ପାଇବା ଆମକୁ ଉଚ୍ଚକୁ ଉଠାଇବ, ସବୁରି ସହିତ ଯୁକ୍ତ କରି ଆମକୁ ଅମୃତତ୍ତ୍ୱର ଆସ୍ୱାଦନ ଦେଇଯିବ, ସେହି ଆଗ୍ରହ, ସେହି ବୁଦ୍ଧି ଓ ସେହି ଭଲ ପାଇବା ଆମର ଜୀବନକୁ ସୁନ୍ଦର କରିବ । ଏହାଦ୍ୱାରା ସବୁରି କଲ୍ୟାଣ ହେବ । ଆଉ ଯଦି ସେପରି ହୋଇ ନ ପାରିବ, ତେବେ ସେସବୁ କେବଳ ଆମ ଜୀବନର ବିକାର ହୋଇ ରହିବ, ସବୁରି ଅକଲ୍ୟାଣ କରିବ, ଆମକୁ ବିନାଶ ଆଡ଼କୁ ନେଇଯିବ ।

୧୭ । ୧୧ । ୫୫

ଆମ ଦେଶର ପିଲାଙ୍କୁ ଶ୍ରଦ୍ଧା ଦେଖାଇବାକୁ ଯାଇ ଆମ ଦେଶରେ ନାନା ପ୍ରକାର ଦାନ ଓ ଦୟା ଚାଲିଛି । ଆଦିବାସୀ ଓ ହରିଜନ ମେଲାମାନଙ୍କରେ

କେତେ ପିଲାଙ୍କୁ ମିଠାଇ ବଣ୍ଟା ଯାଉଛି । ମରୁଜି ଓ ଧୋଇ ଅଞ୍ଚଳର ପିଲାଙ୍କୁ ସ୍କୁଲ ଘରେ ଜନୁନା ଗୁଡ଼ଲର ଯାଉ ରାନ୍ଧ ଖାଇବାକୁ ଦିଆଯାଉଛି । ଆଉ କର୍ତ୍ତବ୍ୟର ଅନୁରୋଧରେ ପନ୍ତି ଷ୍ଟେସନର କେତେକ ପ୍ଲାଟଫର୍ମ ଉପରେ ଆମେ ଆମର ବୋକର୍ଗ୍ ବୋହିବାର ବା ଜୋତା ପାଲିସ୍ କରି ଦେବାର ମଜୁରି ଦେଇ ଆସୁଛୁ । ଆମ ଦେଶରେ ଗରିବ ପିଲାଲାଗି ଧନୀ ସମାଜ ଓ ଧନୀ ସରକାର ଆଜିକାଲି ଅଧିକ ଖର୍ଚ୍ଚୁଛି । କିନ୍ତୁ ଶିକ୍ଷାଦାନ ଯେ ଯେକୌଣସି ଦାନଠାରୁ ମହତ୍ତ୍ୱପୂର୍ଣ୍ଣ ଦାନ, ସେ କଥା ଏ ଦେଶରେ ଅନେକ ଧନୀ ଲୋକ ଭୁଲିଗଲାପରି ଲାଗୁଛି । ଏ ଦେଶରେ ପିଲାଏ ସବୁ ପାଆନ୍ତୁ, କୋରାଖାଇ ବା ମିଠାଇ ବାଣ୍ଟି ଏ ଦେଶର ମ୍ଳେଛ ପିଲାଙ୍କର ନିତି ବାଲାଲୀଳା ହେଉ ପଛକେ ଏ ଦେଶର ସବୁ ପିଲା ପାଠ ପଢ଼ନ୍ତୁ; ଆପଣାର ବିକାଶ ଲାଗି ଉପଯୁକ୍ତ ସୁଯୋଗ ପାଆନ୍ତୁ । ଏ କଥା ଶିକ୍ଷା-ଇଲାକାର ସରବରାକାରମାନେ ଆଜି ମଧ୍ୟ ଭାବି ପାରୁନାହାନ୍ତି । ଶିକ୍ଷାଲାଗି ସେମାନଙ୍କର ଯଥେଷ୍ଟ ଆଗ୍ରହ ଅଛି । ଉଚ୍ଚତ ଶିକ୍ଷାଲାଗି ଶ୍ରଦ୍ଧା ଅଛି । ମାସିକ ବସା ଖରଚ କମ୍ କରି ସେମାନେ ପୁଅ ଅଧିକ ନମ୍ବର ରଖିବ ବୋଲି ବା ଝିଅ ହାରମୋନିୟମରେ ଗୀତ ଗାଇ ପାରିବ ବୋଲି ଟିଉସନ ମାଷ୍ଟରଙ୍କୁ ଦରମା ଦେଇ ରଖୁଛନ୍ତି । ଅଥଚ ତାଙ୍କର ଘରେ ଆଉ ଗୋଟାଏ ଗରିବ ଘରର ପିଲା ନିତି ବାସନ ମାଜୁଛି, ମସଲା ବାଟୁଛି, ବୋକର୍ଗ୍ ଧରି ମଟର ପାଖକୁ ଯାଉଛି । ଘର ଓଳାଇ ଦେଉଛି, ଖାଇଲା ବେଳେ ପିଇବାକୁ ବା ହାତ ଧୋଇବାକୁ ପାଣି ବଢ଼ାଇ ଦେଉଛି । ସେ ହୁଏତ ପାଠପଢ଼ି 'ପାରିଥାନ୍ତା । ଦଶ ବରଷରେ ବାବୁଘରେ ଗଣ୍ଡାଏ ଖାଇ ଚାକିରି କରିବାକୁ ବାଧ୍ୟ ହେବାଠାରୁ ତା' ଜୀବନକୁ ଅଧିକ ସୁନ୍ଦର କରି ଗଢ଼ିବାର ସୌଭାଗ୍ୟ ପାଇଥାନ୍ତା । ସେ କଥା ଆମ ପାଠୁଆ' ହାକିମ ଓ ବାପ-ମାଆଙ୍କ ମୁଣ୍ଡରେ ପଶି ପାରୁନାହିଁ । ଏ କଥା କିପରି ସମ୍ଭବ ହେଉଛି ? ଆପଣା ପିଲାଟିକୁ ଅନୁଗତ ଶୁଆ-ପାଠୁଆ କରି ତିଆରି କରିବାକୁ ଆମେ ସବୁପ୍ରକାର ଆୟୋଜନ କରୁଛୁ; ଅଥଚ ସମାଜର ଆହୁରି ଶହ ଶହ ପିଲା କୌଣସି ପ୍ରକାର ଶିକ୍ଷା ପାଇବାର ଅବକାଶ ହିଁ ପାଉନାହାନ୍ତି । ଆମେ ହିଁ ତାଙ୍କୁ ନଗଦ ଦରମାର

ଉଦ୍ଧତ ବଦାନ୍ୟତା ଦେଖାଇ ଆମ ଘରର ଗୃହକର ଝୋଳା କରି ନେଇ ଆସିଛୁ । ଏଥିରେ ଆମ ମନରେ ପାପ ଛୁଉଁନାହିଁ କପରି ?

ଆମ ଦେଶରେ ଝଇ ଫୁଟିଲାପରି ସ୍କୁଲ୍ କଲେଜ ବଢ଼ି ବଢ଼ି ଚାଲିଛି । ସ୍ଥାନୀୟ ସଂସ୍କୃତିର ଦୋହାଇ ଦେଇ ନୂଆ ବିଶ୍ୱବିଦ୍ୟାଳୟମାନ ଗଢ଼ାଯାଉଛି । କେତେ ପାଠୁଆ ଉଚ୍ଚ ପାଠୁଆଙ୍କ କମିଟି ହୋଇ କେଉଁ ବିଷୟ କେମିତି ହେବ ତା'ର ମହଙ୍ଗା ଚର୍ଚ୍ଚା ଆଲୋଚନାମାନ ଚାଲିଛି । ଶିକ୍ଷାର କଳ ଚାଲୁ ରଖିବା ପାଇଁ ପ୍ରତି ମାସରେ ହଜାର ହଜାର ଟଙ୍କାର ଚିଠିପତ୍ର ଯାଉଛି ଆସୁଛି । ନାନାପ୍ରକାର ନୂଆ ଯୋଜନାର ହରନାମ ନେଇ ହାକିମି-ମେସିନର ନୂଆ ନୂଆ ଖିଆଲ ବିଷୟରେ ଅନେକ ପ୍ରକାର ଗମ୍ଭୀର ବ୍ୟବସ୍ଥା ହେଉଛି । ଏହି ଶିକ୍ଷାର ପତ୍ର ଟିକେଟ ବାଣ୍ଟିବାଲାଗି ଆମ ଦେଶର ଅଫିସମାନଙ୍କରେ କେତେ ବାବୁ, କେତେ ସାହେବ, କେତେ ପରିଶ୍ରମ କରୁଛନ୍ତି । ତଥାପି ଆମେ ଶିକ୍ଷା-ବିକାଶରେ ସେହି ସାମନ୍ତବାଦୀ ସ୍ତରରେ ପଡ଼ି ରହିଛୁ । ଦେଶର ସବୁପିଲା ପାଠ ପଢ଼ିବେ । ଏହାକୁ ସବୁ-ଶିକ୍ଷା-ଯୋଜନାର ପ୍ରଥମ ସ୍ୱତଃସିଦ୍ଧ ବୋଲି ଧରି ଏପର୍ଯ୍ୟନ୍ତ କେବେ କୌଣସି ଗମ୍ଭୀର ଆଲୋଚନା ହୋଇନାହିଁ । ସଭା ସମିତିରେ ଆମେ ଉଚ୍ଚ ଶିକ୍ଷା ବା ଆଦର୍ଶ ଶିକ୍ଷାର ଡିଣ୍ଡିମ ବଜାଉଛୁ । ଅଥଚ ସୁନ୍ଦର ନିପୁଣ ଜୀବନଯାପନ ପାଇଁ ଯେତିକି ନିମ୍ନତମ ଶିକ୍ଷା ମଣିଷ ମାତ୍ରେ ସବୁରି ରହିବା ଅବଶ୍ୟ ଦରକାର ସେତିକି ଶିକ୍ଷାର ବ୍ୟବସ୍ଥା-ବୁଦ୍ଧି ଏପର୍ଯ୍ୟନ୍ତ ଫାଇଲ ଭିତରକୁ ଅସିନାହିଁ । ତଥାପି ଏହି ବ୍ୟବସ୍ଥାକୁ ଆମେ ଜାତୀୟ ବ୍ୟବସ୍ଥା ବୋଲି କହି ଆମ ଜାତୀୟତାର ପରିହାସ କରୁଛୁ । ମୁଷ୍ଟିମେୟ କେତେ ଜଣ ତଥାକଥିତ ଉଚ୍ଚ ଶିକ୍ଷା ପାଇ ବଡ଼ ହାକିମ ହୋଇ ଦିଲ୍ଲୀ ବା କଟକରେ ଆସି ବସିଲେ ଆମେ ଆମର ଜନ୍ମ ସଫଳ ହୋଇଗଲା ବୋଲି ଭାବିଛୁ । ଏ ଦେଶ ସାହିତ୍ୟ, ସଂସ୍କୃତି ଓ କବି-ପ୍ରଶସ୍ତି ବେଳେ ବେଳେ ଏହି ମୁଷ୍ଟିମେୟ କେତେ ଜଣ ଆମର ଗୋଚର-ଭୂମିକୁ ଭିଡ଼ିକରି ରଖିଛନ୍ତି । ଅଳ୍ପ କେତେ ଜଣଙ୍କୁ ସମସ୍ତ ବୋଲି ଭାବି ଆମେ ଏ ମୂର୍ଖ ଦେଶରେ ସିଆଣିଆ ହୋଇ ବସିଛୁ ।

ଯିଏ ଏ ଦେଶର ପିଲାଙ୍କୁ ଯଥାର୍ଥରେ ଶ୍ରଦ୍ଧା କରୁଛି, ସିଏ ଅତି ସାଧୁ ଭାବରେ ଏ ଦେଶର ସବୁ ପିଲାଙ୍କୁ ଆଗ ପାଠ ପଢ଼ାଇବାର ବିଚାର କରୁ । ସମସ୍ତ ସମୃଦ୍ଧି-ଯୋଜନାରେ ସେ ଏହାକୁହିଁ ଆପଣାର ଭୂମି କରି ଭାବୁ । କୋଡ଼ିଏ ବର୍ଷ ତଳେ ଗାନ୍ଧିଜୀ ଏହି ଭୂମି ଉପରେ ତାଙ୍କର ଶିକ୍ଷା ଯୋଜନାକୁ ଦେଶ ଆଗରେ ବାଢ଼ିଥିଲେ । ଦେଶରେ ଆଗ ସବୁପିଲା ପଢ଼ିବାର ଓ ସ୍ୱଚ୍ଛ-ଜୀବନଯାପନ କରିବାର ସୁଯୋଗ ଅବଶ୍ୟ ପାଇବେ—ଏହିପରି ଏକ ସାହସୀ ଘୋଷଣା 'ସେ ପ୍ରଥମେ ଦେଶ ଆଗରେ କରିଥିଲେ । ଗାନ୍ଧୀ ମରିବାର ସାତବର୍ଷ ପରେ ଆଜି ମଧ୍ୟ ଦେଶର ଉପଭୋଗଲୋଭୀ ସମାଜ ଏହି ଘୋଷଣାର ପୂର୍ଣ୍ଣ ମର୍ମ ବୁଝିବାକୁ ସମର୍ଥ ହୋଇ ନାହିଁ'। ଆପଣା ବିବେକର ସମର୍ଥନ ଦେଉଥିଲେ ମଧ୍ୟ ଏପର୍ଯ୍ୟନ୍ତ ସେ ଏହି ଘୋଷଣାକୁ ପୂର୍ଣ୍ଣ ମନ ଓ ପୂର୍ଣ୍ଣ ସାହସର ସ୍ୱୀକାର ଦେଇନାହିଁ । ଯେତିକି ଅବକାଶ ପାଉଛି, ସେତିକି ସେ ଏହି ଘୋଷଣାକୁ ଫାଙ୍କି ଦେଇ ଚାଲିଛି । ସେତିକି ସେ ଆପଣା ଆଭିଜାତ୍ୟର ଅସୁନ୍ଦରତାରେ ତାକୁ ବିକୃତ କରି ଚାଲିଛି । ତଥାପି ଏ ଦେଶର ପିଲାଙ୍କୁ ଯେ ଉଚିତ ଶ୍ରଦ୍ଧା ଦେଖାଯାଉଛି, ସେ କଥା କିପରି ଆମେ କହି ପାରିବା ? ଶିକ୍ଷାରେ ଏହି ଅଦ୍ଭୁତ ସ୍ପୃଶ୍ୟ-ଅସ୍ପୃଶ୍ୟ ବିଚାର ରହିଥିବାଯାଏ ଏ ଦେଶର ପିଲାର କଲ୍ୟାଣ ଲାଗି ସବୁ କରାଯାଉଛି ବୋଲି ଆମେ କିପରି ନିର୍ଲଜ୍ଜଭାବରେ ପ୍ରଚାର କରୁଥିବା ? କୌଣସି ପ୍ରକାର ଦୟା ଆମ ଜାତୀୟଶିକ୍ଷାର ଭୂମି ହୋଇ ପାରିବ ନାହିଁ । ଆମର ସାମାଜିକ ବିଚାର ଆମକୁ ବଦଳାଇବାକୁ ପଡ଼ିବ । ଆମର ଅଡ଼ମ୍ବରକୁ ମୂଳ କରି ଧରି ଚାଲୁଥିବା ଆଜିକା ଶିକ୍ଷାର ସାଆନ୍ତିଆ ସ୍ୱଭାବରେ ଅନେକ ତ୍ରୁଟି ଆସିବାକୁ ପଡ଼ିବ । ପ୍ରତ୍ୟେକ ପିଲାକୁ ମଣିଷ ହେବାର ଅଧିକାର ବହନ କରୁଥିବା ଏକ ସମ୍ଭାବନାପୁଞ୍ଜି ବୋଲି ସ୍ୱୀକାର କରିବାକୁ ପଡ଼ିବ । ତେବେ ଯାଇ ଏ ଦେଶର ଅବସ୍ଥାରେ ଶିକ୍ଷା ଓ ଶିକ୍ଷାର୍ଥୀ ପ୍ରତି ଯଥାର୍ଥ ନ୍ୟାୟ ବିଚାର ହୋଇ ପାରିବ ।

୧୮ । ୧୧ । ୫୫

ଆମର ପାଠପଢ଼ା ଖୁବ୍ ଜୋରରେ ଚାଲିଛି । ଆଗରୁ ଏହି ବିଷୟରେ ଆମର ଭାରି ଅବଶୋଷ ଥିଲା । ଆମେ କାମ କରୁଥିଲୁ । କିନ୍ତୁ ପ୍ରତ୍ୟେକ

କାମରେ ଗୋଟାଏ ପ୍ରକାର ଅସନ୍ତୋଷ ଆମେ ସବୁବେଳେ ଅନୁଭବ କରୁଥିଲୁ । ଆମ ମନ ସନ୍ତୁଷ୍ଟ ହୋଇପାରୁ ନ ଥିଲା । ଆମ ଭିତରେ ତରୁଣ ଶିକ୍ଷାବ୍ରତୀଙ୍କୁ ଆମେ ଯଥେଷ୍ଟ ଖାଦ୍ୟ ଯୋଗାଇ ପାରୁ ନ ଥିଲୁ । ବର୍ତ୍ତମାନ ସେ ଅବସ୍ଥା ଆଉ ନାହିଁ । ବର୍ତ୍ତମାନ ଆମର ନାନା ବିଷୟରେ ଘଣ୍ଟାକୁ ଘଣ୍ଟା ଗୁରୁଗମ୍ଭୀର ଆଲୋଚନା ହେଉଛି । ଇଂରାଜୀ ପଢ଼ା ହେଉଛି । ହାଇସ୍କୁଲ୍ର ପିଲାଙ୍କ ସହିତ ଆପଣାର ତୁଳନା କରି ଇଂରାଜୀ ପଢ଼ି ପାରିଲା ନାହିଁ ବୋଲି ଆଗରୁ କିଏ ବଡ଼ ଦୁଃଖିତ ହୋଇ ପଡ଼ୁଥିଲା । ବର୍ତ୍ତମାନ ସେ ଦୁଃଖ ଆଉ ନାହିଁ । ସମସ୍ତେ କହୁଛନ୍ତି ଏମିତି ଚାଲିଲେ ଭଲ । ମୁଁ ଭାବୁଛି, କେବଳ ଏମିତି ଚାଲିଲେ କ'ଣ ପ୍ରକୃତରେ ଭଲ ? ଆମେ ପାଠ ପଢ଼ୁଛୁ, ଭଲ, ମନ୍ଦ, ଦରକାରୀ, ଅଦରକାରୀ ବାଛି ଖାତାରେ ସଂଗ୍ରହ କରି ରଖୁଛୁ । ଅନ୍ୟାନ୍ୟ ପାଠଶାଳାରେ ବର୍ଷ ଶେଷରେ ପରୀକ୍ଷା ହୁଏ । ବରଷକଯାକ ଶିକ୍ଷକ ମୁହଁରୁ ଯାହା ଦିଆ-ଯାଇଥାଏ, ବର୍ଷ ଶେଷରେ ପିଲାଙ୍କଠାରୁ ତାହା ଫେରସ୍ତ ନେବାକୁ ଏ ପରୀକ୍ଷା ହୁଏ । ଏଠିତ ଆମର ସେପରି କୌଣସି ପରୀକ୍ଷା ହେବ ନାହିଁ । ଏଠି ଶିକ୍ଷାର୍ଥୀ ଓ ଶିକ୍ଷକ ଭିତରେ ଆଦାନ ପ୍ରଦାନରେ କୌଣସି ଅବିଶ୍ୱାସ ନାହିଁ । ହାଟ ବଜାରରେ କଣାବିକା କରିବାର କୌଣସି ଦମ୍ଭ ନାହିଁ । ସେଥିପାଇଁ କିଏ କେତେ ପାଠ ମନେ ରଖିଲା, କିଏ କେତେ ଉଦ୍‌ଗାରି ପାରିଲା ସେଥିରୁ ଶିକ୍ଷାର୍ଥୀଙ୍କୁ ପରୀକ୍ଷା କରିବାର ଦୁଷ୍ପ୍ରବୃତ୍ତି ଆମେ କରିବୁ ନାହିଁ । ଶିକ୍ଷକଙ୍କଠାରୁ ଟିପି ନେଇଥିବା ପାଠକୁ ପୁଣି ବିବାଦମତେ ଉଦ୍‌ଗାରି ଦେବାରେ ଅସଲ ପାଠପଢ଼ାର ପ୍ରମାଣ ମିଳେ ନାହିଁ । 'ମହାଭାରତରେ ଗୁରୁପାଦ ଶିକ୍ଷାର ବର୍ଣ୍ଣନା କରାଯାଇଛି । (ଉ: ୪୪ । ୧୬) ଶିକ୍ଷକର ମୁହଁରୁ ଶୁଣିବା ଓ ଶୁଣିବାର ଇଚ୍ଛା ରଖିଥିବା ହେଉଛି ଶିକ୍ଷାର ପ୍ରଥମ ପାଦ । ଆପଣା ଆପଣା ମଧ୍ୟରେ ଶାସ୍ତ୍ରୀୟ ଆଲୋଚନା-ଚର୍ଚ୍ଚା କରି ପଠିତ ବିଷୟରୁ ନୂତନ ତଥ୍ୟ ଓ ସତ୍ୟର ଆବିଷ୍କାର କରିବା ହେଉଛି ଦ୍ୱିତୀୟ ପାଦ । ନିଜର ଉତ୍ସାହ ହେଉଛି ଶିକ୍ଷାର ତୃତୀୟ ପାଦ ଏବଂ ବୁଦ୍ଧି ପରିଣତ ହେବା ସଙ୍ଗେ ସଙ୍ଗେ ପ୍ରାପ୍ତ ଶିକ୍ଷାକୁ ହଜମ କରି ଜୀବନର ବିଭିନ୍ନ ଅନୁଭୂତିରୁ ଯେଉଁ ଶିକ୍ଷା ମଣିଷ ଲାଭକରେ ତାହା ଶିକ୍ଷାର ଚତୁର୍ଥ ପାଦ । ଯେଉଁ ଶିକ୍ଷାର ଆୟତନ ଜୀବନର ସଂପୂର୍ଣ୍ଣ ପରିସରକୁ

ବସ୍ତୁତ ହୋଇ ରହୁଛି, ତା'ର ପରୀକ୍ଷା କାଲି, କଲମ ଆଉ କାଗଜରେ କରାଇ ନେବାର ଧୃଷ୍ଟତା କିଏ କରିବ ? ଶିକ୍ଷକର କାମ ହୁଏତ ଏପରି ଖଣ୍ଡିଆ ପରୀକ୍ଷା ଦ୍ୱାରା ସହଜ ହୋଇଯିବ । କାଗଜ କଲମର ହିସାବରୁ ହୁଏତ ସେ କେତେବେଳେ ବୁଦ୍ଧି ଖରଚ କରି ବା କେତେବେଳେ ଆପଣାର ଶୁଦ୍ଧ ଖିଆଲ ଅନୁସାରେ ପିଲାକୁ ପାସ ବା ଫେଲ୍ କରିଦେବେ । କିନ୍ତୁ ଏହାଦ୍ୱାରା ପିଲାର ଯଥାର୍ଥ ପାଠ-ପରୀକ୍ଷା କଦାପି ହୋଇ ପାରିବନାହିଁ । ଖ୍ରୀଷ୍ଟିଆନ ଧର୍ମଚିନ୍ତାରେ ଗୋଟାଏ ବିଚାର-ଦିନର କଳ୍ପନା ରହିଛି । ସଂସାରରେ ଯିଏ ପାପ କମାଉଛି କି ପୁଣ୍ୟ କମାଉଛି, ସେହି ଅନୁସାରେ ଦିନେ ଭଗବାନ ସବୁ ମଣିଷର ବିଚାର କରିବେ ଓ ସେହି ବିଚାର ଅନୁସାରେ ପ୍ରତ୍ୟେକ ମଣିଷକୁ ନରକ ବା ସ୍ୱର୍ଗକୁ ଯିବାକୁ ପଡ଼ିବ । ଠିକ୍ ସେହିପରି ପାଠଜଗତର ଅପ-ଦେବତାମାନେ ଗୋଟାଏ ଲିଖିତ ପରୀକ୍ଷା କରାଇ ପିଲାକୁ ଏପାରି ନଚେତ୍ ସେପାରି କରିଦେବାର ବିଚାର-ଦିବସ ଠିକ୍ କରିଛନ୍ତି । କିନ୍ତୁ ପାଠର ପ୍ରକୃତ ବିଚାର ତ ପାଠ ପଢ଼ି ସାରିବା ପରେ ହେବା ଉଚିତ । ପାଠୁଆ ମନ, ପାଠୁଆ ଚରିତ୍ର ଓ ସ୍ୱଭାବ,—ଏହାହିଁ ପାଠପଢ଼ାର ଅସଲ ମାନଦଣ୍ଡ ହେବା ଉଚିତ । ଇତିହାସ, ଭୂଗୋଳ, ଗଣିତ କି ଦର୍ଶନ ଅମେ ଯାହା ପଢ଼ିବା ପଛକେ 'କିଏ କେତେ ନିପୁଣଭାବରେ ସେସବୁ ମନେରଖି ପାରିଲା ସେଇଥିରୁ ତାହାର ପରୀକ୍ଷା ହେବନାହିଁ । ପ୍ରାପ୍ତପାଠକୁ ହଜମ କରି କିଏ ଜୀବନର ନିତ୍ୟ ସାମଗ୍ରୀ କରି ପାରିଲ, ପାଠର ନିଷ୍ଠାକୁ କିଏ ଜୀବନ-ନିଷ୍ଠାକୁ ରୂପାନ୍ତରିତ କରି ପାରିଲା, ଅସଲ ପରୀକ୍ଷା ଆମର ସେତିକିବେଳେ ହେବ । ହୁଏତ କୌଣସି ସହରରୁ ସେଦିନ ଆମପାଇଁ ସ୍ୱତନ୍ତ୍ର ପରୀକ୍ଷକ ବରାଦ ହୋଇ ଆସିବେ ନାହିଁ । ଅମ ଅପଣା ପାଖରେ ଅମେ ଦିନେ ନା ଦିନେ ଏହି ପରୀକ୍ଷା ଦେବା । ଜୀବନର ରାଜଦଣ୍ଡରେ ଆପଣା ପାଖରେ ପାଶ୍ କରିପାରିଲେ ଆମର ପାଠ ଆମର ଭୂଷଣ ହୋଇ ରହିବ, ଆମର ବୋଝ ବଢ଼ାଇବ, ଆମକୁ ପ୍ରତ୍ୟେକ କ୍ଷେତ୍ରରେ ପ୍ରତ୍ୟେକ ଅନୁଭୂତିରୁ ସରସ ହୋଇ ପାରିବାର ସମ୍ପଦ ଦେଇ ଯାଉଥିବ । କିନ୍ତୁ ଫେଲ ହେଲେ ଆମେ ଆପଣା ପାଖରେ 'ଚୋର ହୋଇଯିବା, ଅମର ପରୀକ୍ଷକ-ମନ ଅମକୁ ଖାଇ ଗୋଡ଼େଇବ । ଅମ ପାଖରେ ନିତ୍ୟ-

ସଂକୋଚ ଓ ନିତ୍ୟ ଅସନ୍ତୋଷର ସୃଷ୍ଟି ନେଇ ଦେଉଥିବ । ବାହାରେ ଦୁନିଆ ଆଖିରେ ଯେତେ ସଫଳ ହୋଇ ପାରିଲେ ମଧ୍ୟ ଆମ ଆପଣା ପାଖରେ ଆମେ ଅତି ଦୀନହୀନ ଓ ଅଜ୍ଞ ଅଶିକ୍ଷିତ ହୋଇ ପଡ଼ି ରହିବା ।

ଆମ ଦୁର୍ଭାଗ୍ୟ, ପୃଥିବୀରେ ଆଜି ଜୀବନକୁ ମାରିଦେଇ ଜୀବନର ଆଡ଼ମ୍ବରହିଁ ଅଧିକ ପ୍ରତିପତ୍ତି ବିସ୍ତାର କରିଛି । ଧନ ଓ ସମ୍ମାନର ଆଡ଼ମ୍ବର ପରି ଶିକ୍ଷାରେ ମଧ୍ୟ ଏଇ ଆଡ଼ମ୍ବରର ପୂଜା ହେଉଛି । ଶିକ୍ଷା ଆମକୁ ନମ୍ର ଓ ଚରିତ୍ରବାନ ହେବାଲାଗି ଯେତେ ପ୍ରେରଣା ନ ଦେଉଛି, ଆମକୁ ନାନା ଆଡ଼ମ୍ବରପ୍ରିୟତାର ଈର୍ଷା ଓ ଘୃଣାରେ ଭରାଇ ଦେଇ ଆମକୁ ପ୍ରତିଯୋଗିତା ଓ ପ୍ରଶଂସାର ବଜାରରେ ଶନ ଲକ୍ଷ୍ମୀ କରି ବସାଇ ଦେଉଛି । ପ୍ରଧାନତଃ ଦେଖାଇବା ଲାଗି ଆମେ ପାଠପଢ଼ୁଛୁ । ଏ ଭାଷାହୀନ ମଣିଷ-ସମାଜର ଦେଶରେ ଦି'ପଦ ବିଦେଶୀ ଭାଷା କହି ଦି'ଘଣ୍ଟା ବିନୋଦନରେ କଟାଇ ପାରିବାର ଆଳସ୍ୟ ଶିଖିବାଲାଗି ଆମେ ପାଠପଢ଼ାର ଆଡ଼ମ୍ବର କରୁଛୁ । ଆମେ ପାଠ ପଢ଼ୁଛୁ । ପାଠପଢ଼ୁଆର ପୋଷାକପତ୍ର ଓ ଚାଲିଚଳନକୁ ଅତି ପ୍ରଲୁବ୍ଧ ଭାବରେ ଆୟତ୍ତ କରୁଛୁ । ଆମେ ସୂତାକାଟୁଛୁ, ପ୍ରାର୍ଥନା କରୁଛୁ, ଦୈନିକ କାର୍ଯ୍ୟ-କ୍ରମକୁ ପୂର୍ଣ୍ଣ କରିବାକୁ କାମ କରୁଛୁ, ଡାଏରୀ ଲେଖୁଛୁ । ତଥାପି ଯେପରି ଏସବୁ ଗୋଟାଏ ଆଡ଼ମ୍ବର ପରି ଚାଲିଛି । ଏଥିରେ ନମ୍ର ହେବାର କୌଣସି ଶ୍ରଦ୍ଧା ନାହିଁ । ଚରିତ୍ର ନିର୍ମାଣର କୌଣସି ସାଧନା ବା ସରଳତା ନାହିଁ; ଶିକ୍ଷାର ଉପାର୍ଜନକୁ ସଯତ୍ନ ସାଇତି ରଖି ଦୈନନ୍ଦିନ ଜୀବନର ନାନା ଅବସରରେ ସେସବୁକୁ ଫୁଟାଇ ପାରିବାର କୌଣସି ଉଦ୍ୟମ ନାହିଁ । ସେଥିଲାଗି ଆମର ପାଠପଢ଼ା, ଆମର ସାମାଜିକ ଜୀବନ, ଆମର କର୍ମ ଓ ପ୍ରାର୍ଥନା, ଯାହାସବୁ ଆମର ଜୀବନକୁ ବିଲକୁଲ ବଦଳାଇ ଦେଇପାରନ୍ତା ଆମର ଦୃଷ୍ଟିରେ ନୂଆ ସୃଜନଶକ୍ତି ଭରିଦେଇ ପାରନ୍ତା, ସେ ସମସ୍ତ ଆମକୁ କେବଳ ଗୋଟାଏ ଗୋଟାଏ କାର୍ଯ୍ୟକ୍ରମ ପରି ଲାଗୁଛି । ଏଥିରୁ ଆମେ କୌଣସି ମାଧୁରୀ ପାଉନାହୁଁ । ଓଲଟି ଆମ ଭିତରେ ରହିଥିବା କୋମଳ ଶିକ୍ଷାବୃତ୍ତି ମନକୁ ଆମେ ବଡ଼ ସଙ୍କୁଚିତ କରି ଦେଉଛୁ ।

୨୧ । ୧୧ । ୫୫

'ଅଶୁଶ୍ରୂଷା ତ୍ୱରା ଶ୍ଳାଘା ବିଦ୍ୟାୟାଃ ଶତ୍ରବସ୍ତ୍ରୟଃ'—ମହାଭାରତରେ (ଉ: ୪୦।୪) ମହାତ୍ମା ବିଦୁର ବିଦ୍ୟାଲାଭର ଏହି ତିନୋଟି ଶତ୍ରୁର ନିରୂପଣ କରିଛନ୍ତି । ପ୍ରଥମଟି ହେଉଛି ଅଶୁଶ୍ରୂଷା—ଅର୍ଥାତ୍ ଗୁରୁଙ୍କ ମୁଖରୁ ପଠିତ ବିଷୟ ଶୁଣିବାର ଅନିଚ୍ଛା । ଶିକ୍ଷଣୀୟ ବିଷୟକୁ ଅତି ଅଳ୍ପସମୟ ଭିତରେ ଆୟତ୍ତ କରିବାର ବ୍ୟସ୍ତତା ହେଉଛି ଦ୍ୱିତୀୟ ଶତ୍ରୁ । ମୁଁ ଶିକ୍ଷିତ ହୋଇଗଲି ଅର୍ଥାତ୍ ଆଉ ମୋର ଶିକ୍ଷା କରିବାର କିଛି ନାହିଁ—ଏପରି ଅହଙ୍କାର ମନରେ ପୋଷଣ କରିବା—ଏଇଟି ବିଦ୍ୟାର ତୃତୀୟ ଶତ୍ରୁ । ଶିକ୍ଷାର୍ଥୀ ଜୀବନରେ ଏହି ତିନୋଟିଯାକ ଶତ୍ରୁଙ୍କ ସହିତ ଆମର ଅଳ୍ପବିସ୍ତୁତ ପରିଚୟ ଅଛି । ଆମ ସମାଜ ଅନେକ ସମୟରେ ଆମ ଶିକ୍ଷାରୁ ଏପରି ଅନେକ ଅସ୍ୱାଭାବିକ ଦାବୀମାନ କରୁଛି ଯେ ହୁଏତ ବାଧ୍ୟହୋଇ ଆମେ ଏହିସବୁ ଶତ୍ରୁଙ୍କୁ ଶତ୍ରୁ ଜାଣିଶୁଣି ସେହିମାନଙ୍କର କବଳ ଭିତରେ ରହୁଛୁ । ଆଜିକାଲି ଘରେ ପିଲାଙ୍କର ଟିଉସନ ମାଷ୍ଟର ରହୁଛନ୍ତି । ଦୁଇପକ୍ଷ ଏହାଦ୍ୱାରା ଉପକୃତ ହେଉଛନ୍ତି । ଉପୁରି ସମୟରେ ମାଷ୍ଟର ଦି'ପଇସା ରୋଜଗାର କରି ପାରୁଛନ୍ତି । ଏଣେ ଉତ୍ସାହୀ ବାପ-ମାଆ ପିଲାର ଅଧିକ ପାଠ ହେବବୋଲି ଅଧିକ ମାଷ୍ଟର ରଖୁଛନ୍ତି । ଯାହାପାଇଁ ଯେତେଜଣ ମାଷ୍ଟର ଖଟିବେ ତା'ର ସେତିକି ବେଶି ପାଠ ହୋଇ ପାରିବ । ଏପରି ଏକ ଭ୍ରମ ଆମ ସମାଜରେ ଅନେକଙ୍କର ରହିଛି । ଆମ ପିଲା ଦିନରାତିର ଯେତେ ଅଧିକ ସମୟ ପାଠପଢ଼ାରେ ଦେଇ-ପାରିବ ବିଦ୍ୟାରେ ସେ ସେତେ ନିପୁଣତା ଲାଭ କରିପାରିବ—ଏପରି ବିଶ୍ୱାସ ମଧ୍ୟ ଅନେକେ କରୁଛନ୍ତି । ତେଣୁ ଶିକ୍ଷାକୁ ଗଉଣୀରେ ମାପିବାର ବା ନିକିତିରେ ଓଜନ କରିବାର ଗୋଟାଏ ସାମଗ୍ରୀ ବୋଲି ସମସ୍ତେ ଭାବିଲେଣି । ଯିଏ ଶିଖିବ ସିଏ କିପରି ଶିଖିବ, କିପରି ମନ ବା ଦୃଷ୍ଟି ନେଇ ଶିକ୍ଷାର୍ଥୀ ଶିକ୍ଷକ ପାଖକୁ ଯିବ, ଏସବୁର ଚର୍ଚ୍ଚା ଆଜିକାଲି ହେଉନାହିଁ । ଯାହା ପଢ଼ିଲି ସେତକ ପରୀକ୍ଷାଘରେ କାଗଜ କଲମ ସାହାଯ୍ୟରେ ନିବେଦିତ କରିଦେଇ ପାରିଲେ ମୋର ଦାୟିତ୍ୱ ସରିଗଲା ବୋଲି ମୁଁ ଭାବୁଛି । ସେଠି ଶିକ୍ଷାର ଜୀବନ ସହିତ, କୌଣସି ପ୍ରକାର ଶୃଙ୍ଖଳା ସହିତ

କୌଣସି ସମ୍ପର୍କ ଅଛି ବୋଲି କେହି ଭାବୁନାହାନ୍ତି । ତେଣୁ ଆଗେ ଯେଉଁ ଗମ୍ଭୀର ଜିଜ୍ଞାସା ଓ ଶ୍ରଦ୍ଧା ନେଇ ଛାତ୍ର ଗୁରୁ ପାଖକୁ ବିଦ୍ୟା ଶୁଣିବାକୁ ଯାଉଥିଲା, ସେ କଥା ଆଜି ହୋଇପାରୁନାହିଁ । ତାପରେ ବିଷୟ-ଗୁଡ଼ିକ ଯେ କୌଣସି ପ୍ରକାରେ ଅଳ୍ପ ସମୟରେ ଆୟତ୍ତ କରିନେବା ଲାଗି ବ୍ୟସ୍ତତା । ଆଗେ ଋଷି-ଆଶ୍ରମରେ ଶିକ୍ଷାବ୍ରତୀମାନେ ଶାସ୍ତ୍ର ମୁଖସ୍ଥ କରି ରଖୁଥିଲେ । କିନ୍ତୁ ଏହା ପଛରେ ସାଧନା ଥିଲା । ସତ୍‌ଶାସ୍ତ୍ରକୁ ଆପଣାର କରିବାର ଆନନ୍ଦ ଥିଲା । ସତ୍‌ବାକ୍ୟ ଦ୍ୱାରା ସମସ୍ତଙ୍କୁ ଶୁଦ୍ଧତର କରିବାର ନିଷ୍ଠାପର ଉଦ୍ୟମ ଥିଲା । ବର୍ତ୍ତମାନର ମୁଖସ୍ଥ କରିବା ପଛରେ ନା ଅଛି ସାଧନା, ନା ଅଛି ଉଦ୍ୟମ, ନା ଅଛି ଆନନ୍ଦ ? ଯେତେ କମ୍ ସାଧନାରେ ଯିଏ ପାଠକୁ ସାଧିକରି ପାରିଲା, ସେଇ ଜିତିଲା; ସେଇ ସୁନାପୁଅ ହେଲା । ବର୍ତ୍ତମାନର ପାଠ ବ୍ୟବସ୍ଥା ଆମକୁ ଅଳସୁଆ ହେବାକୁ ଶିଖାଉଛି । ଦୁଇ ଦିନରେ ମାଟ୍ରିକ ପାସ କରିବାର ବା ଦୁଇ ମାସରେ ଇଂରାଜୀ ଶିଖାଇବାର ଲୋଭନୀୟ ବିଜ୍ଞାପନ ବାହାରି ପିଲାଙ୍କୁ ଆହୁରି ସାଧନା-ବିମୁଖ କରି ପକାଉଛି । ପାଠପଢ଼ିବା ଯେପରି ଗୋଟାଏ ବ୍ୟାଧି ବା ବିଦ୍ୟାଲାଭ ଗୋଟାଏ ଯେପରି ବାଧ୍ୟତାମୂଳକ ଦଣ୍ଡଭୋଗ ! ଦୁଇଦିନ ବା ଦୁଇମାସ ଔଷଧ ଖାଇ ଆମେ ଯେପରି ସେହି ବ୍ୟାଧି ବା ଦଣ୍ଡଭୋଗରୁ ମୁକ୍ତ ହୋଇ ପାରିବା ! ବିଦ୍ୟାଲାଭକୁ ଏହିପରି ଭାବରେ ଶସ୍ତା କରି ଆମ ସମାଜରେ ସମସ୍ତେ ଶସ୍ତା ପାଠୁଆ ମଧ୍ୟ ହୋଇ ପାରୁଛନ୍ତି । ଯଥେଷ୍ଟ ପାଠ ହୋଇ ଗଲାଣି ବୋଲି ଗୋଟାଏ ପ୍ରକାର ଆଳସ୍ୟ ଆମ ଭିତରକୁ କାମୁଡ଼ି ଧରିଛି । ଯିଏ ସ୍କୁଲ୍ ପାର ହୋଇଗଲା, ସିଏ ପାଠୁଆ ହୋଇଗଲା । ଏଣିକି ସେ ଖାଲି ଶିଖାଇବ, ଶିଖିବ ନାହିଁ । ହାକିମୀ ଦେଖାଇବ, ନିଜେ କୌଣସି ପ୍ରକାରର ମାନ୍ୟତା ରଖିବ ନାହିଁ । ଅନ୍ୟମାନଙ୍କୁ ଶୃଙ୍ଖଳିତ କରାଇବ, ଆପେ କୌଣସି ପ୍ରକାର ଶୃଙ୍ଖଳାର ଅଧୀନରେ ରହିବ ନାହିଁ । କୌଣସି ପ୍ରକାରର ଆତ୍ମଶୃଙ୍ଖଳା ମଧ୍ୟ ତା'ର ରହିବ ନାହିଁ । ଏହିପରି ଗୋଟାଏ ଦୁଷ୍ଟତା ବର୍ତ୍ତମାନ ଆମର ସାମାଜିକ ଓ ବ୍ୟକ୍ତିଗତ ଜୀବନକୁ ଘୋଟି ରହିଛି !! ଯିଏ ଯଥାର୍ଥରେ ଶିକ୍ଷିତ, ତାର ଶିକ୍ଷାର୍ଥୀ-ଦୃଷ୍ଟି, ତାର ସମସ୍ତ ଜୀବନ ବ୍ୟାପୀ ରହିବ । ସେ ପ୍ରତ୍ୟେକ କ୍ଷେତ୍ରରୁ ନମ୍ର ଭାବରେ ଗ୍ରହଣ କରିବ,

ନମ୍ର ହୋଇ ପ୍ରତ୍ୟେକ କ୍ଷେତ୍ରରେ ଦେବ । ଏସବୁ ଶିକ୍ଷା ନ୍ୟାୟକୁ ଆମେ ଆଜି ସ୍ୱୀକାର ମଧ୍ୟ କରୁନାହୁଁ । ସେଥିପାଇଁ ଶିକ୍ଷିତ ବ୍ୟବସ୍ଥା ଓ ଶିକ୍ଷିତ ଶାସନର ଜୁଲୁମ ଯେତେ ବଢ଼ି ଯାଉଥିଲେ ମଧ୍ୟ ଶିକ୍ଷିତ ଜୀବନର ଅନେକ ଦୂରରେ ଆମେ ରହିଛୁ ।

ଆମର ଶ୍ରେଷ୍ଠ ସଂସାରଟିରେ ଆମେ ବିଦ୍ୟାଳୟର ଏହି ଡିନୋଟି ଶତ୍ରୁଙ୍କୁ ଚିହ୍ନି ରଖିବା । ଶୁଣିବାର ଆଗ୍ରହ ଆମର ପ୍ରତ୍ୟେକ ଦିନ ବଢ଼ୁଥିବ । ସେଥିଲାଗି ଆମେ ଆମର ଜ୍ଞାନେନ୍ଦ୍ରିୟକୁ ଅଧିକ ପ୍ରସ୍ତୁତ କରି ରଖିବା । କୌଣସି ପ୍ରକାର ବିଦ୍ୟାକୁ ଅଳ୍ପ ସାଧନାରେ ଅର୍ଜନ କରିବାର ଦମ୍ଭ ଆମେ କରିବା ନାହିଁ । ଆମ ଖାତା ଉପରେ ଶିକ୍ଷକଙ୍କର ପ୍ରତ୍ୟେକଟି କଥା ଟିପି ରଖିବା ବା ଆମ ବହିରୁ କମା ବା ପୂର୍ଣ୍ଣଚ୍ଛେଦ ସମେତ ଯାବତୀୟ ବିଷୟକୁ କଣ୍ଠସ୍ଥ କରି ରଖିବାକୁ ଶିକ୍ଷାର୍ଥୀ-ଜୀବନ ଓ ଶିକ୍ଷାର୍ଥୀ-ମନର ସୂଚନା ବୋଲି କହିବାର ଧୃଷ୍ଟତା ଆମର ଯେପରି କୌଣସି ଦିନ ନ ହୁଏ । ଜୀବନରେ ସାଧନାର ଶେଷ ନାହିଁ । ଆମରି ଶିକ୍ଷାଳୟ ଏହି ଅଶେଷ ସାଧନାର ଗୋଟିଏ ଅଙ୍ଗ ମାତ୍ର । ଯିଏ ଯଥାର୍ଥରେ ଶିକ୍ଷାର୍ଥୀ ହେବ ତା'ର ଉତ୍ସାହ, ତାର ଆଗ୍ରହ ଓ ତାର ଶୃଙ୍ଖଳାକୁ ସେ ଜୀବନସାରା ସମ୍ମାନ ଦେଇ ଆସିବ । ଜୀବନସାରା ସେ ତରୁଣ ହୋଇ ରହିବ । ତାର ଶିକ୍ଷାଳୟର ପରିଧି ଦିନୁଦିନ ବଢ଼ିବ । ତାର ଆକାଙ୍କ୍ଷା ଦିନୁଦିନ ଅଧିକ ମହାନ୍ ହୋଇ ଚାଲିବ । ପୂର୍ବକାଳରେ ଜୀବନଯାକ ଯୁବକ ହୋଇ ରହିବାକୁ ଗୋଟାଏ ପ୍ରକାର ଔଷଧ ଲୋକେ ଖାଉଥିଲେ । ଆମର ଶିକ୍ଷାର୍ଥୀ ମନହିଁ ଆଜି ଆମକୁ ବାର୍ଦ୍ଧକ୍ୟର ଦୁର୍ଦ୍ଦଶାରୁ ରକ୍ଷା କରିବ । ଆମକୁ ଚିର ତାରୁଣ୍ୟର ସରସ ବାଟରେ ଆଗକୁ ନେଇଯିବ ।

ବୌଦ୍ଧଶାସ୍ତ୍ର ଅଙ୍ଗୁତ୍ତର ନିକାୟରେ (୧।୫୦) ବୁଦ୍ଧଦେବଙ୍କର ଗୋଟିଏ ବାଣୀର ଉଲ୍ଲେଖ ରହିଛି । ଥରେ ସେ ଭିକ୍ଷୁମାନଙ୍କୁ କହିଥିଲେ, ଦୁଇଟି ଜିନିଷ ମୁଁ ଜୀବନରେ ଅନୁଭବ କରିଛି । ଜୀବନର କୌଣସି ସୁଖାବସ୍ଥାରେ ଆମେ ସନ୍ତୁଷ୍ଟ ସ୍ଥାଣୁହୋଇ ରହିଯିବା ନାହିଁ ଏବଂ ସାଧନାର ମାର୍ଗରେ କେବେହେଲେ ଆମେ ଅଟକି ଯିବାନାହିଁ । ଅଟକି ଯିବାହିଁ ଅଧର୍ମ, ଅଟକି

ଯିବାହିଁ ମୃତ୍ୟୁ । ଯାହାକୁ ଆଳସ୍ୟ ଘାରିଦେଉଛି, ସେହି କେବଳ ଅଟକି ଯାଇ ସୁଖରେ ଭ୍ରମ କରି ବସିଛି । ତାର ସକଳ ସାଧନା ସେଇଠି ନିଷ୍ଫଳ ହୋଇଯାଉଛି । ଆମେ ଆମର ଜିଜ୍ଞାସାରେ କୌଣସିଠାରେ ଅଟକି ଯିବାନାହିଁ, ଅମେ ସାଧନାର ଶୃଙ୍ଖଳାକୁ ତଡ଼ିବାନାହିଁ । ଅମେ ଅଧା ବାଟରେ ସବୁ ଶିକ୍ଷା ସରି ଯିବାର ଅଭିମାନ କରିବା ନାହିଁ । ତେବେ ଯାଇ ଆମର ଶିକ୍ଷା ଆମକୁ ଶୁଦ୍ଧ, ସ୍ୱଚ୍ଛ ଓ ଜୀବନ୍ତ କରି ରଖିପାରିବ ।

୬ । ୧୨ । ୭୬

ସଂସାରରେ ଆମେ ଆଜି ସମସ୍ତେ ଅପରର ବିଚାର କରି ବାହାରିଚୁ । ଅନ୍ୟର ଦୋଷ ବା ଦୁର୍ବଳତାକୁ ଡାଳପରି ଦେଖାଇ ଆପଣାର ଦୁଷ୍ଟାମିକୁ ଆମେ ବେଶ୍ ଘଷିମାଜି ରଖିଚୁ । ଆପଣା ଲଜ୍ଜରେ ଆପେ ଆଗେ ନଇଁ ପଡ଼ିବା ପୂର୍ବରୁ ଆମେ ଆଗ ଆଉ ପାଞ୍ଚ ଜଣଙ୍କୁ ଲଜ ଦେବାର ବାହାଦୁରୀ ଦେଖାଇବାରେ ଭାରି ଆନନ୍ଦ ପାଉଛୁ । ଆମର ଅନ୍ତର୍ଦୃଷ୍ଟି ଆଉ କାମ କରୁ ନାହିଁ । ରାବଣର କୋଡ଼ିଏଟା ଆଖି ବାହାର କରି ଆମେ ସମସ୍ତେ ଏକ ଅଦ୍ଭୁତ ନୈତିକ ନ୍ୟାୟର ଲଙ୍ଗୁଳ ଧରି ସଂସାରରେ ଚୋରଧରି ବାହାରିଛୁ । ଭାବୁଛୁ ଏଇ ଚୋର ଧରି ବାହାରିବାର ମାତଲାମିରେ ଆମରି ଆପଣା ଭିତରର ଚୋରକୁ ଆମେ ଘୋଡ଼ାଇ ରଖି ପାରିବା । କୋଡ଼ିଏଟା ଆଖି ଥିଲେ ମଧ୍ୟ ରାବଣ ଆପଣାର ଭିତରକୁ ଅନାଇ ଦେଖିବାର ଶକ୍ତି ଅର୍ଜନ କରି ନ ଥିଲା । ଲଙ୍କାଗଡ଼ର ମଣିମୁକ୍ତା ଭିତରେ ରହି ଓ ରାଜତ୍ୱ କରି ମଧ୍ୟ, ତାର ଅନ୍ତର ଭିତରେ ଦୁର୍ନଆଯାକର ଭୟ ଭିଡ଼ିକରି ରହିଥିଲା । କୋଡ଼ିଏଟା ହାତରେ କୋଡ଼ିଏ ପ୍ରକାର ଅସ୍ତ୍ର ଧରି ମଧ୍ୟ ସେ ଅତି ଦୁର୍ବଳ ଓ ଭୟାର୍ତ୍ତ ଭାବରେ ଦିନ କଟାଉ-ଥିଲା । ରାବଣ ପରି ଆମେ ହୁଏତ ଆଜି ଏଡ଼େ ଏଡ଼େ ଆଖିରେ ସଂସାରଯାକର ଚୋରକୁ ଧରାଇ ଦେବାରେ ବାହାରିଛେ । ଯିଏ ଶ୍ରଦ୍ଧା ଓ ସ୍ନେହର ସନ୍ଧାନ କରେ, ସିଏ ଶ୍ରଦ୍ଧା ଓ ସ୍ନେହ ପାଏ । ଆମେ ଆଉ ଶ୍ରଦ୍ଧା ବା ସ୍ନେହକୁ ବିଶ୍ୱାସ କରୁ ନାହୁଁ । ସଂସାରଟାଯାକ ମଣିଷଙ୍କ ଭିତରେ କଣ ସବୁ ଦୋଷ ଅଛି

ବା ଦୁଃସ୍ୱଭାବ ଅଛି ସବୁଗୁଡ଼ାକର ଅନ୍ୱେଷଣ କରି ଆମର ଅମଙ୍ଗଳଯାତ୍ରା ଚାଲିଛି । ସାରା ସଂସାରକୁ ଦୋଷୀ ବୋଲି ଦେଖାଇ ଗୋଟାଏ ବିଜୟ ଦମ୍ଭରେ ଯେତେବେଳେ ଆମେ ଆପଣା ଅନ୍ତରର ମିତ୍ରକୁ ବାହୁଡ଼ି ଆସୁଛୁ, ସେତେବେଳେ ଆପଣା ଭିତରର ବିବେକ ଆମକୁହିଁ ଚୋର କରି ଦେଉଛି । ଆଖିବୁଜି ଯୋଉ ମଣିଷ ସଂସାର ନାହିଁ ବୋଲି କହିବ, ତାକୁ ଆମେ ସମସ୍ତେ ନିର୍ବୋଧ ବୋଲି କହିବା । ଆମେ ଯଦି ସେମିତି ଆଖିବୁଜି ଦେଇଥିବା, ଶେଷରେ ଆପେ ଆପଣାକୁ ହିଁ ଠକିବା । ସାରା ସଂସାରକୁ ଦୁଷ୍ଟ ବୋଲି କହି ଆପଣାକୁ ସାନ୍ତ୍ୱନା ଦେବାକୁ ଆସିଲାବେଳେ ଆମ ଭିତରର ଦୁଷ୍ଟାମି ଆମକୁ ହିଁ ମନେ ମନେ ଚୋର କରିଦେବ । ସାରା ସଂସାରକୁ ଠକିବାକୁ ଯାଇ ଆମେ ଆପଣାପ୍ରତି ହିଁ ସବୁଠାରୁ ବଡ଼ ଅନ୍ୟାୟ କରିବା ।

ଶିକ୍ଷାର୍ଥୀ ହିସାବରେ ଆମକୁ ଏହି ଦୁଷ୍ଟବୁଦ୍ଧି ବିଷୟରେ ଖୁବ ସାବଧାନ ରହିବାକୁ ପଡ଼ିବ । ବିଦ୍ୟା କହିଲେ ଏ ଅଜବ ଦେଶରେ ଆମେ ଅନେକ ସମୟରେ ଅଜବ ଅର୍ଥ କରିବସୁ । ଅନେକେ ବିଦ୍ୟାକୁ ଗୋଟାଏ ଠକାମିର ସାଧନ ବୋଲି ଭାବନ୍ତି । ଯିଏ ଅପରକୁ ଯେତେ ଠକାଇ ପାରିଲା ସେ ସଂସାର ଆଖିରେ ସେତେ ବିଦ୍ୱାନ୍ ହେଲା । ଆହୁରି ଅନେକେ ବିଦ୍ୟାକୁ ଅର୍ଥଉପାର୍ଜନର ବାହନ ବୋଲି ଭାବନ୍ତି । ତୁମ ପାଖରେ ବିଦ୍ୟା ଅଛି । ଅର୍ଥାତ୍ ତୁମ ପାଖରେ ଅଧିକ ଅର୍ଥ ଉପାର୍ଜନ କରିବାର ପାସପୋର୍ଟ ରହିଛି । ଯଦି ତୁମେ କୌଣସି କାରଣରୁ ସେତିକି ଅର୍ଥ ଉପାର୍ଜନ କରି ନ ପାରିଲ ତେବେ ତୁମ ପାଖରେ ବିଦ୍ୟା ଅଛି ବୋଲି କେହି କହିବେ ନାହିଁ । ଏପରି ରୀତି ଆମ ଦେଶରେ ଚାଲିଛି । ବିଦ୍ୟା କହିଲେ ଯଦି ଏହିପରି ଠକିବା ବା ଅର୍ଥ ଉପାର୍ଜନ କରିବା ଦୃଷ୍ଟିରୁ ଏଠି କେହି ବିଚାର କରୁଥାନ୍ତି, ତେବେ ମୁଁ କହିବି ସେ ଭାରି ଭୁଲ ବୁଝିଛନ୍ତି । ସଂସାରର ଗଡ଼କୁ ଜିତି ବାବୁ ହୋଇ ତାରିଫ୍ ପାଇବାର ବିଦ୍ୟା ଦେବାକୁ ଏଠାରେ, ଏ ଜଙ୍ଗଲରେ ଏ କଲ୍ୟାଣ-ମଣ୍ଡପ ତିଆରି ହୋଇ ନାହିଁ । କିଣାବିକା ବଜାରରେ ଜିତାପଟ ପାଇବାର ଶିକ୍ଷା ଦେବାକୁ ସଂସାରରେ ଅନ୍ୟାନ୍ୟ ଅନେକ ଜାଗାରେ ବଡ଼ ବଡ଼ ପାଠଶାଳା ରହିଛି । ଆମର ପାଠଶାଳାର ଧର୍ମ ସେସବୁ ପାଠଶାଳାର

ଧର୍ମଠାରୁ ଅନେକ ତଫାତ୍ । ଏଠି ବିଦ୍ୟାର ଆଉ ଏକ ଅର୍ଥକୁ ମୂଳଦୁଆ କରି ବିଦ୍ୟାଳୟର ଥାପନା ହୋଇଛି । ବିଦ୍ୟା ମୁକ୍ତି ଲାଗି, ବିମୁକ୍ତି ଲାଗି । ସବୁ ପ୍ରକାର ଅବିଦ୍ୟା ଆଉ ଅଜ୍ଞାନରୁ ଯିଏ ମୁକ୍ତି ଦିଏ, ତାହାହିଁ ବିଦ୍ୟା । ଏହିପରି ଅର୍ଥରେ ହିଁ ଆମେ ବିଦ୍ୟାକୁ ବୁଝିବାକୁ ଚେଷ୍ଟା କରିବା । ଏହିପରି ବୁଝିହିଁ ଆମେ ଏ ବିଦ୍ୟାଳୟକୁ ଓ ଆପଣାକୁ ଭିନ୍ନ ଦୃଷ୍ଟିରେ ଦେଖିବା । ଯେତେ ପ୍ରକାର ବନ୍ଧନ ଆମର ଦିନରାତିକୁ ଓ ଆମର ବିକାଶକୁ ନାଗଫାଶର ମୋହରେ ବାନ୍ଧି ରଖିଛି ସେସବୁଥିରୁ ଆମେ ମୁକ୍ତହେବା । ତେବେ ଯାଇ ଏଠିକାର ବିଦ୍ୟାଳୟରୁ ଆମେ ବିଦ୍ୱାନର ସ୍ୱୀକୃତିପତ୍ର ପାଇବା । ଆମର ଆଳସ୍ୟରୁ ଆମେ ମୁକ୍ତହେବା । ଆମର ଆତ୍ମାଭିମାନ ଆଗ୍ରହ ସବୁରୁ ଆମେ ମୁକ୍ତହେବା । ଆମର ଅଶିଷ୍ଟତାରୁ ଆମେ ମୁକ୍ତହେବା । ଏହି ମୁକ୍ତିର ପିପାସା ଧରି ଯିଏ ଏଠି ସାହସ ଧରି ରହିବ, ସେ କଦାପି ଆପଣା ଲାଜ ଓ ଦୁଷ୍ଟାମିକୁ ଘୋଡ଼ାଇ ରଖି ଅପରକୁ ଦୁଷ୍ଟ ବୋଲି ଦେଖାଇବାର ଧୃଷ୍ଟତା କରିବ ନାହିଁ । ଆପଣା ଲାଜରୁ ମଧ୍ୟ ସେ ମୁକ୍ତ ହେବ । ବିଦ୍ୟାଦ୍ୱାରା ମୁକ୍ତି ପାଇବାକୁ ଆସିଥିବା ମହାନ୍ ବିଦ୍ୟାର୍ଥୀ କୌଣସି ପ୍ରକାର ପ୍ରଲୋଭନରେ ପଡ଼ିବ ନାହିଁ । ଯେ କୌଣସି ପ୍ରକାରେ ଆପଣାକୁ ଭଲ ବୋଲି ଦେଖାଇବାର କୌଣସି ଅପଚେଷ୍ଟା ସେ କରିବ ନାହିଁ । ସଂସାରରେ ଯାହା ମଣିଷକୁ ନାନାପ୍ରକାର ମରଣ ପାଶରେ ବାନ୍ଧି ଓ ବିକଳ କରି ରଖେ, ସେ ସମସ୍ତରୁ ଆମେ ମୁକ୍ତ ହେବାର ସାହସ ଅର୍ଜନ କରିବା । ମୁଁ ଭାବୁଛି, ପୁରୁଣା ରାସ୍ତା ଛାଡ଼ି ବିଦ୍ୟାର ଏ ନୂଆ ନୂଆ ରାସ୍ତା ଆମେ ଏଥର ଧରିବା । ଚାଲ ଆମେ ଆଜି ଏହି ପ୍ରଶ୍ନର ବିଚାର କରିବା । ଆପଣାର ଅନ୍ତର ଭିତରେ ଏହି ପ୍ରଶ୍ନର ଉତ୍ତର ପାଇବାର ଚେଷ୍ଟା କରିବା । ଏହି ଉତ୍ତର ସହିତ ଏଠି ଆମର ଦୈନନ୍ଦିନ ଜୀବନ ଓ ଦୈନନ୍ଦିନ ବ୍ୟବହାରକୁ ମିଳାଇ ଦେଖିବା । ଯଦି ମେଳଥାଏ, ତେବେ ଯାଇ ଆମେ ଏଠିକାର ଯଥାର୍ଥ ବିଦ୍ୟାର୍ଥୀ ବୋଲି ଆପଣାକୁ କହି ପାରିବା । ଯଦି କୌଣସି ମେଳ ନ ଥାଏ, ତେବେ ଜାଣିବା ଆମର ବାଟ ଏଠିକାର ବାଟଠାରୁ ଅନେକ ଦୂରରେ । ହୁଏତ ଆମର ଶରୀରଟା ଏଠି ବାନ୍ଧି ହୋଇ ପଡ଼ିଛି । ଏଠିକାର ଖାଇବା ଖେଳିବା ପଢ଼ିବା, କାମ ଓ ପ୍ରାର୍ଥନା କରିବାରେ କେବଳ ଆମ ଶରୀରଟା ସିନା ଗୋଟାଏ ଅମଣିଆ ବଳଦ ପରି

ଯାଇ ସାମିଲ ହେଉଛନ୍ତି, କିନ୍ତୁ ଆମର ହୃଦୟ ଏ ଅରଣ୍ୟପଥ ସହିତ ଏପର୍ଯ୍ୟନ୍ତ ପରିଚିତ ହୋଇ ନାହିଁ ।

୭ । ୧୨ । ୫୫

ଆମର ଶିକ୍ଷାଳୟରେ ଆମେ ସ୍ୱାଧୀନ ଆଉ ନିର୍ଭୀକ ହେବାର ଶିକ୍ଷାଲାଭ କରିବା । ଏପରି ଅନେକ ଭାଇଭଉଣୀ ବିଚାର କରିଛନ୍ତି । ଏହା ଅତି ଉତ୍ତମ ବିଚାର । କିନ୍ତୁ ସ୍ୱାଧୀନତା ସହିତ କେବଳ ନମ୍ରତା ଓ ବିନୟ ରହିପାରିଲେ ଯାଇ ଆମେ ସ୍ୱାଧୀନତା ଓ ସ୍ୱାଧୀନତାବାଚକ ପ୍ରତ୍ୟେକ ଶବ୍ଦର ମାଧୁରୀ ଉପଲବ୍ଧି କରିପାରିବା । ସ୍ୱାଧୀନତା ହେବା ଅର୍ଥ ସବୁ ଶୃଙ୍ଖଳାକୁ ଛିଣ୍ଡାଇ ଦେବା ନୁହେଁ । ସ୍ୱାଧୀନ ହେବାର ଅର୍ଥ ଆପଣାର ଅଧୀନ ହେବା । ସ୍ୱେଚ୍ଛାର ନୁହେଁ, ଆପଣାର ବିବେକର ଅଧୀନ ହେବା । ଆଉ ଆପଣା ବିବେକର ଅଧୀନ ନ ହୋଇଥିବା ପର୍ଯ୍ୟନ୍ତ ମଣିଷ କଦାପି ନିର୍ଭୀକ ହୋଇପାରିବ ନାହିଁ । ମୁହଁ ଫିଟି ଗୁଡ଼ାଏ କଥା ବକିଯିବା ନିର୍ଭୀକତା ନୁହେଁ । ଶସ୍ତା କାଗଜ ଉପରେ ରାଗ ଓ ଉତ୍ତେଜନାର ବଶବର୍ତ୍ତୀ ହୋଇ ଗୁଡ଼ାଏ ହାଡ଼ୁଆ କଥା ଲେଖିଯିବା ନିର୍ଭୀକତା ନୁହେଁ । ଯିଏ ଯଥାର୍ଥରେ ନିର୍ଭୀକ ହେବ, ସିଏ ସକଳପ୍ରକାର ମିଥ୍ୟା ପାଖରେ ନିର୍ଭୀକ ହୋଇ ଶିଖିବ । ଅନ୍ୟର ଦୋଷରେ ସେ ଯେମିତି ପ୍ରତିବାଦ କରିବ, ଆପଣା ଭିତରେ ଲୁଚି ରହିଥିବା ନାନା ମିଥ୍ୟା ଓ ସଂଯମହୀନତା ବିରୁଦ୍ଧରେ ସେ ସେମିତି ଯୁଦ୍ଧଘୋଷଣା କରି ଶିଖିବ । କୌଣସି ପ୍ରକାର ମିଛ ସମ୍ମାନ ବା ଅସମ୍ମାନ ବୋଧ ତାକୁ ଦିନରାତି ଦୁର୍ବଳ ଓ ବିକଳ କରି ରଖିବ ନାହିଁ । ଆପଣା ଭୁଲକୁ ଲୁଚାଇବା ପାଇଁ ଅପରର ଭୁଲକୁ ଉଖାରି ଦେଖାଇବାର ଲଜ୍ଜାକର ଦୁର୍ବଳତା ସେ କେବେ ଦେଖାଇବ ନାହିଁ । କୌଣସି ପ୍ରକାର ନମ୍ରତା ଓ ବିନୟର ବାଡ଼ ନମାନି ଯିଏ ସ୍ୱାଧୀନ ହେବାର ଉପଦ୍ରବ କରିବ, ତା ଉଗ୍ରତା ତାକୁ ନିଜକୁ ଖାଇଯିବ । ଆପଣା ଭିତରେ ସେ ଆପେ ସିଝିସିଝି ଯନ୍ତ୍ରସ୍ତ ହେବ । ଅତଳାନ୍ତ ଝଞ୍ଜାପରି ଜୀବନର ଦାଣ୍ଡରେ ସେ ଅକାମି ହୋଇଯିବ । ତେଣୁ ମୁଁ ସ୍ୱାଧୀନ ହେବାକୁ ଚାହେଁ, ଏକଥା ଖାଲି କହିଦେଲେ ସ୍ୱାଧୀନତା ମିଳିଯିବ

ନାହିଁ । ଆମକୁ ସ୍ୱାଧୀନତାର ଯୋଗ୍ୟ ହେବାକୁ ପଡ଼ିବ । ସ୍ୱାଧୀନତାର ବନ୍ଧନ ସ୍ୱୀକାର କରିବାକୁ ପଡ଼ିବ । ମୁଁ ନିର୍ଭୀକ ହେବାକୁ ଚାହେଁ, ଏକଥା ଖାଲି କହିଦେଲେ ନିର୍ଭୀକତା ଆସିବ ନାହିଁ । ଆପଣା ଭିତରୁ ସବୁପ୍ରକାର ଭୟ ପୋଛିଦେବାକୁ ପଡ଼ିବ । ସଂସାରରେ ଦୋଷୀ ହେବାର ବା ଧରାପଡ଼ିଯିବାର ଭୟରୁ ଅପଣାକୁ ମୁକ୍ତ ରଖିବାକୁ ପଡ଼ିବ । ଆଉ ଆମର ଭୟ ଦୂର ନ ହେବା ପର୍ଯ୍ୟନ୍ତ ଆମର ଶ୍ରଦ୍ଧା ନିର୍ମଳ ହୋଇପାରିବ ନାହିଁ । ନାନାପ୍ରକାର ମୋହ ଓ ଦୁର୍ବଳତାରେ ଏହା ଦୂଷିତ ହୋଇ ରହିଥିବ ।

ମଣିଷର କଥା, ମଣିଷର ବିବେକ ଓ ମଣିଷର ବ୍ୟବହାର—ଏଇଥିରୁ ମଣିଷର ନିର୍ଭୀକତାର ପରିଚୟ ମିଳେ । ଅପଣା ମୋହର ପରାଧୀନତାରୁ ମଣିଷ କେତେଦୂର ମୁକ୍ତ ହୋଇପାରିଛି, ତାହାର ପରିଚୟ ମିଳେ । ଆମେ ନିର୍ଭୀକ ହେବାର ବ୍ରତ ନେବାବେଳେ ଏହି କଥା ନିଶ୍ଚୟ ମନେରଖିବା । ଜିହ୍ୱା ମେ ମଧୁମତ୍ତମା—ମୋର ଜିହ୍ୱା ଅତିଶୟ ମଧୁରଭାଷିଣୀ ହେଉ—ଉପନିଷଦରେ ଋଷି ଭଗବାନଙ୍କୁ ଏଇ ପ୍ରାର୍ଥନା କରୁଛି । (ତୈତ୍ତିରୀୟ, ୧।୪।୩), ଯିଏ ଚିତ୍କାର କରି ଆମ ପାଖକୁ ଆସିବ, ସୁମଧୁର ଭାଷା କହି ଆମେ ତାହାର ସମ୍ମୁଖୀନ ହେବା, ହିଂସା ଅଉ ଅହିଂସାର ଭେଦ ଦେଖାଇ ଥରେ ବିନୋବାଜୀ ଏକଥା କହିଥିଲେ, ଯାହାର ଅନ୍ତର ମଧୁର, କେବଳ ତାହାରି କଥାହିଁ ମଧୁର ହୋଇପାରିବ । ଖୋସାମତ କରିବାକୁ ଅବଶ୍ୟ ମଧୁରକଥା କୁହାଯାଇ ପାରିବ ନାହିଁ । ସଂସାରରେ ଯିଏ ଭିତରେ ବିଷ ରଖି ବାହାରେ ଅମୃତ ବଚନ କହନ୍ତି ସେ ହୁଏତ ଆଜି ବାହାଦୁରୀ ପାଉଛି, କିନ୍ତୁ ଦିନେ ନା ଦିନେ ତାର କପଟତା ଜଣାପଡ଼ିଯିବ । ଯେତିକି ସେ କପଟ ମଧୁର କଥାର ବାଣ ଦୁନିଆକୁ ମାରୁଥିବ, ପରେ ସେ ସେତିକି ଆଘାତ ପାଇବ । ଯାହାର ଅନ୍ତର ନିର୍ମଳ, ଯିଏ ନମ୍ରହୋଇ ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ଶିଖିବାର ଶ୍ରଦ୍ଧା ନେଇ ବାହାରିଛି, କେବଳ ତାହାରି ଅନ୍ତରରୁ ମଧୁରକଥା ସମ୍ଭବ ହୋଇ ପାରିବ । କିନ୍ତୁ ଯିଏ ନାନାପ୍ରକାର ଦୋଷବିକାରକୁ ନାନା ପ୍ରକାର ଛଦ୍ମଚାକ୍‌ଚକ୍ୟ ଦେଇ ଘୋଡ଼ାଇ ରଖିଛି, ଟିକିଏ ସୁବିଧା ପାଇବା ମାତ୍ରେ, ଯିଏ ସେଇଠି ଆପଣାର ଗଚ୍ଛିତ ବିଷର ଉଦ୍‌ଗାର କରିପକାଉଛି, ଆମେ ତା ମୁହଁରୁ କେବଳ କଟୁକଥାହିଁ ଶୁଣିବା । ଆମର

କଟୁକଥାକୁ ସୁମଧୁର କଥାରେ ପରିଣତ କରିବା ହେଉଛି ଶିକ୍ଷାର କାମ । ଆମେ ଆମର ଲବ୍ଧ ଶିକ୍ଷାକୁ ଯେତିକ ହଜମ କରିପାରିବା, ଆମର କଥାରେ ସେତିକ ମାଧୁରୀ ଆସିବ । ଆଉ ଭିତରେ ନାନା ଭୟ ଓ ମଣିଷ ସମାଜରେ ଆପଣାକୁ ଶ୍ରେଷ୍ଠକରି ରଖିବାର ଭୟ ଲୁଚି ରହିଥିବା ପର୍ଯ୍ୟନ୍ତ ଆମର କଥାରେ ସମତା ବା ମଧୁରତା ଆସିବ ନାହିଁ । ବାହାରେ ଯେତେ ପାଟିକଲେ ସୁଦ୍ଧା ଭିତରେ ଆମେ ବଡ଼ ଦରିଦ୍ର ଓ ଦୁର୍ବଳ ହୋଇ ପଡ଼ିରହିବା ।

ବ୍ୟବହାର ଓ ଆଚରଣ ବିଷୟରେ ମଧ୍ୟ ଉପନିଷଦର ଗୁରୁ ଛାତ୍ରକୁ ସେଇପରି ଉପଦେଶ ଦେଇଛନ୍ତି । 'ଯାନ୍ୟନବଦ୍ୟାନି କର୍ମାଣି ତାନି ସେବିତବ୍ୟାନି । ନୋ ଇତରାଣି । ଯାନ୍ୟସ୍ମାକଂ ସୁଚରିତାନି ତାନିତ୍ୱୟୋପାସ୍ୟାନି । ନୋ ଇତରାଣି (ତୈ: ୧।୧୧।୨-୩) । ଯେଉଁସବୁ କାର୍ଯ୍ୟ ଅନିନ୍ଦିତ ଅର୍ଥାତ୍ ଦୋଷ-ମୁକ୍ତ ତାହାହିଁ ଅନୁଷ୍ଠାନ କର । ଆମର ସଦାଚରଗୁଡ଼ିକୁହିଁ ଆଚରଣ କର । ଅନ୍ୟସବୁକୁ ବର୍ଜନକର । ଯେକୌଣସି ଶିକ୍ଷାଳୟରେ ଏଇକଥା ଆଦର୍ଶ ହୋଇ ରହିବା ଉଚିତ । ଏହି ଉପଦେଶକୁ ସ୍ମରଣ କରି ଆମେ ପ୍ରତିଦିନ ଆମର ହୃଦୟକୁ ନିର୍ମଳରୁ ନିର୍ମଳତର କରିବା ଉଚିତ । ଆମର ଅଧ୍ୟବସାୟକୁ ଆମେ ପ୍ରଧାନତଃ ଏହି ଉଦ୍ଦେଶ୍ୟରେ ଲଗାଇବା । ସଂସାରର ଅନ୍ଧଦୌଡ଼ରେ ଜ୍ଞାନର ବାଗ୍ମିତା ଦେଖାଇ ମଣିଷ ଆଗରେ ବାହାଦୁରୀ କରିବାକୁ ଯିଏ ଜ୍ଞାନ ଅର୍ଜନ କରିବାକୁ ବାହାରେ, ତାହାର ଜ୍ଞାନ କେବଳ ପୁସ୍ତକଜ୍ଞାନ ହୋଇଯାଏ । ତା'ର ଜ୍ଞାନ ସହିତ ତାର ଅନ୍ତରର କୌଣସି ଯୋଗସୂତ୍ର ରହେନାହିଁ । ଆମେ ଭାରି ଉତ୍ସାହରେ ଏଠି ପାଠ ପଢ଼ୁଛେ; ଭାରି ଉତ୍ସାହରେ ନାନାକ୍ଷେତ୍ରରୁ ନାନା ବିଦ୍ୟା ସଂଗ୍ରହ କରି ଜୀବନର ପାତ୍ର ଭରିବାରେ ଲାଗିଛେ । କିନ୍ତୁ ବିଚାର ଓ ଆଚରଣଶୁଦ୍ଧିକୁ ଆମ ଶିକ୍ଷାର ସର୍ବପ୍ରଧାନ ଉଦ୍ଦେଶ୍ୟ ବୋଲି ନରଖିବା ପର୍ଯ୍ୟନ୍ତ ଆମର ସବୁ ପରିଶ୍ରମ ଖାଲି ଶୂନ୍ୟୋଦର ବାଷ୍ପ ହୋଇ ରହିବ । କୌଣସି ଦିନ କାହାର ଶାନ୍ତିବିଧାନ କରିବାଲାଗି ତାହା ଜଳକଣାଟିଏ ହୋଇ ପାରିବ ନାହିଁ । ଆଉ ଯିଏ ଆଜି ଏହିପରି ଜ୍ଞାନର ଉନ୍ନତ ପୋଷାକ ପିନ୍ଧି ଦାଣ୍ଡକୁ ବାହାରିବାର ବଡ଼େଇ କରୁଛି, ତାର ସମସ୍ତ ପୋଷାକ ତଳେ ତା' ଅନ୍ତରର ଶୂନ୍ୟତା ଲୁଚିରହି

ତାକୁ ସବୁଠାରେ ସବୁବେଳେ ଲୋକହସା କରିବାରେ ଲାଗିଛୁ । ଏତେ ବଡ଼ ଆନନ୍ଦ ଭୁବନରେ ସେହି ବିଚାରୀ ଦରିଦ୍ର ରହିଯାଉଛି ।

୭ । ୧୨ । ୫୫

ଛାତ୍ର ଓ ଗୁରୁ ଭିତରେ ରହିଥିବା ସମ୍ପର୍କ ଉପରେ ପ୍ରତ୍ୟେକ ବିଦ୍ୟାଳୟର ବିକାଶ ନିର୍ଭର କରେ । ଆମ ଦେଶରେ ଆଗେ ଛାତ୍ର ଓ ଗୁରୁର ମିଳିତ ସଂସାରକୁ ନେଇହିଁ ବିଦ୍ୟାଳୟର ସଂସାର ଗଢ଼ି ଉଠୁଥିଲା । ଆଜିକାଲି ସେସବୁ କଥା କେବଳ ଇତିହାସର କାହାଣୀ ହୋଇ ରହିଛି । ବକ୍ତୃତା ଶୁଣାଇଲା ବେଳେ ଆମ ଦେଶରେ ଦିନେ ଏପରି ଥିଲା ବୋଲି କହି ଆମେ ସମସ୍ତଙ୍କୁ ଚମତ୍କୃତ କରି ଦେଉଛୁ । କିନ୍ତୁ ସେତେବେଳେ ଯେଉଁ ଆଦର୍ଶରେ ଶିକ୍ଷାଦାନ ଓ ଶିକ୍ଷା ଅର୍ଜନର ଶୁଦ୍ଧ କାରବାର ଚାଲୁଥିଲା ସେହି ଆଦର୍ଶକୁ ଆମର ବିଦ୍ୟାଳୟର ଜୀବନକୁ ଅବତରଣ କରାଇବା କଥା ହୁଏତ ଆମେ କଳ୍ପନାହିଁ କରୁନାହୁଁ । ହଁ ଏକଥା ସତ ଯେ ସେ ଯୁଗ ଆଉ ଏଯୁଗ ସମାନ ହୋଇ ରହିନାହିଁ । ସେଦିନର କ୍ଷୁଦ୍ରାୟତନ ସଂସାର ଆଜି ବହୁକ୍ଷେତ୍ରକୁ ବିସ୍ତାରିତ ହୋଇଗଲାଣି । ତଥାପି ମୁଁ କହିବି, ସେଦିନ ଯେଉଁ ସବୁ ମୌଳିକ ନୀତି ଶିକ୍ଷାଦାନର ମାନନିର୍ଦ୍ଧାରଣ କରୁଥିଲା, ସେସବୁ ନୀତିର ଆଜି ମଧ୍ୟ ଆବଶ୍ୟକତା ରହିଛି । ଆପଣାର ବିବେକ ପ୍ରୟୋଗ କରି ସେ କାଳର ଅନେକ କଥା ଆମେ ଆଜି ମଧ୍ୟ ଗ୍ରହଣ କରିପାରିବା ।

ଆମ ଦେଶର ନାନା ବିକାକିଣା ଓ ବଣିଜ ବେପାର ପରି ଶିକ୍ଷା-କ୍ଷେତ୍ରରେ ବିକାକିଣା ଓ ବଣିଜ ବେପାର ଚାଲିଛି । ଜୀବନର ବିକାଶ କରିବା ବା ଜୀବନକୁ ଶୁଦ୍ଧ କରିବା ଆଜି ଆମ ଶିକ୍ଷାର ଉଦ୍ଦେଶ୍ୟ ହୋଇନାହିଁ । ଆଜି ତ ଟଙ୍କା ପଇସା ଆମର ଶିକ୍ଷକ ତଥା ଛାତ୍ର ଉଭୟଙ୍କୁ ଚଳାଉଛି; ସେମାନଙ୍କର ମାନସମ୍ମାନ, ଉତ୍ସାହ ଓ ଅନୁରକ୍ତିକୁ ଉଠାଉଛି ଓ ପକାଉଛି । ଚରିତ୍ରର ଶୋଧନ କରିବାକୁ ଉଦାରତର ଜୀବନ ଦୃଷ୍ଟି ଲାଭ କରିବାକୁ କେତେ ଜଣ ଛାତ୍ର ଆଜି ବିଦ୍ୟାଳୟକୁ ଆସୁଛନ୍ତି ? ଛାତ୍ରର ଆଖିକି ଆଜି ନାନା ଭେଳିକ ଟାଣି

ନେବାକୁ ବସିଲଣି । ସେ ସଂସାରର ସାଜସଜ୍ଜାରେ ଭଲପାଇ ଆପେ ବି ନାନା ପ୍ରକାରେ ସାଜି ହୋଇ ବସିବାର ଅଭିଳାଷ ରଖୁଛି । ଆଉ କୋଉ ପାଠଶାଳାରେ କିଏ କୋଉଠି କ'ଣ ଅଧିକ ଉପଭୋଗ ବା ଉପାର୍ଜନର ସୁବିଧା ପାଇଲା, କିଏ ଅଧିକ ବାବୁ ହେବାର ଅବକାଶ ପାଇଲା ତ ଆମ ଦେଶର ବିଦ୍ୟାର୍ଥୀ ଅସ୍ଥିର ହୋଇ ଉଠୁଛି । ତା ମନକୁ ସେ ସରଳ ଜୀବନର ସରଳ ମୁକ୍ତି ଦେଇ ବୁଝାଇ ପାରୁନାହିଁ । ଏ ଆଡ଼ମ୍ବର ପୂର୍ଣ୍ଣ ସଂସାରରେ ସରଳ ହେବାକୁ ତାକୁ ଆଜି ଲାଜ ମାଡ଼ୁଛି । ସଂସାରର ମୂଲ୍ୟାଙ୍କପତ୍ର ଆପଣାର ଶୁଦ୍ଧ ଉଦ୍ୟମ ଅପେକ୍ଷା ତା ଆଗରେ ଅଧିକ ମୂଲ୍ୟବାନ ହୋଇ ଗଲଣି ।

ଶିକ୍ଷକ ମଧ୍ୟ ଅନେକ ସ୍ଥଳରେ ସେହିପରି ହୀନ ହୋଇ ଗଲଣି । ସେ ମଧ୍ୟ ସଂସାରର ଆଡ଼ମ୍ବର-ଯାତ୍ରାରେ ଯୋଗ ଦେବାକୁ ମନ କଲଣି ଆଗକାଳରେ ଶିକ୍ଷା ଦେବାର ଉପଯୁକ୍ତ ସ୍ଥାନଟିଏ ଖୋଜି ଖୋଜି ଶିକ୍ଷକ ଅରଣ୍ୟ ଭିତରେ ଆପଣାର ଆଶ୍ରମ କରି ଯାଉଥିଲା । ସେଇଠି ଆପଣାର ଏକାଗ୍ର ସାଧନା ଦ୍ୱାରା ସେ ଶିକ୍ଷାର୍ଥୀକୁ ସମସ୍ତ ସଂସାର ଓ ସମସ୍ତ ଜୀବନଲାଗି ପ୍ରସ୍ତୁତ କରୁଥିଲା । ସେ ସାଧନାମୟ ଜୀବନର କୌଣସି ଆକର୍ଷଣ ଆଜି ଶିକ୍ଷକକୁ ଆକର୍ଷଣ କରି ପାରୁନାହିଁ । ବାହାରେ କର୍ତ୍ତବ୍ୟ ଅନୁରୋଧରେ ଯେଉଁଠି ପଡ଼ିରହିଥିଲେ ମଧ୍ୟ ଆପଣା ମନ ଭିତରେ ସେ ସହରର ଆରାମ ଆଡ଼ମ୍ବରର ସ୍ୱପ୍ନ ଦେଖୁଛି । ଆମ ସମାଜର ଓକିଲ ଆଉ କଣ୍ଟ୍ରାକ୍ଟର ତା ଆଗରେ ଆଦର୍ଶ ହୋଇ ରହିଛନ୍ତି । ତାଙ୍କରି ପରି ଟଙ୍କା କମାଇ ଲକ୍ଷ୍ମୀର ଅନୁଗୃହୀତ ବାହନ ହୋଇ ବସିବାକୁ ସେ ମଧ୍ୟ ଲାଳସା କରି ବାହାରୁଛି । ଅଉ ଧନ କମାଇବାର ନିଶାରେ ପଡ଼ି ସେ ଆପଣାର ସ୍ୱଧର୍ମସୁଲଭ ଶାନ୍ତି ଓ ଶ୍ରଦ୍ଧା ହରାଇ ବସୁଛି । ତାର ଆପଣା ବାଟରେ ଜଣେ ସୁଯୋଗ୍ୟ ଶିକ୍ଷକ ହେବାର ଧୈର୍ଯ୍ୟ ତାର ରହିନାହିଁ । ସେଥିଲାଗି ଆପଣାର ଦରପୋଡ଼ା ମନଟା ଲୁଚାଇବାଲାଗି ସେ ଶିକ୍ଷା କ୍ଷେତ୍ରରେ ନାନା ଜୁଲମ ଦେଖାଇବା ଆରମ୍ଭ କରି ଦେଉଛି । ତାର ଆପଣା ଅଧିକାରର ଅଭିମାନ ତାକୁ ଅନେକ ସମୟରେ ଗ୍ରାସ କରି ପକାଉଛି । ସେ ସବୁପ୍ରକାର ସ୍ୱେଚ୍ଛାଚାରର ହତିଆର ଧରି ଶିକ୍ଷା କ୍ଷେତ୍ରରେ ଶାନ୍ତି ଓ ଶୁଦ୍ଧିକୁ ନଷ୍ଟ କରିବାକୁ ସାହସ ମଧ୍ୟ କରୁଛି । ଗୋଟିଏ କିଶୋର ମନର ପୂର୍ଣ୍ଣ ମନ

ବିକାଶ କରାଇବା ଲାଗି ଯେତିକି ଧୈର୍ଯ୍ୟ ଓ ଯେତିକି ଶ୍ରଦ୍ଧା ଦରକାର ତାହା ଆଉ ତା ପାଖରେ ନାହିଁ । ଏହିସବୁ କାରଣରୁ ଗୋଟିଏ ଶିକ୍ଷା କ୍ଷେତ୍ରରେ ଗୋଟିଏ କାର୍ଯ୍ୟକ୍ରମର ଅନୁବନ୍ଧନ ଭିତରେ ରହି ମଧ୍ୟ ଶିକ୍ଷକ ଓ ଛାତ୍ର ଭିତରେ ଆଜି ଅନେକ ବ୍ୟବଧାନ ହୋଇଗଲାଣି । ଛାତ୍ର ଶିକ୍ଷକକୁ ଭୟ କରୁଛି । ଶିକ୍ଷକର ସାମନାରେ ଭଲ ପିଲା ହେବାକୁ ଚେଷ୍ଟା କରି ତା'ର ସମସ୍ତ ତାରୁଣ୍ୟ ସେ ପୋଡ଼ି ଖାଉଛି । ତାର ଫୁଲଟି ସ୍ୱାଭାବିକ ଗତିରେ ଫୁଟି ପାରୁନାହିଁ । ଶିକ୍ଷକର ଦଶା ବି ତଦ୍ରୂପ ହୋଇଯାଉଛି । ସେ ଓ ତା'ର ବିଗ୍ରହ ଅତି ଶୀଘ୍ର ବୁଢ଼ା ହୋଇଯାଉଛି । ଖାଲି ଧମକାଇ, ଭୟ ଦେଖାଇ କାମ ଓ ପାଠ ଆଦାୟ କରିବା ବ୍ୟତୀତ ଆଉ କିଛି ସେ କରି ପାରୁନାହିଁ । ତାର ନିଜର ବିକାଶ ତ 'ବନ୍ଦ 'ହୋଇଯାଉଛି, ତେଣୁ ସେ ଆଉ କାହାର ବିକାଶରେ ଯଥୋଚିତ ସାହାଯ୍ୟ କରି ପାରିବ କିପରି ? ଖାଲି ଆପଣା ବୟସ ଓ ଆପଣା କ୍ଷମତାର ନିହାଣ ବାଡ଼େଇ ସେ କଅଁଳ ଶିଶୁ ମନକୁ ସଜାଡ଼ି ସମତୁଲ କରିବାର ଦୁଃସାହସ କରୁଛି ।

ଯେଉଁଠି ଛାତ୍ର ଆଉ ଶିକ୍ଷକ ଦୁଇଟା ପକ୍ଷ ହୋଇ ଖାଲି ଆପଣାର ଅଭିମାନ ଜାରି କରୁଥିବେ, ସେଠି କୌଣସି ଶିକ୍ଷାଳୟ ସମ୍ଭବ ହୋଇପାରିବ ନାହିଁ । ଛାତ୍ର ଓ ଶିକ୍ଷକ ଉଭୟଙ୍କୁ ନେଇ ହିଁ ଶିକ୍ଷାଳୟ । ଉଭୟଙ୍କର ସମବେତ ସାଧନାରେ ହିଁ ଶିକ୍ଷାଳୟର ସାର୍ଥକତା । ଯିଏ ଛାତ୍ର ସିଏ ତା ଜୀବନ ଗଢ଼ିବା ଲାଗି ବିଦ୍ୟାଳୟକୁ ଆସିଛି । ଯିଏ ଶିକ୍ଷକ ତାର ମଧ୍ୟ ଜୀବନ ଗଢ଼ିବା ଶେଷ ହୋଇ ନାହିଁ । ଦୁହେଁ ସେଇ ଏକ ସତ୍ୟାନୁସନ୍ଧାନ ପଥର ପଥିକ, ଦୁହେଁ ହିଁ ଜୀବନ-ନିର୍ମାଣ-ପଥର ଯାତ୍ରୀ ଭାଇ । ଅତି ନମ୍ରତା ସହିତ ସେମାନଙ୍କୁ ଏ କଥା ସ୍ୱୀକାର କରିବାକୁ ହେବ । ଅତି ଶ୍ରଦ୍ଧାର ସହିତ ସେମାନଙ୍କୁ ପରସ୍ପର ସହିତ ଡୋରି ବାନ୍ଧିବାକୁ ପଡ଼ିବ । ଆଗକାଳରେ ଗୁରୁ ଓ ଛାତ୍ର ଉଭୟେ ସାଧକ ଥିଲେ, ଉଭୟେ ନିଷ୍ଠାପର ଜୀବନ ବଞ୍ଚି, ହୃଦୟକୁ ନିର୍ମଳ କରି, ଯଶ ଓ ବ୍ରହ୍ମତେଜ ଲାଗି ପ୍ରାର୍ଥନା କରୁଥିଲେ । "ସହ ନୌ ଯଶଃ, ସହ ନୌ ବ୍ରହ୍ମବର୍ଚସମ୍ (ତୈ. ୧।୩।୧) । ଆମ ଦୁହିଙ୍କର ଯଶ ସମାନ ଭାବରେ ବିସ୍ତାରିତ ହେଉ । ଆମ ଉଭୟଙ୍କର ବ୍ରହ୍ମତେଜ ସମାନ ଭାବରେ

ପ୍ରକାଶିତ ହେଉ । ଉପନିଷଦର ଗୁରୁ ଓ ଶିଷ୍ୟ ଭଗବାନଙ୍କ ପାଖରେ ଏହି ଭିକ୍ଷା କରୁଥିଲେ । ଆମର ବିଦ୍ୟାଳୟରେ ଆମେ ଶିକ୍ଷକ ଓ ଶିକ୍ଷାର୍ଥୀ ଦୁଇ ପକ୍ଷ ହୋଇ ରହିବା ନାହିଁ । ଆମେ ଉଭୟଙ୍କର ଯଶ କାମନା କରିବା, ଉଭୟଙ୍କର ବିକାଶ କାମନା କରିବା । କାରଣ କେବଳ ଗୋଟାଏ ପକ୍ଷର ଜିଦ୍ ଦ୍ୱାରା ନୁହେଁ, ଉଭୟଙ୍କର ବିବେକ ଓ ଶୁଦ୍ଧି ଉପରେ ବିଦ୍ୟାଳୟର ବିବେକ ଓ ଶୁଦ୍ଧି ନିର୍ଭର କରୁଛି ।

୮ । ୧୨ । ୫୫

ଆମର ଶିକ୍ଷାଳୟରେ ଆମ ପ୍ରତ୍ୟେକଙ୍କ ଲାଗି ସ୍ୱାଧୀନତା ଦରକାର । ହଁ, ଏହା ଅବଶ୍ୟ ଦରକାର; କିନ୍ତୁ ଶିକ୍ଷା ଲାଗିହିଁ ସ୍ୱାଧୀନତା ଦରକାର, ଅଶିକ୍ଷା ଲାଗି ନୁହେଁ ! ବିକାଶ ଲାଗି ସ୍ୱାଧୀନତା ଦରକାର, ବିନାଶ ଲାଗି ନୁହେଁ । ପରସ୍ପର ସହିତ ନାନା କ୍ଷେତ୍ରରେ ସହଯୋଗୀ ମନ ନେଇ ସମ୍ମିଳିତ ହେବା ଦରକାର, ସ୍ୱେଚ୍ଛାଚାର ଲାଗି ନୁହେଁ । ଯିଏ ଏହି ଶିକ୍ଷାଳୟର ଓ ଶିକ୍ଷାଳୟ ଜରିଆରେ ଆପଣାର କଲ୍ୟାଣ କାମନା କରୁଛି, ତାକୁ ଏହି ବିଚାରଟିକୁ ଭଲକରି ବୁଝି ରଖିବାକୁ ହେବ ଯେ ଏ ଅନୁଷ୍ଠାନ ତାର । କେବଳ କେତେ ଜଣ ଶିକ୍ଷକ ବା ବ୍ୟବସ୍ଥାପକ ଏ ଅନୁଷ୍ଠାନର ମାଲିକାନାସତ୍ତ୍ୱ ଭୋଗ କରିବାକୁ ଚାହାନ୍ତି ନାହିଁ । ଏପରି ଗୋଟାଏ ଏକପାଖିଆ ପ୍ରଭୁତ୍ୱରେ ସେମାନେ ବିଶ୍ୱାସ କରନ୍ତି ନାହିଁ । ତେଣୁ ଏହି ବିଦ୍ୟାଳୟର ଶିକ୍ଷାର୍ଥୀ ଟିକିଏ ଅଲଗା ଦୃଷ୍ଟିରେ ଏଠାକାର ସବୁ ଶୃଙ୍ଖଳା ଓ ବିଶୃଙ୍ଖଳାର ବିଚାର କରିବା ଉଚିତ । ଏ ଅନୁଷ୍ଠାନ ତାର । ଏ ଅନୁଷ୍ଠାନର ନାମ ଓ ବଦ୍‌ନାମ ମଧ୍ୟ ତାର । ସେଇ ଆଜି ଆପଣା ମନକୁ ପଚାରୁ କ'ଣ କରିବା ଲାଗି ସେ ଏଠି ସ୍ୱାଧୀନତା ଚାହୁଁଛି ? ଆପଣାର ଓ ସମସ୍ତଙ୍କର କଲ୍ୟାଣ ଲାଗି ତାର ସ୍ୱାଧୀନତା କେତେଦୂର ସହାୟକ ବା ବାଧକ ହେବ ? ଆମର ସ୍ୱାଧୀନତା ସଙ୍ଗେ ସଙ୍ଗେ ଆମର ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ମଧ୍ୟ ସେତିକି ବଢ଼ିବା ଉଚିତ । ଗୋଠଖଣ୍ଡିଆ ବା ପଘାଛଡ଼ା ଗାଈ ପରି ଯାହା ବାଡ଼ି ତା ବାଡ଼ିରେ ପଶିବାର ଅଭ୍ୟାସ କରିବାକୁ ଆମେ ନିଶ୍ଚୟ ସ୍ୱାଧୀନତା କହିବା ନାହିଁ । ସ୍ୱାଧୀନତା ସହିତ ଆତ୍ମଶୃଙ୍ଖଳା ମଧ୍ୟ

ରହିବା ଦରକାର । ନ ହେଲେ ଆମର ସ୍ୱାଧୀନତା ଜଙ୍ଗଲର ସ୍ୱାଧୀନତା ହୋଇଯିବ । ଜଙ୍ଗଲରେ କୌଣସି ଶୃଙ୍ଖଳା ନ ଥାଏ, କୌଣସି ସହଯୋଗ ନ ଥାଏ, କୌଣସି ଜୀବନନୀତି ନ ଥାଏ; ତେଣୁ ଅପାର ସ୍ୱାଧୀନତା ପାଇ ମଧ୍ୟ ସେଠାରେ ମିରଗଠାରୁ ବାଘ ପର୍ଯ୍ୟନ୍ତ ସମସ୍ତେ ସବୁବେଳେ ତ୍ରାସରେ ଆଚ୍ଛନ୍ନ ହୋଇଥାନ୍ତି । ସମସ୍ତେ ସମସ୍ତଙ୍କୁ ଡରନ୍ତି । ସୁବିଧା ପଡ଼ିଲେ ଇଏ ତାକୁ ଗିଳିଦିଏ କି ସିଏ ଇଆର ମାଉଁସ ଖାଏ । ଏଠି ପରସ୍ପରର ମାଉଁସ ଖାଇବାର କି ପରସ୍ପରକୁ ଗିଳି ପକାଇବାର ଦାନ୍ତ ବା ପାଟି ଆମର ନାହିଁ । ତଥାପି ମୁଁ ତ କହିବି ଅନେକ ସମୟରେ ଏହିପରି ଅପରକୁ ଖାଇଯିବାର କି ଗିଳିପକାଇବାର ସ୍ୱାଧୀନତା ପାଇବାରେ ଆମେ ଭାରି ଉତ୍ସାହୀ ହୋଇଉଠୁଛୁ; ଦଳବଳ ଧରି ଆମେ ଏହିପରି ଗୋଟାଏ ନିକୃଷ୍ଟ ସ୍ୱାଧୀନତା ଲାଗି ଲଢ଼ିବାକୁ ବାହାରୁଛୁ । ଏପରି ସ୍ୱାଧୀନତାକୁ ଆମେ କେତେଦୂର ପ୍ରକୃତରେ ପସନ୍ଦ କରୁଛୁ, ଟିକିଏ ସ୍ଥିରହୋଇ ବସିଲେ ଆମେ ସେକଥା ଜାଣିପାରିବା ।

ତା' ପରେ ଆଉ ଗୋଟାଏ ପ୍ରକାରର ନିକୃଷ୍ଟ ସ୍ୱାଧୀନତା ମଧ୍ୟ ରହିଛି । ସଢ଼ା ପାଣି ବା ପଗୁ ପଙ୍କରେ ଯେଉଁ କୀଟସବୁ ରହନ୍ତି, ସେମାନେ ସେହିପରି ରହିବାର ପୂର୍ଣ୍ଣ ସ୍ୱାଧୀନତା ପାଇଥାନ୍ତି । ଆମେ ଏପରି ସ୍ୱାଧୀନତାକୁ କଦାପି ସ୍ୱାଧୀନତା କହିପାରିବା ନାହିଁ; ତଥାପି ସେମାନଙ୍କର ସ୍ୱାଧୀନତାର ପରିଧି ଏହିପରି ଜୀବନରେ ସୀମାବଦ୍ଧ ଥାଏ । ଆମ ସମାଜରେ ଅନେକ ଲୋକ ଠିକ୍ ଏହିପରି ସ୍ୱାଧୀନତା ଅନେକ ସମୟରେ ଦାବୀ କରିବସନ୍ତି । ସେମାନେ କହନ୍ତି କାଲିଯାଏ ଆମେ ଠିକ୍ ଯେଉଁ ପରିସ୍ଥିତିରେ ଜୀବନ ବଞ୍ଚି ଆସିଥିଲୁ, ଆମକୁ ସେହିପରି ରହିବାର ସ୍ୱାଧୀନତା ଆଜି ମଧ୍ୟ ଦିଅ । ଜୀବନରେ କୌଣସି ନୂତନତା ବା ବୈଚିତ୍ର୍ୟ ଅଛି ବୋଲି ସେମାନେ ବିଶ୍ୱାସ କରନ୍ତି ନାହିଁ । ଠିକ୍ ଆଗରୁ ଯାହା ଚାଲିଆସିଛି, ଯାହାକୁ ଲୋକ ମୁହଁରେ ଭଲ ବୋଲି କୁହାଯାଉଛି, ଯେପରି ଆଚରଣ କଲେ ଗତାନୁଗତିକ ସମାଜର ବାହାବା ମିଳିପାରିବ, ତାକୁଇ ମାନି ଚାଲିବାଟାକୁ ସେମାନେ ଜୀବନର ସାର ବୋଲି ବିଗୁରନ୍ତି । ଯାହା ଅଛି ବା ଯାହା ଚାଲୁଛି, ତାହାର ସହିତ ଆପଣାର ବାହ୍ୟ ଆଚରଣଗୁଡ଼ାକୁ ଖାପ ଖୁଆଇନେଇ ପାରିବାକୁ ସେମାନେ ଜୀବନର ପରମ ଧର୍ମ ବୋଲି

ବସ୍ତୁରନ୍ତ । ସେମାନଙ୍କର ଏହି କାଷ୍ଠ-ଜୀବନଯାତ୍ରାରେ କୌଣସି ପ୍ରକାର ହସ୍ତକ୍ଷେପ ସେମାନେ ସହ୍ୟ କରନ୍ତି ନାହିଁ । ଏ ସ୍ୱାଧୀନତା ଅଳସୁଆ ମଣିଷର ସ୍ୱାଧୀନତା, ଏ ସ୍ୱାଧୀନତା ପୁରୁଣା ରୁଗ୍‌ଣ ମନର ସ୍ୱାଧୀନତା । ସାମାଜିକ ଓ ବ୍ୟକ୍ତିଗତ ଜୀବନର ସବୁ ପୁରୁଣା ବିକାର ସେମିତି ଘୋଡ଼ାଇ ହୋଇ ରହିଥାଏ, ପୁରୁଣା ପଚାପାଣି ଭିତରେ ପୁରୁଣା ମନଷ୍ଟା ସେମିତି ଜୋକ ପରି ରହିଥାଏ; ତଥାପି ସେମାନେ କୌଣସି ପ୍ରକାର ହଲଚଲ ସହ୍ୟ କରନ୍ତି ନାହିଁ, କୌଣସି ପ୍ରକାର ଅଦଳବଦଳକୁ ସେମାନେ ଭୟ କରନ୍ତି । ନିତି ମରି ନିତି ନୂଆ ହୋଇ ଜନ୍ମହେବାର କଳାକୁ ସେମାନେ ସବୁଠାରୁ ବିପଜ୍ଜନକ ବୋଲି ମନେକରନ୍ତି । ସେଥିଲାଗି କୌଣସି ପ୍ରକାର ପରିବର୍ତ୍ତନର ଆଘାତ ପାଇଲେ ସେମାନେ ମଧ୍ୟ ପ୍ରତିବାଦ କରନ୍ତି । ସେମାନେ ମଧ୍ୟ ଅତି ଅଲାଜୁକ ଅଥଚ ବସ୍ତୁତଃଭାବରେ ଆପଣାର ସ୍ୱାଧୀନତା ଲାଗି ନାଲିସ କରିଆସନ୍ତି ।

ବେଦରେ ଭଗବାନଙ୍କୁ ନବୀୟସ୍ ବୋଲି ବନ୍ଦନା କରାଯାଇଛି । ନବୀୟସ୍ ଅର୍ଥାତ୍ ଅତିଶୟ ନୂତନ; ଅର୍ଥାତ୍ ନିତ୍ୟନୂତନ, ଯେଉଁଠି ସଂସାରର କର୍ତ୍ତା ନିତି ନୂଆ ହେଉଛନ୍ତି ତାଙ୍କର କଳା ଧରି ଆସିଥିବା ଆମେ ମଣିଷ ମଧ୍ୟ ନିତି ନୂଆ ହେବାର କଳା ଶିଖିବା । ଏହି ନୂଆ ହେବାର ନିତ୍ୟ-ବିକାଶ ଲାଗି ଆମେ ସ୍ୱାଧୀନତା ପାଇବା । ଯିଏ ପୁରୁଣା ଭିତରେ ରହିବାକୁ ଭଲ ପାଏ, ସିଏ କେବଳ ନାନାପ୍ରକାର ପରାଧୀନତା ଭିତରେ ଆପେ ଆପେ ଆବଦ୍ଧ ହୋଇଯାଏ, ନାନାପ୍ରକାର ମୋହ ତାର ସ୍ୱାଧୀନ ଜୀବନର ସମସ୍ତ ସମ୍ଭାବନା ହରଣ କରି ନେଇଯାଏ । କିନ୍ତୁ ନୂଆ ହେବାର ଦୀକ୍ଷା ଯେ ଗ୍ରହଣ କରିଛି, କୌଣସି ପରାଧୀନତା ତାକୁ କବଳରେ ପକାଇପାରେ ନାହିଁ । ସବୁ ରକମର ବନ୍ଧନକୁ ସେ ଆପଣା ଗୁଣେ ଅତିକ୍ରମୀକରିଯାଏ । ତାର ନିଷ୍ଠା, ତାର ଅନ୍ତର୍ମୁଖିତା ଜୀବନକୁ ସମସ୍ତ ପ୍ରକାର ଶାସନର ବେଢ଼ାରୁ ମୁକ୍ତ କରି ରଖେ । ସେ କୌଣସି ବାହ୍ୟଶକ୍ତିର ଦାସ ହୋଇ ରହେନାହିଁ । ଆପଣା ସ୍ୱେଚ୍ଛାଚାରର ଦାସ ହୁଏନାହିଁ କି ଆପଣା ଆଳସ୍ୟର ଦାସ ମଧ୍ୟ ହୁଏ ନାହିଁ । ଆପଣାକୁ ସ୍ୱାଧୀନ ରୂପେ ଗ୍ରହଣ କରିପାରିଲେ ଏଠି ମଧ୍ୟ ଆମେ ଆମର ସ୍ୱାଧୀନତା ପାଇପାରିବା । ବର୍ତ୍ତମାନର ସମାଜ ଓ ବ୍ୟକ୍ତି ଭିତରେ ଯେଉଁସବୁ ସଂସ୍କାରଗତ ରୋଗ ବିକାର ରହିଛି, ତାକୁ

ଦୃଢ଼କରି ସୁସ୍ଥ ବ୍ୟକ୍ତି ଓ ସୁସ୍ଥ ସମାଜ ଗଠନ କରିବାର ଶୁଦ୍ଧ ସଂକଳ୍ପ ନେଇ-ପାରିଲେ ଆମର ସ୍ୱାଧୀନତା ଯଥାର୍ଥ ସ୍ୱାଧୀନତା ହୋଇପାରିବ । କିନ୍ତୁ ଆପଣା ମୋହ, ଆପଣା ସ୍ୱେଚ୍ଛାଚାର ଓ ଆପଣା ଆଳସ୍ୟକୁ ସାର କରି ଧରିଥିବା ପର୍ଯ୍ୟନ୍ତ ଏଠିକା କଥା ତ ଦୂରର କଥା, ସ୍ୱର୍ଗରାଜ୍ୟରେ ମଧ୍ୟ କୌଣସି ସ୍ୱାଧୀନତାର ସ୍ୱାଦ ଆମେ ପାଇପାରିବା ନାହିଁ ।

୯ । ୧୨ । ୫୫

ଆମର ସାମାଜିକ ଜୀବନରେ ଏଠି ନାନାପ୍ରକାର ଅବହେଳା ପ୍ରବେଶ କଲଣି । ଏଥିପାଇଁ ଆମ ଭିତରୁ ଅନେକେ ବଚଳିତ ହୋଇପଡ଼ୁଛନ୍ତି । ଆମର ପ୍ରାର୍ଥନାକୁ ସମସ୍ତେ ଆସୁ ନାହାନ୍ତି । ଯିଏ ଆସୁଛନ୍ତି ସେମାନେ ଉପଯୁକ୍ତ ଆଗ୍ରହ ନେଇ ଆସୁନାହାନ୍ତି । କାମ ହେଉଛି, ଘଣ୍ଟା ବାଜିବା ସଙ୍ଗେ ସଙ୍ଗେ ଉପକରଣମାନ ଧରି ସମସ୍ତେ କାମକୁ ବାହାରି ଯାଉଛନ୍ତି । କିନ୍ତୁ ଆମେ ଘରେ ଥିଲେ ଯେତିକି ଦାୟିତ୍ୱରେ କାମ କରନ୍ତେ, ଯେତେ ମନପ୍ରାଣ ଲଗାଇ କାମ କରନ୍ତେ, ସେପରି କାମ ଏଠି ହେଉ ନାହିଁ । ପାଠପଢ଼ା ବେଳେ ସମସ୍ତେ ଯେତିକି ମନୋଯୋଗ ସହକାରେ ସୋପାନରେ ବସିବା କଥା, ବସୁନାହାନ୍ତି । ଆପଣାର ବ୍ୟକ୍ତିଗତ ସମୟଟା ଯେତିକି ସାର୍ଥକ ଭାବରେ କଟିପାରନ୍ତା, ସେପରି କଟୁ ନାହିଁ । ଗୋଟାଏ ଘରେ ଜଣେ ଭାଇ ପଢ଼ୁଛନ୍ତି ତ ଆଉ ଜଣେ ଭାଇ ଗୀତ ବୋଲୁଛନ୍ତି; ଜଣେ ବାଜା ବଜାଉଛନ୍ତି; ପୁଣି ଆଉ ଦୁଇ ଜଣ ହୁଏତ ଗୋଟାଏ ହସକଥା ପକାଇ ହୋ ହୋ ହେଉଛନ୍ତି । କେଉଁଠି ପୁଣି ଦଳେ ଅତି ନିଶ୍ଚିନ୍ତ ଅଳସ ହୋଇ ବସି ନାନା ଅଛୁଣ୍ଡା ଗପର ବାରମଜା ଚାଖୁଛନ୍ତି । ଜଣେ ଜଣେ ପୁଣି ଅତି ଚଳଖ ହୋଇ ଆମ ଭିତରୁ କିଏ କେଉଁଠି ଅସ୍ୱାଭାବିକ ସ୍ୱଭାବ ଦେଖାଇଲା ବା କ'ଣ ଗୋଟାଏ ଅପରାଧ କରିପକାଇଲା ସେକଥା ଜାଣିବାକୁ ପୋଲିସ ହୋଇ ଧାଇଁଛନ୍ତି; କେଉଁଠି କାହାର କଥା ଶୁଣିବାକୁ କାନ ଡେରିଛନ୍ତି; କେଉଁଠି ପୁଣି ଏକାନ୍ତରେ ବସି କାହା ବିଷୟରେ ଫୁସଫାସ ହେଉଛନ୍ତି । ପରସ୍ପର ପ୍ରତି ଆମର ଯେତିକି ସମ୍ମାନ ଓ ସ୍ନେହ ରହିବା କଥା,

ତାହା ଅନେକ ସମୟରେ ରହିପାରୁ ନାହିଁ । ଯେଉଁ ଗଛଲତାଙ୍କୁ ମଧ୍ୟ ଆମେ ଏଠି ଆମର ସଂସାର ଭିତରେ ବଢ଼ାଉଛେ, ସେମାନଙ୍କ ପ୍ରତି ଅନେକ ସମୟରେ ଆମର ଦୃଷ୍ଟି ପଡ଼ୁ ନାହିଁ । ଗଛରେ ପାଣି ଦେବା, ଗଛ ମୂଳରୁ ଘାସବାଛି ସଫା କରିଦେବା ପ୍ରଭୃତି କାମ ଖାଲି ରୁଟିନ୍ ପରି କଲେ ସେସବୁ କାମରୁ ଆମେ ଯେତିକି ଉପକାର ପାଇବା କଥା ତାହା ପାଇପାରିବା ନାହିଁ । କେବଳ ଟଙ୍କା ପଇସା ବା ଉତ୍ପାଦନ ଦୃଷ୍ଟିରୁ ମୁଁ ଉପକାର ପାଇବା କଥା ଭାବୁ ନାହିଁ । ମଞ୍ଜିଟିକୁ ଗଛକରି ଫଳ ଫଳାଇବା ଗୋଟାଏ ସମଗ୍ର ଜୀବନର ଧାରା ପରି । ଏହି ଜୀବନଧାରାକୁ ଠିକ୍ ଭାବରେ ଚାଲୁ ରଖିବାରେ ଆମେ ଯଦି ଆମର ଶ୍ରମ ଓ ଶ୍ରଦ୍ଧା ଠିକ୍ ରୂପେ ଦେଇପାରିବା, ତେବେ ଆମର ଜୀବନର ବିକାଶଧାରାକୁ ଆମେ ଅଧିକ ସୁନ୍ଦର ଓ ଉଜ୍ଜ୍ୱଳ କରିପାରିବା । ଖାଲି ବାଧ୍ୟ ହୋଇ କାମ କରିବାକୁ କିଆରିକୁ ଗଲେ ଆମ କିଆରିର ଗଛଲତାରୁ ଆମେ କୌଣସି ପ୍ରେରଣା ପାଇପାରିବା ନାହିଁ । କୌଣସି ପ୍ରକାର ବିସ୍ମୟ ଆମ ମନରେ ଜନ୍ମିପାରିବ ନାହିଁ । ଆଉ ଯେଉଁଠି ମୂଳରେ ପ୍ରେରଣା ନାହିଁ କି ବିସ୍ମୟ ନାହିଁ, ସେଠି କୌଣସି ଗଠନମୂଳକ ଶିକ୍ଷା ସମ୍ଭବ ହୋଇପାରିବ ନାହିଁ । ଆପଣାର କାମ ସହିତ ଯିଏ ଆପଣାର ଜ୍ଞାନ ଓ ଶ୍ରଦ୍ଧାକୁ ମିଶାଇ-ପାରିବ , କେବଳ ସେହି ଯଥାର୍ଥ ବିଦ୍ୟାର୍ଥୀ ବୋଲାଇପାରିବ । ଯେଉଁ ଶିକ୍ଷାଳୟରେ ଏହି ତିନୋଟି କଥା ଏକାଠି ହୋଇ ନାହିଁ, ସେ ଶିକ୍ଷାଳୟକୁ ଦୁର୍ଭାଗ୍ୟ ବୋଲି କହିବା ଉଚିତ । ଆମ ଭିତରେ କମ କରିବାର ଶକ୍ତି ଅଛି, ଜ୍ଞାନ ଅଛି, ହୃଦୟରେ ଶ୍ରଦ୍ଧା ମଧ୍ୟ ଅଛି । କିନ୍ତୁ ଏପର୍ଯ୍ୟନ୍ତ ତିନୋଟି ଯାକର ସମନ୍ୱୟ ଆମେ କରିପାରି ନାହୁଁ । ସେଥିଲାଗି ଏଠାକାର ଜୀବନରେ ଅନେକ ସମୟରେ ଶ୍ରଦ୍ଧା ଦେଖିବାକୁ ମିଳୁ ନାହିଁ । ହୁଏତ ଘଣ୍ଟାରେ କଣ୍ଟା ଦେଖି କାମ ମାଷ୍ଟର କାମ ଆଦାୟ କରୁଛି, ପାଠୁଆ ମାଷ୍ଟର ପାଠ ଘୋଷାଉଛି । ନାନା ଆଳସ୍ୟର କୁହୁଡ଼ି ସୃଷ୍ଟି କରି ଆମେ ବେଶ୍ ଗେଲବସର ହୋଇ ରହିଛୁ । ଗୋଟାଏ ଅଦ୍ଭୁତ କ୍ଳାନ୍ତି ଓ ଅବସାଦ ଆମ ମନକୁ ଘୋଟିରହିଛି ।

ଆମେ ଏ ଅନୁଷ୍ଠାନକୁ ଗୋଟିଏ କାରଖାନା ପରି ବିଚାରୁଛୁ । ହୁଏତ ସେଥିପାଇଁ ଅନେକ ସମୟରେ ଏପରି କ୍ଳାନ୍ତି ଓ ଅବସାଦ ଆମକୁ ଗ୍ରାସ କରି

ପକାଉଛୁ । କାରଖାନା ସହିତ କାମ କଲାବାଲାର କେବଳ ଦାନାକନାର ସମ୍ପର୍କ ଥାଏ, ଅନ୍ତରର ସମ୍ପର୍କ ନ ଥାଏ । ମଜୁରିଆ ଦିନରେ ଆଠଘଣ୍ଟା କାମ କଟେ । ତାର ପ୍ରତିବଦଳରେ ସେ ଦାନା କନାର ସରଞ୍ଜାମ ପାଏ । ହୁଏତ ଆମ ଭିତରୁ ଅନେକେ ସେହିପରି ଗୋଟାଏ ଦୃଷ୍ଟି ନେଇ ଏଠାରେ ଅଛନ୍ତି । ସେମାନେ କାମ କରୁଛନ୍ତି, ପାଠ ପଢ଼ୁଛନ୍ତି । ନିର୍ଦ୍ଦେଶମତେ ଆଦେଶ ମାନୁଛନ୍ତି । ଯେପରି ଯେ କୌଣସି ପ୍ରକାରେ ଏଠିକାର ପାଠ ଖତମ କରିଦେଲେ ସେମାନେ ତ୍ରାହି ପାଇବେ । ଏପରି ବେକରେ ପଘା ବନ୍ଧା ହୋଇ କାମ କରୁଥିବା ଓ ପାଠ ପଢ଼ୁଥିବା ପର୍ଯ୍ୟନ୍ତ କିପରି ଆମେ ଏ ସ୍ଥାନଟିକୁ ବିଦ୍ୟାଳୟ ବୋଲି କହିବା ? ଦାନାକନାର ସହଜ ରାସ୍ତା ଫିଟାଇଦେବା ବିଦ୍ୟାଳୟର ପ୍ରଧାନ କାମ ନୁହେଁ । ହୃଦୟର ଦ୍ୱାର ଫିଟାଇଦେବା ହେଉଛି ଆମର ବଡ଼ ଧ୍ୟେୟ । ଆମେ ସମସ୍ତେ—ଶିକ୍ଷାର୍ଥୀ ଓ ଶିକ୍ଷକ ଉଭୟେ—ଏହି ହୃଦୟ ଫିଟିବାର ସାଧନାରେ ଏଠି ଏକଜୁଟ ହେବା ଉଚିତ । ଏ ଅନୁଷ୍ଠାନକୁ ଆପଣାର ଘର ବୋଲି ମନେ କରିପାରିଲେ ହିଁ ଆମେ ସେହି ସାଧନାରେ ଭାଗ ନେଇପାରିବା । ଏ ଆମର ଘର, ଆମର ସବୁଟି ଲାଗି, ଦୁଃଖ ସୁଖ, ହସ କାନ୍ଦ, ଅଳି ଅଭିଯୋଗ ସବୁଟି ଲାଗି ଏଠି ସ୍ଥାନ ରହିବ । ଏଠି ଆମେ ନିର୍ଭୀକ ହେବା । ଯାହାର ହୃଦୟ ଖୋଲିଯିବ କେବଳ ସେହି ସଂସାରରେ ସୁଖୀ ଓ ନିର୍ଭୀକ ବୋଲାଇପାରିବ । ଆମ ସମସ୍ତଙ୍କ ଭିତରେ ଅପାର ସ୍ନେହଶକ୍ତି ରହିଛି । ସେହି ସ୍ନେହଶକ୍ତି ବଳରେ ହିଁ ଏହି ସ୍ନେହର ବିରାଟ ଘର ଗଢ଼ିଉଠିବ, ଆଉ ସ୍ନେହର ଅଭାବ ଘଟିଲେ ଏ ଘର ବଡ଼ ଶୋଚନୀୟ ଭାବରେ ଭାଙ୍ଗି ପଡ଼ିବ । କୌଣସି ପ୍ରକାର ଦାନ ବା ଦୟା ଏହାକୁ ବଞ୍ଚାଇ ରଖିପାରିବ ନାହିଁ ।

ଆମ ଭିତରର ରାଗଦ୍ୱେଷ ଆଉ ବିଦ୍ୱେଷ ଯେତେବେଳେ ଅନ୍ଧ ହୋଇ ମାତିଉଠୁଛି, ଯେତେବେଳେ ଆପଣା ଆପଣାର ଅଭିମାନ ବଜାୟ ରଖିବାକୁ ଯାଇ ଆମେ ଏଠିକାର ଆନନ୍ଦକୁ ଖଣ୍ଡ ଖଣ୍ଡ କରି ପକାଉଛୁ, ସେତିକିବେଳେ ଆମର ଭାବିବା କଥା—ଘରକୁ ଆମେ ସମସ୍ତେ ମିଶି ଗଢ଼ିବା ନା ସମସ୍ତେ ମିଶି ଭାଙ୍ଗିବା ! ଆମେ ଏଠି ପରସ୍ପରଠାରୁ ଯେତିକି ସ୍ନେହ ଓ ଆଦର ପାଇବା କଥା

ହୁଏତ ତାହା ପାଉ ନାହୁଁ । ସେଥିଲାଗି ପରସ୍ପରକୁ ଉଚିତ ପରିମାଣରେ ସ୍ନେହ ଓ ଆଦର ଦେଇପାରୁ ନାହୁଁ । ଏ ସ୍ନେହ ଦେବାର ଦାୟିତ୍ୱ ସମସ୍ତଙ୍କର । ଗ୍ରୀଷ୍ମଠାରୁ ବଡ଼ ଯାଏ ଆମେ ସମସ୍ତେ ମିଶି ଏ ଘରଟିକୁ ସ୍ନେହରେ ଭରିଦେଇ ପାରିବା । ପ୍ରତିଦିନ ଅନ୍ତତଃ ମୁହୂର୍ତ୍ତେ ଆମେ ପ୍ରତ୍ୟେକେ ସ୍ଥିର ହୋଇ ଏହି କଥା ବିଚାର କରିବା

୧୪ । ୧୦ । ୫୫

କାଲି ଆମ ଭିତରୁ ତିନି ଜଣ ଏଠାରୁ ବିଦାୟ ନେଇ ଚାଲିଗଲେ । ସେମାନେ ଚାଲିଯିବା ପରେ ଅନୁଷ୍ଠାନର ଶରୀରରେ ଯେପରି ଯେମିତି ଏକ ବଡ଼ କ୍ଷତ ହୋଇଯାଇଥିବା ପରି ଲାଗୁଛି । କ୍ଷତ ଆମ ସମସ୍ତଙ୍କର; ଯେଉଁମାନେ ଗଲେ କେବଳ ସେଇମାନଙ୍କର ନୁହେଁ । ଆମ ଅନୁଷ୍ଠାନ କହିଲେ ପ୍ରଧାନତଃ ଏଠିକାର ପାହାଡ଼ ପର୍ବତ ବା ବଣ ଜଙ୍ଗଲକୁ ବୁଝାଏ ନାହିଁ, ଏଠାକାର ଘରଦ୍ୱାରକୁ ବୁଝାଏ ନାହିଁ । ଅନୁଷ୍ଠାନ ଅର୍ଥ ଆମେ ସମସ୍ତେ—ଏଠାକାର ଶିକ୍ଷକ ଓ ଶିକ୍ଷାର୍ଥୀ ଉଭୟଙ୍କର ଆକାଂକ୍ଷା ଓ ଅନୁରକ୍ତିକୁ ନେଇ ହିଁ ଏ ଅନୁଷ୍ଠାନ । ଆମ ସମସ୍ତଙ୍କର ଭଲ ପାଇବା ମିଶି ଏ ଅନୁଷ୍ଠାନ କଲ୍ୟାଣକର କ୍ଷେତ୍ର ହୋଇ-ପାରିବ । ପୁଣି ଆମ ସମସ୍ତଙ୍କର ଘୃଣା ମିଶି ଅନିଷ୍ଟକର ମଧ୍ୟ ହୋଇପାରିବ । ଆମର ଆଗ୍ରହ ମହତ୍ ହୋଇପାରିଲେ ଆମର କାମ ମହତ୍ ହୋଇପାରିବ । ଆଉ ଆମର କର୍ମ ମହତ୍ ହେଲେ ଆମର କର୍ମକ୍ଷେତ୍ର ମଧ୍ୟ ମହତ୍ ହୋଇ-ପାରିବ । କାମ ବା କର୍ମକ୍ଷେତ୍ର ମଣିଷକୁ ମହତ୍ ବା ଅମହତ୍ କରେ-ନାହିଁ । ଓଲଟି ମଣିଷ ତା'ର ଆପଣାର ମହତ୍ ବା ଅମହତ୍ ପଣିଆ ଦ୍ୱାରା ତାର କାମ ଓ କର୍ମକ୍ଷେତ୍ରକୁ ମହତ୍ ବା ଅମହତ୍ କରିପକାଏ । ପୁଣି ଯେଉଁ ଶିକ୍ଷାଧର୍ମକୁ ମୂଳଦୁଆ କରି ଧରି ଆମର ଏ ଶିକ୍ଷାଳୟର ପ୍ରତିଷ୍ଠା ହୋଇଛି, ସେଠି କର୍ମକ୍ଷେତ୍ର ଓ ଜ୍ଞାନକ୍ଷେତ୍ର ଦୁଇଟା ଅଲଗା ଅଲଗା ଜିନିଷ ନୁହେଁ । ଆମର କାମ ଯେତିକି ଶୁଦ୍ଧ ହେବ, ଆମର ଜ୍ଞାନପିପାସା ସେତିକି ଶୁଦ୍ଧ ହୋଇପାରିବ । ଆମର ଆଚରଣ ଯେତିକି ପୂର୍ଣ୍ଣ ବା ଅପୂର୍ଣ୍ଣ ରହିଥିବ, ଆମର ଆଗ୍ରହ ଓ ଜିଜ୍ଞାସା ସେତିକି

ଉଚ୍ଚ ବା ନୀଚକୁ ଯାଉଥିବ । କର୍ମ ଓ ଜ୍ଞାନ ଭିତରେ ଆଚରଣ ଓ ବିଗ୍ରହ ଭିତରେ ସେହିପରି ବେଶି ବନ୍ଧନ ସବୁବେଳେ ରହିଥିବା ଦରକାର । ନ ହେଲେ ଜୀବନର ସୁଷମ ସୁସ୍ଥ ବିକାଶ ସମ୍ଭବ ହୋଇପାରିବ ନାହିଁ । ଆମର କର୍ମସାଧନା ଆମକୁ ଜ୍ଞାନସାଧନାର ନବ ନବ କ୍ଷେତ୍ରରେ ଆଣି ଅବତୀର୍ଣ୍ଣ କରାଇଦେବ । ପୁଣି ଆମର ଜ୍ଞାନସାଧନା ଆମକୁ ନବ ନବ କର୍ମର ସାଧନା ଲାଗି ପ୍ରେରଣା ଦେଇ ଯାଉଥିବ । କର୍ମକ୍ଷେତ୍ରରେ ଅଶୁଦ୍ଧ 'ବା ଅଳସୁଆ ହେଲେ ଆମର ଲବ୍ଧ ଜ୍ଞାନ ମଧ୍ୟ ଅଶୁଦ୍ଧ ଓ ଅଳସୁଆ ହୋଇଯିବ । ଆଉ ଆମର ଜ୍ଞାନ ଆମକୁ ଉଜ୍ଜ୍ୱଳ କରାଇ ନ ପାରିଲେ ହଜାର କର୍ମ କରି ମଧ୍ୟ ଆମେ ଘୋର କ୍ଲାନ୍ତିର ତମସା ଭିତରେ ପଡ଼ି ରହିଥିବା । କେବଳ କର୍ମ ବା କେବଳ ଜ୍ଞାନର ମାନଦଣ୍ଡରେ ଶିକ୍ଷା ବା ସଭ୍ୟତାର ମାପ କେହି କରିପାରିବ ନାହିଁ । ଶୁଦ୍ଧି ହେଉଛି ସବୁ ଅର୍ଜନର ଅସଲ ମାନଦଣ୍ଡ । ପବିତ୍ର କର୍ମ ପବିତ୍ର ଜ୍ଞାନର ପରିପୂରକ । ଠିକ୍ ସେହିପରି ପବିତ୍ର ଜ୍ଞାନ ମଧ୍ୟ ପବିତ୍ର କର୍ମର ପରିପୂରକ ।

ଆମର ଭିତରୁ କାଲି ତିନି ଜଣ ଏଠାରୁ ଚାଲିଗଲେ । କୌଣସି ଏକ ଅସାମାଜିକ ଦୋଷ କରିଥିବାରୁ ଆମ ସମାଜ ତାଙ୍କୁ ଅନ୍ୟତ୍ର ବିଦାୟ ଦେଲା । କିନ୍ତୁ ଯାଇଥିବା ସେମାନଙ୍କ ଭିତରେ ଯେ ଖାଲି ଖରାପଗୁଡ଼ାକ ପୂରିରହିଥିଲା, ସେପରି ବିଶ୍ୱାସ କରିବାର ଭ୍ରମ ଆମେ କଦାପି କରିବା ନାହିଁ । ସେମାନଙ୍କ ଭିତରେ ମଧ୍ୟ ଭଲ ରହିଛି, ଶୁଦ୍ଧ ସ୍ନେହ ସଂପର୍କର ସମ୍ଭାବନା ସେମାନଙ୍କ ଭିତରେ ମଧ୍ୟ ରହିଛି । ହୁଏତ କୌଣସି ଏକ ଦୁଷ୍ଟ ଆଗ୍ରହର ଅର୍ଗଳି ସେମାନଙ୍କ ଦୁଆରେ ପଡ଼ିଛି । ସେମାନେ ଆପଣାର ନିର୍ମଳ ହୃଦୟର ପରିଚୟ ଏପର୍ଯ୍ୟନ୍ତ ପାଇନାହାନ୍ତି । ହୁଏତ କୌଣସି ଏକ ଶୁଭ ମୁହୂର୍ତ୍ତରେ ସେମାନେ ସେ ପରିଚୟ ପାଇବେ । ସେମାନଙ୍କ ଜୀବନର ସମସ୍ତ ମିଛି-ମୂଲଦୁଆଗୁଡ଼ାକ ଭୁଷୁଡ଼ି ପଡ଼ିବ । ସେମାନଙ୍କର ଦୁଆର ଫିଟିଯିବ, ସେମାନଙ୍କର ଜୀବନରେ ସେଦିନ ସୂର୍ଯ୍ୟୋଦୟ ହେବ । ସେମାନେ ମଧ୍ୟ ଦିନେ ଏ ସଂସାରରେ ନିର୍ଭୀକ ମଣିଷ ହୋଇ ବାହାରିବେ । ସେମାନଙ୍କ ପ୍ରତି କୌଣସି ପ୍ରକାର ମନ୍ଦ ଭାବନା ନ ରଖି ଆଜି ଆମେ ଏହାହିଁ କାମନା କରିବା ।

ଏ ନିନ୍ଦାର କଥା କେବଳ ସେହିମାନଙ୍କର ଲଜ୍ଜା ନୁହେଁ, ଏ ଆମ୍ଭ ସମସ୍ତଙ୍କର ଲଜ୍ଜା । ଯେଉଁମାନେ ଗଲେ, କେବଳ ସେହିମାନେ ଏଠାକାର ସବୁ ଲଜ୍ଜା ମୁଣ୍ଡରେ ବୋହିନେଲେ, ଆଉ ଆମର ଲଜ୍ଜିତ ହେବାର କିଛି ନାହିଁ, ଏପରି ଭ୍ରମରେ ଆମେ କେହି ପଡ଼ିବା ନାହିଁ । ଆମର ନିଜ ବିଷୟରେ ଆମେ ସମସ୍ତେ ସଚେତ ହୋଇ ରହିବା । ଆମ ସମାଜରେ ଯେଉଁ ଦୁର୍ଭାଗାମାନେ ଧରା ପଡ଼ିଯାନ୍ତି, ସମାଜ ସେହିମାନଙ୍କ ଉପରେ ସମସ୍ତ ଅପବାଦର ମାଠିଆ ଢାଳିଦେଇ ନିଶ୍ଚିନ୍ତ ହୋଇଯାଏ । ଆମେ ଚରିତହୀନ ସମାଜର ସେ ଭୁଲରେ ଛନ୍ଦି ହୋଇଯିବା ନାହିଁ । ଆଜି ଆମେ ସମସ୍ତେ ଅନୁତାପ କରିବା, ସମସ୍ତେ ଆମେ ଆମ ଅପରାଧର ମାର୍ଜନା ଲାଗି ଭଗବାନଙ୍କଠାରେ ପ୍ରାର୍ଥନା କରିବା । ଆମ ଜୀବନର ପୋଷକ ପାଖରେ ଆମେ ଜୀବନର ପାତ୍ରଟିକୁ ଉନ୍ମୁକ୍ତକରି ରଖିବା । କୌଣସି ପ୍ରକାର ମୋହ ବା ଭୟର ହିରଣ୍ମୟ ପାତ୍ର ସେହି ପାତ୍ରଟିକୁ ଘୋଡ଼ାଇ ରଖିବ ନାହିଁ । ଆମ ସବୁରି ଭିତରେ ଯେଉଁ କୁପ୍ରବୃତ୍ତି ଲୁଚି ରହିଥିଲା, ଆମକୁ ନାନା ମିଥ୍ୟା ଗୌରବର ପ୍ରଲୋଭନ ଦେଖାଇ ଭୁଲାଇ ରଖିଥିଲା, କାଲିକାର ଘଟଣା ତାହାରି ଉପରେ ଶକ୍ତ ଆଘାତ କରିଛି । ଆମ ପ୍ରତ୍ୟେକଙ୍କର ବିବେକର ଆଘାତ ଏ । ଏହି ଆଘାତକୁ ଆମେ ସ୍ୱୀକାର କରିବା, ଏହି ଆଘାତର ଶାସ୍ତିକୁ ମଙ୍ଗଳମୟ ଜୀବନ ବିଧାତାର ନିର୍ଦ୍ଦେଶ ପରି ମାନିନେବା । ଏହା ନିଶ୍ଚିନ୍ତହୋଇ ବସିବାର ବେଳ ନୁହେଁ । ଏହା ନିଜ ଭାବନାର ବେଳ । ମିଥ୍ୟାର ତାଳପତ୍ର ଛାଡ଼ି ଜୀବନର ସତ୍ୟ ମୂଳକୁ ଆଶ୍ରୟକରି ବାଟ ଚାଲିବାର ସଂକଳ୍ପ ଆମେ ସମସ୍ତେ ନେବା । ଆମ ଦୃଷ୍ଟିରେ ଅନେକ କାଳିମାର ପରଦା ଘୋଟିରହିଛି । ସେହି ପରଦାକୁ ଆମେ ଆଜି ଅପସରାଇ ଦେବା । ଆପଣାକୁ ଆମେ ଶୁଦ୍ଧକରି ଦେଖିବା । ଅପରକୁ ମଧ୍ୟ ଶୁଦ୍ଧ ଆଖିରେ ଦେଖିବା । ଆମ ଦୃଷ୍ଟିରୁ ସମସ୍ତ କାଳିମା ଧୋଇଯିବ । ଆମେ ଯାହା ଦେଖିବା ତାକୁ ଆଲୋକମୟ ରୂପେ ଦେଖିବା । ଏହିପରି ଦିନ ଯେଉଁ ଦିନ ସମ୍ଭବ ହୋଇପାରିବ, ସେହିଦିନ ଆମେ ସଚ୍ଚା ବିଦ୍ୟାର୍ଥୀ ବୋଲାଇ ପାରିବା । ସେଦିନ ଏଠାକାର ଅନୁଷ୍ଠାନଟିକୁ ଆମେ ଯଥାର୍ଥ ବିଦ୍ୟାଳୟ ବୋଲି କହିପାରିବା । ଏ ବିଦ୍ୟାଳୟରେ ସେହିପରି ଏକ ସଂସାର ଗଢ଼ିବାକୁ ଆମର

ଆଜିକାର ସାଧନାକୁ ଆମେ ଉତ୍ସର୍ଗ କରି ରଖିବା । ଆମର ଶୁଦ୍ଧ ଆଗ୍ରହ ଓ ଶୁଦ୍ଧ ଜୀବନର ସାଧନା ହିଁ ଏକ ଶୁଦ୍ଧ ବିଦ୍ୟାଳୟର ସ୍ଥାପନାରେ ସାହାଯ୍ୟ କରିପାରିବ ।

୧୪ । ୧୬ । ୫୫

ଆମ ଦେଶର ପୁରୁଣା କଥା ଶୁଣିଲେ ଆମର ଛାତି ଫୁଲିଉଠେ । ଆମ ଦେଶର ସଂସ୍କୃତି, ସଭ୍ୟତା ଓ ଜୀବନ ପୃଥିବୀର ସବୁ ଦେଶର ସଂସ୍କୃତି, ସଭ୍ୟତା ଓ ଜୀବନଠାରୁ ଅଧିକ ଉନ୍ନତ ଥିଲା । କେଉଁ ବହିରୁ ଏକଥା ପଢ଼ିଲେ ବା କେଉଁ ବକ୍ତାଙ୍କଠାରୁ ଏକଥା ଶୁଣିଲେ ଆମେ କୋଟିନିଧି ପାଇଲା ପରି ମନେ କରୁ । ଆମ ଓଡ଼ିଶାରେ ମଧ୍ୟ ଏହି ଚିନ୍ତାର ଗ୍ରନ୍ଥ ଅନେକ ଜାଗାରେ ଦେଖିବାକୁ ମିଳେ । ଆମ ଓଡ଼ିଶାର ରାଜାମାନେ ଏମିତି ନା ସେମିତି ଥିଲେ, ଏତେ ରାଜ୍ୟ ଜୟକରି ଆମ ରାଜ୍ୟର ସୀମାକୁ ଅମୁକ ପର୍ବତଠାରୁ ଅମୁକ ନଦୀ ପର୍ଯ୍ୟନ୍ତ ବଢ଼ାଇ ଦେଇଥିଲେ, ଆମର ସଂସ୍କୃତି ଦେଶପ୍ରସିଦ୍ଧ ଥିଲା, ଆମର ସାହିତ୍ୟ ପରି ପୃଥିବୀରେ ଆଉ ସାହିତ୍ୟ ନାହିଁ, ଏହିପରି ଅନେକ ପ୍ରକାର ଗୁଣବଚନ ଆମ ଓଡ଼ିଶା ବିଷୟରେ ଆମେ କହୁ ଆଉ ଶୁଣୁ । ଏସବୁରେ ଆମେ ଭାରି ଖୁସି ହୋଇଯାଉ । କାଠଯୋଡ଼ିର ପଥରବନ୍ଧ ବା ବାରବାଟୀ କିଲ୍ଲାର ଭଗ୍ନାବଶେଷ ଦେଖି ଆମର ମନ ଗୌରବରେ ଫୁଲିଉଠେ । ଆମର ଏ ଜଙ୍ଗଲ-ସଂସାରରେ ମଧ୍ୟ ଏହିପରି ଏକ ଗୌରବ ଅନୁଭବ କରିବାର ଯଥେଷ୍ଟ ସୂଚନା ମିଳେ । ଦୋଳ, ଦଶହରା ଓ ଦୀପାବଳୀ ପ୍ରଭୃତି ଉତ୍ସବ ପାଳନ କରିବା ସମୟରେ ଆମେ ଆମର ପୂର୍ବପୁରୁଷଙ୍କର ଗୁଣକୀର୍ତ୍ତନ କରୁ । ସେମାନେ ଯେ ଶିକ୍ଷା ଓ ସଭ୍ୟତାର ଚରମ ସୀମାକୁ ଉଠିଯାଇଥିଲେ, ଏକଥା ମଧ୍ୟ କହିପକାଉ । ପୂର୍ବକାଳରୁ ଚଳି ଆସୁଥିବା ଛୋଟିଆ ଛୋଟିଆ ରୀତି ଓ ଆଚାରର ବୈଜ୍ଞାନିକ ଓ ଦାର୍ଶନିକ ବ୍ୟାଖ୍ୟା କରିବାରେ ଆମେ ଭାରି ଆନନ୍ଦ ପାଉ । ସେଦିନ ତ ଆମର ଜଣେ ଭାଇ ଖୁବ୍ ନିଷ୍ଠାପର ଭାବରେ କହିଗଲେ ଯେ ବାୟୁମଣ୍ଡଳରୁ ଜୀବାଣୁ ନାଶ କରିଦେବା ଉଦ୍ଦେଶ୍ୟରେ ଆମର ବୈଜ୍ଞାନିକ ପୂର୍ବପୁରୁଷମାନେ

ଦିଆଯାଇ ଉଆଁସ ରାତିରେ ବାଣ ମାରିବାର ବ୍ୟବସ୍ଥା କରିଛନ୍ତି । ଏମିତି କେତେ ମନଗଢ଼ା ପ୍ରଶଂସା କଥା ଆମେ ବହିରେ ପଢୁଛୁ । ସୁଯୋଗ ପାଇଲେ ଆମେ ମଧ୍ୟ କହୁଛୁ ।

ବହିଲେଖିବା ବା ବକ୍ତୃତା ଦେଇ ଆମ ସଂସ୍କୃତିର ପ୍ରଶଂସା କରିବାକୁ ମୁଁ ସଂସ୍କୃତିର ଅତି ନିକୃଷ୍ଟ ସେବା ବୋଲି କହିବି । ଆମ ସଂସ୍କୃତିର ଯେଉଁଠି ଯାହା ଭଲ ଜିନିଷ ଅଛି, ସେ ସମସ୍ତ ଆମ ଜୀବନର ଅଂଶ ହୋଇ ରହିବା ଉଚିତ । ଆମର ଜୀବନ ହିଁ ଆମ ସଂସ୍କୃତିର ସର୍ବଶ୍ରେଷ୍ଠ ପ୍ରତିନିଧି ହେବ । କିନ୍ତୁ ଆମର ଜୀବନ ଆଜି କି ନିକୃଷ୍ଟ ସ୍ତରରେ ପଡ଼ିଛି ! ଆମ ଦେଶର ଧର୍ମରେ ଅନେକ ବଡ଼ ବଡ଼ କଥା ରହିଛି । ମନୁଷ୍ୟ ଜୀବନକୁ ନେଇ ଅତି ଉଚ୍ଚ-କଳ୍ପନାମାନ ରହିଛି । ଆମର ଶରୀର ଯେପରି ଆମ ମନର ଓ ବିବେକର ଅଧୀନ ହୋଇପାରିବ, ସେଥିଲାଗି ଆମର ସମାଜ ଶାସ୍ତ୍ରରେ ନାନା ପ୍ରକାର ଆଚାରର ବ୍ୟବସ୍ଥା ରହିଛି । କିନ୍ତୁ ଆମର ତେଣିକି ଦୃଷ୍ଟି ନାହିଁ । ଆମର ଜୀବନରୁ ଆମର ସଂସ୍କୃତି କୁଆଡ଼େ ମରି ଝଡ଼ିଗଲାଣି । ମୁଁ ଗୋଟାଏ ଅତି ସାଧାରଣ ଉଦାହରଣ ଦେବି । ପ୍ରତ୍ୟେକ ଦିନ ସକାଳେ ପରିଷ୍କାର ଭାବରେ ସ୍ନାନ କରିବାକୁ ଆମର ପ୍ରାଚୀନ ଶାସ୍ତ୍ରକାରମାନେ ଏକ ପବିତ୍ର ଆଚାର ବୋଲି ମାନି ଆସୁଥିଲେ । ପ୍ରାୟ ପ୍ରତ୍ୟେକ ଧର୍ମଶାସ୍ତ୍ରରେ ଏହି ସ୍ନାନ ଓ ଶୌଚର ବର୍ଣ୍ଣନା କରାଯାଇଛି । କିନ୍ତୁ ଆମେ କେତେ ଜଣ ସେକଥା ମାନୁଛୁ ? ଖରା ନ ପଡ଼ିଲେ ପାଣିରେ ପଶିବାକୁ ଆମକୁ ଡର ଲାଗୁଛି । ଅତି ବାଧ୍ୟ ହେଲା ପରି କର୍ତ୍ତବ୍ୟ ଅନୁରୋଧରେ ଆମର ସ୍ନାନ ହେଉଛି । ସକାଳୁ ଉଠିବାର ପବିତ୍ର ଅଭ୍ୟାସଟାକୁ ମଧ୍ୟ ଆମେ ସେମିତି ବାଧ୍ୟ ହୋଇ କରୁଛୁ । ଦୁଇଓଳି ଭଗବାନଙ୍କର ନାମ ନେବାଟା ମଧ୍ୟ ଅନେକ ଜାଗାରୁ ଉଠିଗଲାଣି । ହୁଏତ ସ୍କୁଲ ପିଲାଙ୍କ ଛଡ଼ା ସାଧାରଣତଃ ଏକଥା କେହି କରୁ ନାହାନ୍ତି । ସ୍କୁଲପିଲାଏ ବି ପ୍ରଧାନତଃ ବାଧ୍ୟହୋଇ ଏକଥା କରୁଛନ୍ତି । ଏଣେ ଆମର ଶରୀର ଅଳସୁଆ ହେବାକୁ ପୂର୍ଣ୍ଣ ପ୍ରଶ୍ରୟ ପାଇଛି । ତା'ପରେ ସଂସ୍କୃତି ଓ ଶିକ୍ଷାରୁ ଯେତିକି ଆଚରଣ ଭିତରେ ପକାଇହେବ, ଆମେ ସେତିକି କରିବା । ଆମ ସଂସ୍କୃତିରେ ଆଗ କାଳରେ ଯାହା ଥିଲା ପଛକେ, ବର୍ତ୍ତମାନ ଆଳସ୍ୟରୁ ଆମେ ସେ ସଂସ୍କୃତିର

ଉତ୍ତରାଧିକାର ହରାଇବାକୁ ବସିଲୁଣି । ଜୀବନରୁ ବିଦାୟ ନେଇ ଆମ ସଂସ୍କୃତି ଆମ ବିଳାସ ବ୍ୟସନର ଅବଶେଷମାତ୍ର ହୋଇ ରହିଛି । ସାଂସ୍କୃତିକ ବୁଦ୍ଧି-ବିଳାସରେ ଆମେ ଭାରି ଆତ୍ମତୃପ୍ତି ଅନୁଭବ କରୁଛୁ । ଓଡ଼ିଆ ସାହିତ୍ୟର ଅଧିକ କବିତା ହୁଏତ ଆଜି ଏହି ଆତ୍ମତୃପ୍ତିଟାର ପ୍ରକାଶରେ ହିଁ ସୀମାବଦ୍ଧ ରହିଛି । ଏହିପରି ଗୋଟାଏ ଆତ୍ମତୃପ୍ତିର ମୋହ ନେଇ ଆମେ ଆଉମାନଙ୍କ ସହିତ କୁସ୍ତିଲଢ଼ି ବାହାରିପଡ଼ୁଛୁ । ଓଡ଼ିଆ ସହିତ ବଙ୍ଗାଳୀଙ୍କର ଯୁଦ୍ଧ ହେଉଛି ବା ତେଲୁଗୁ ସହିତ ତାମିଲଙ୍କର ଯୁଦ୍ଧ ହେଉଛି । ଆମର ଜୀବନ-କ୍ଷେତ୍ର ଛାଡ଼ି ଆମର ସଂସ୍କୃତି ଏହିପରି ଖଣ୍ଡଯୁଦ୍ଧର କ୍ଷେତ୍ରରେ ସୁରକ୍ଷିତ ହୋଇ ରହିଲାଣି ।

ଇଉରୋପରେ ପ୍ରାୟ ଶହେ ବର୍ଷ ତଳେ ଏହିପରି ଗୋଟାଏ ଉତ୍ତେଜିତ ଜାତୀୟତାର ଯୁଗ ଆସିଥିଲା । ସେତେବେଳେ ପ୍ରତ୍ୟେକେ ଏମିତି ଆପଣା ଆପଣାର ସ୍ୱତନ୍ତ୍ର ସଂସ୍କୃତିର ନାରା ଲଗାଇ କୁସ୍ତି ଲଢ଼ିବାକୁ ବାହାରି ପଡ଼ିଥିଲେ । ଏହି କୁସ୍ତି ଲାଗି କବିର କବିତା ଲେଖା ଯାଉଥିଲା, ଦାର୍ଶନିକ ଦର୍ଶନ ଲେଖୁଥିଲା, ଐତିହାସିକ ଇତିହାସର ନୂଆ ତଥ୍ୟ ଖୋଜି ବୁଲୁଥିଲା । ଏହି ସଂକୀର୍ଣ୍ଣ ଜାତୀୟତାର ସଂସ୍କୃତିକୁ ଆମେ ସେହି ଇଉରୋପରୁ ନକଲ କରିଛୁ । ଆଜି ମଧ୍ୟ ସେହି ନକଲ କରିବାର ଦୁର୍ବୁଦ୍ଧି ଆମର ଯାଇ ନାହିଁ । ସେହି ଦୁର୍ବୁଦ୍ଧିରେ ପଡ଼ି ଓଡ଼ିଶାରେ ଆମେ ଓଡ଼ିଆର ସବୁ କଥାକୁ ବଡ଼ ଓ ଭଲ ବୋଲି କହୁଛୁ । ତେଣେ ବିହାରୀମାନେ ବିହାରର ସବୁ କଥାକୁ ବଡ଼ ଓ ଭଲ ବୋଲି କହୁଛନ୍ତି । ବହି, ବକ୍ତୃତା ଆଉ ବାଗ୍ମିତାରେ ଆମ ଭିତରେ ଖଣ୍ଡଯୁଦ୍ଧ ଲାଗିଛି । ଅଥଚ ଓଡ଼ିଶାର ସାଂସ୍କୃତିକ ଇତିହାସରେ ଯେଉଁସବୁ ବାହାର ଓ ଆଭ୍ୟନ୍ତରର ଚିରନ୍ତନ ମହତ୍ତ୍ୱ ରହିଛି, ଓଡ଼ିଆ ହୋଇ ମଧ୍ୟ ସେସବୁ ଆଭ୍ୟନ୍ତର ଓ ବାହାର ଆମ ଜୀବନକୁ ସ୍ପର୍ଶ କରି ପାରୁନାହିଁ । ସଂସ୍କୃତିକୁ ଜୀବନସିଦ୍ଧ କରିବାର ସମସ୍ତ ଦାୟିତ୍ୱକୁ ଆମେ ଏଡ଼ାଉଛୁ । ଏଣିକି ସେ ପୁରୁଣା ଆଳସ୍ୟ ଓ ପୁରୁଣା ପଳାୟନରୀତି ଆଉ ଶୋଭା ପାଇବ ନାହିଁ । ଯିଏ ଖାଲି ବକ୍ତୃତାରେ ତା'ର ସଂସ୍କୃତିକୁ ବଡ଼ ବୋଲି କହି ଏଣେ ଜୀବନକ୍ଷେତ୍ରରେ ତା'ର ସଂସ୍କୃତିଠାରୁ ବହୁଦୂରରେ ପଡ଼ିରହିଛି, ତାକୁ ତା'ର ସଂସ୍କୃତିର ଅତି ନିକୃଷ୍ଟ ପ୍ରତିନିଧି ବୋଲି କହିବାକୁ ହେବ । ଆମର ସଂସ୍କୃତିପ୍ରୀତି ଆମକୁ

ଅଳସୁଆ ନ କରି ଆମକୁ ଶୁଦ୍ଧତର କରୁ, ଉଜ୍ଜ୍ୱଳତର କରୁ। ଆମ ଭିତରର ମଣିଷ-ପଣିଆକୁ ଅଧିକ ସାର୍ଥକ ଭାବରେ ପ୍ରକଟିତ କରିଦେଉ । 'ଇଉରୋପର ସଂସ୍କୃତିରେ କ'ଣ ଅନେକ ଭଲ କଥା ନାହିଁ ?' ଆଲ୍‌ବର୍ଟ ସ୍ୱାଇଟ୍‌ଜର୍‌ଙ୍କୁ ଥରେ ଏହିପରି ଏକ ପ୍ରଶ୍ନ କରାଯାଇଥିଲା। ସେ ତୁରନ୍ତ ଉତ୍ତର ଦେଲେ, 'ହଁ, ଆମ ସଂସ୍କୃତିରେ ଅନେକ ଭଲକଥା ନିଶ୍ଚୟ ଅଛି । କିନ୍ତୁ ସେସବୁକୁ ଜୀବନରେ ପକାଇବା କାମଟା ହିଁ ଆମର ବାକୀ ରହିଯାଇଛି । ଭାରତ କହି ବା ଓଡ଼ିଶା କହି ଆମର ସଂସ୍କୃତି ବିଷୟରେ ମଧ୍ୟ ଠିକ୍ ସେହିପରି ଉତ୍ତର ଦିଆଯାଇପାରିବ। ଆମର ସଂସ୍କୃତି ଓ ଆମର ଜୀବନର ସଂଯୋଗ କରିବା ଏପର୍ଯ୍ୟନ୍ତ ବାକୀ ରହିଯାଇଛି । ଆମେ ଅତି ଅଳସୁଆ ହୋଇ ପଡ଼ିଲୁଣି, ତେଣୁ ସଂସ୍କୃତିର ବୋଝଟାକୁ ମୁଣ୍ଡ ଉପରେ ଲଦି ଆମେ ବେଶ୍ ଗୌରବ ପାଉଛୁ । କିନ୍ତୁ ସଂସ୍କୃତି ଆମ ଜୀବନରେ କୌଣସି ପ୍ରାଣ ଭରାଇ ଦେଇପାରୁ ନାହିଁ । ଶୀତ ସକାଳର ଅଳସୁଆ ମଠୁଆ ମଣିଷ ପରି ଆଜି ବି ଆମେ ଆମ ସଂସ୍କୃତି ମୋହରେ ତନ୍ଦ୍ରାପରସ୍ତ ଶେଯ ଘୋଡ଼ିହୋଇ ଶୋଇଛୁ ।

୧୭।୧୦।୫୫

ଆମ ସମାଜରେ ହଠାତ୍ ଗୋଟାଏ ନିୟମ କରାଗଲେ ଆମକୁ ବୋଝ ପରି ଲାଗୁଛି । ଆମର ସ୍ୱାଧୀନତାକୁ ଅପହରଣ କରି ନେଇଯିବା ଲାଗି ଆମ ଲାଗି ନିୟମର ନାନା ଷଡ଼ଯନ୍ତ୍ର ଚାଲିଛି ; ହୁଏତ ଆମ ଭିତରୁ ଏପରି ଅନେକ ବିଚାରୁ କରୁଛନ୍ତି । ଆମର ଏଠି କୌଣସି ନିୟମ ନ ରହୁ, ଏହି କଥା ବୋଧହୁଏ ଅନେକ ଚାହାନ୍ତି । ମୁଁ ମଧ୍ୟ ଠିକ୍ ସେଇ କଥା ଚାହେଁ । ସେହି ଆଦର୍ଶ ସାମାଜିକ ସ୍ଥିତିକୁ ଆଦର୍ଶ କରି ଧରି ଆମର ଏ ଅନୁଷ୍ଠାନ ଗଢ଼ା ହୋଇଛି । କିନ୍ତୁ ଆମେ ସବୁ ନିୟମ ଉଠାଇଦେବାର ଅର୍ଥ ନୁହେଁ ଯେ ଆମେ ସବୁ ଆପଣା ଆପଣା ଇଚ୍ଛାରେ ଏଠି ଚାଲିବା । ଆମର ଏଠି ଆମେ ପଚାଶ ଜଣ ଅଛୁ । ଯଦି ପଚାଶ ଜଣଙ୍କର ପଚାଶ ରକମ ଇଚ୍ଛା ଚାଲେ, ପଚାଶ ରକମର ଆଳସ୍ୟର ଆଶ୍ରୟ ନେଇ ଯଦି ଆମେ ପ୍ରତ୍ୟେକ ଆପଣା ଇଚ୍ଛାରେ ଏଠି ଚଳି,

କଟାଇବାକୁ ଆରମ୍ଭ କରିଦେଉ, ତେବେ ଆମର ଏ ସମାଜ ପଶୁସମାଜ ପରି ହୋଇଯିବ । ଆମେ ସକାଳୁ ଉଠି ପ୍ରାର୍ଥନା କରି ବସିବା ନାହିଁ, ସକାଳୁ ଶୌଚାଦି ନିୟମ ପାଳନ କରିବା ନାହିଁ, ଆପଣାର ଶରୀରଟାକୁ ପୂରା ଦମ୍‌ରେ ଆମ କାମରେ ଲଗାଇ ପାରିବା ନାହିଁ, ଅବସର ପାଇଲେ ପୃଷ୍ଠାଏ ବହି ପଢ଼ିବା ନାହିଁ, କି ଖିଏ ସୂତା କାଟିବା ନାହିଁ । ଅଥଚ କ୍ଷେତ୍ରରେ ଅକ୍ଷେତ୍ରରେ ଆମେ ଯା' ତା' ଉପରେ ତୋଡ଼ ଦେଖାଇବା । ସମସ୍ତେ ଆପଣା ଆପଣା କାମରେ ଲାଗି ପଡ଼ିଥିବା ସମୟରେ ଗୋଟାଏ ଅଳସୁଆଦଳ ଗଢ଼ି ଆମେ ବିଛଣାରେ ପଡ଼ିବା, କାନ୍ଥକୁ ଆଉଜି ବସି ମଜାଗପ କରୁଥିବା । ଏସବୁ ଚାଲିଥିବା ପର୍ଯ୍ୟନ୍ତ ଆମେ ଗୋଟାଏ ସମାଜରେ ରହିଛୁ ବୋଲି କିଏ କାହିଁକି କହିବ ? ସମାଜର ଇଚ୍ଛା, ମୋର ଇଚ୍ଛା ବା ଆଉ କାହାର ଇଚ୍ଛା ନୁହେଁ । ଏହା ସମସ୍ତଙ୍କର ଇଚ୍ଛା, ସମସ୍ତଙ୍କର ବିବେକର ଇଚ୍ଛା । ବିଦ୍ୟାର୍ଥୀ ଜୀବନର ବିବେକ ଆମକୁ ଯେପରି ଜୀବନ-ଯାପନ ଲାଗି ପରାମର୍ଶ ଦେବ, ସେହିପରି ଜୀବନ-ଯାପନ ଲାଗି ଯେଉଁସବୁ ନିୟମ ଦରକାର, ସେସବୁ ନିୟମକୁ ଆମେ ଆପେ ସ୍ୱୀକାର କରିନେବା । ଅତି ଖୁସି ହୋଇ ଆମେ ଆମର ଆବଶ୍ୟକ ଶୃଙ୍ଖଳା ମାନିନେବା ।

ସାଧନା ପଥର ପ୍ରତ୍ୟେକ ପଥିକ ଲାଗି ସାଧନାର ଶୃଙ୍ଖଳା ନିଶ୍ଚୟ ରହିଛି । ଅବଶ୍ୟ ଆମେ ଯଦି ଶିକ୍ଷାକୁ ଗୋଟିଏ ସାଧନା ପରି ଗ୍ରହଣ କରୁ ନ ଥାଉ, ତେବେ ତାହା ଏକ ସ୍ୱତନ୍ତ୍ର କଥା ହେବ । ଉପଭୋଗ ବିବେଚନାହୀନ ଉପଭୋଗକୁ ଯିଏ ଏଠି ତା'ର ମନ ଆନନ୍ଦର ପ୍ରଧାନ ସରଞ୍ଜାମ କରି ଧରିନେଇଛି, ତାକୁ ତ ଯେ କୌଣସି ପ୍ରକାରର ନିୟମ ଗହେଇବ । ସେପରି ମଣିଷ ଟିକିଏ କୌଣସି ଶୃଙ୍ଖଳାରେ ସନ୍ତ୍ରସ୍ତ ହୋଇଉଠିବ । କିନ୍ତୁ ଏ ତ୍ରାସ କେବଳ ଅଳସୁଆ ମନର ତ୍ରାସ । ଏ ସଂସାରରେ ଯିଏ କେବଳ ଜୀବନର ବ୍ୟୟ ଓ ଅପଚୟ କରିବାକୁ ଆସିଛି, ଜୀବନକୁ ସୁନ୍ଦରତର କରିବାକୁ ଆସି ନାହିଁ, ତାକୁ ଯେ କୌଣସି ଦାୟିତ୍ୱ ବା କର୍ତ୍ତବ୍ୟ କେବଳ ଗୋଟାଏ ତ୍ରାସ ପରି ମନେ ହେବ । କୌଣସି ପ୍ରକାର ଶୃଙ୍ଖଳାର କଥା ପଡ଼ିଲେ ପ୍ରଥମେ ସେ ସଂସାରଯାକର ଆପତ୍ତି ଉଠାଇବ । ମୁଁ କହିବି, ଏପରି ଲୋକ ବେଶି ଆରାମରେ ରହି ପାରିବ ।

ସମ୍ବଳ ଥିଲେ ସେ ନାନା ସୁଖର ଉପଭୋଗ କରି ପାରିବ । କିନ୍ତୁ ସେ କୌଣସି କ୍ଷେତ୍ରରେ କଦାପି ଶିକ୍ଷାର୍ଥୀ ହୋଇ ପାରିବ ନାହିଁ ।

କାହାକୁ ଖୁସି କରିବା ଲାଗି ବା କେଉଁ ହାକିମର ଫରମାସ ତୁଲାଇବା ଲାଗି ଆମେ ଏସବୁ ନିୟମ କରିବା ନାହିଁ । ଆମ ନିୟମ ଆମକୁ କୌଣସି ଦୁଷ୍ଟ ନିୟାମକର ଦାସ କରିଦେବ ନାହିଁ । ଆମର ନିୟମ ଆମ ଆପଣା ଲାଗି ହେବ । ଆମର ଶୃଙ୍ଖଳା ମୂଳତଃ ଆତ୍ମଶୃଙ୍ଖଳା ହେବ । ମଝିରେ ମଝିରେ ଯେଉଁସବୁ ଆଳସ୍ୟ ଆମକୁ ଭୋଳ କରି ରଖୁଛି, ସେହିସବୁ ଆଳସ୍ୟରୁ ନିଜକୁ ସାବଧାନ କରି ରଖିବାକୁ ଆମେ ଆମ ନିୟମର ଅନୁବର୍ତ୍ତୀ ହୋଇ ରହିବା । ଆମର ଦୈନନ୍ଦିନ ଜୀବନକୁ ଆମେ କେତେଟା ଶୁଦ୍ଧ ଶୃଙ୍ଖଳାର ଅଭ୍ୟାସରେ ପକାଇବା । ଆମର ନିୟମ ଆମର ଜଡ଼ତା ନାଶ କରିବା ଲାଗି ଆମକୁ ଅଧିକ ବଳ ଦେବ । ସରସ୍ୱତୀଙ୍କୁ 'ନିଃଶେଷଜାଡ଼୍ୟାପହା' ବୋଲି ବନ୍ଦନା କରାଯାଇଛି । ସବୁପ୍ରକାର ଜାଡ଼୍ୟ ବା ଜଡ଼ତାକୁ ନିଃଶେଷ ଭାବରେ ଅପହରଣ କରନ୍ତି ସରସ୍ୱତୀ । ସେହି ପୁଣି ବିଦ୍ୟାଦାତ୍ରୀ; ଅର୍ଥାତ୍ ଜଡ଼ତା ସହିତ ବିଦ୍ୟାହୀନତାର ଓ ଜଡ଼ତା ଅପହରଣ କରିବା ସହିତ ବିଦ୍ୟାର ଘନିଷ୍ଠ ସଂପର୍କ ରହିଛି । ଆମ ଭିତରେ ଜଡ଼ତା ପଶି ରହିଥିବା ପର୍ଯ୍ୟନ୍ତ ଆମେ ବିଦ୍ୟାର୍ଥୀ ବୋଲାଇପାରିବା ନାହିଁ । ଆମର ଜଡ଼ତା ବିଦ୍ୟାର୍ଥୀ ଜୀବନରେ ଆମର ପରମ ଶତ୍ରୁ । ଏଣେ ଆମେ ବିଦ୍ୟାର୍ଥୀର ଖାତାରେ ନାଁ ଲେଖାଇଥିବା, ତେଣେ ଆମର ନାନା ଜଡ଼ତାକୁ ସଯତ୍ନେ ବଢ଼ାଇ ରଖିଥିବା । ଏପରି ଜୀବନରେ କୌଣସି ଅର୍ଥ ନାହିଁ, କୌଣସି ମର୍ଯ୍ୟାଦା ନାହିଁ । ଏଣୁ ନିୟମ ରଖିବାକୁ ହିଁ ପଡ଼ିବ । ନିୟମ ବ୍ୟତୀତ ଆମର ବୃଦ୍ଧି ସମ୍ଭବ ହୋଇପାରିବ ନାହିଁ । ଯିଏ ସବୁପ୍ରକାର ନିୟମକୁ କେବଳ ଗୋଟାଏ ଅବଜ୍ଞାର ସହିତ ଦେଖୁଛି, କେବଳ ଭୟ କରି ତା'ପାଖରୁ ଦଉଡ଼ି ପଳାଇବାକୁ ବାହାରୁଛି, ସେ ବିଦ୍ୟାର୍ଥୀ ହେବାର କୌଣସି କଳା ଏପର୍ଯ୍ୟନ୍ତ ଶିଖି ନାହିଁ ବୋଲି ମୁଁ କହିବି ।

ଏମିତି ନାନା ନିୟମ ଶୃଙ୍ଖଳାରେ ଆପଣାକୁ ଆବଦ୍ଧ କରି ସାଧନା କରୁ କରୁ ଅବଶ୍ୟ ଜୀବନରେ ଏପରି ଗୋଟାଏ ସମୟ ଆସିବ, ଯେତେବେଳେ

କ ଆଉ କୌଣସି ନିୟମ ବାନ୍ଧ ବାଟ ଗୃଳବାରେ ଆବଶ୍ୟକତା ରହବ ନାହିଁ । ସାଧନାଗତ ଜୀବନ ଓ ସ୍ୱଭାବଗତ ଜୀବନରେ ସେତେବେଳେ ଆଉ କୌଣସି ଦ୍ୱନ୍ଦ୍ୱ ହିଁ ରହବ ନାହିଁ । ସେତେବେଳେ ମଣିଷର ସମସ୍ତ ସ୍ୱଭାବଗତ ଆଚରଣ ସାଧନାର ଅନୁକୂଳ ଆଚରଣ ହୋଇଯିବ । ସ୍ୱାଧୀନତା ଆଉ ଶୃଙ୍ଖଳାର ସମସ୍ତ ବବାଦ ତୁଟିଯିବ । ସମସ୍ତ ଶୃଙ୍ଖଳା ପୂର୍ଣ୍ଣତଃ ଆତ୍ମଶୃଙ୍ଖଳା ହୋଇଯିବ । ଭୋଗାପଚୟର କୌଣସି ଭ୍ରମ ସେତେବେଳେ ରହବ ନାହିଁ, ବନାଶର ସମସ୍ତ ପ୍ରବୃତ୍ତି ସେତେବେଳେ ଅପସରଯିବ । ଯୋଉଠି ନିୟମ ଭାଙ୍ଗିବାର ଭୟ ରହଛ୍ଛି, ସେଇଠି କେବଳ ନିୟମର ଶାସନ ଚଳାଇ ଆପଣାକୁ ମଣ କରବାକୁ ହୁଏ । ଯୋଉଠି ଆଳସ୍ୟର ମିଥ୍ୟା ଉତ୍ସାହରେ ଅଟକ ରହବାର ଆଶଙ୍କା ରହଛ୍ଛି, କେବଳ ସେଇଠି ନାନା ଶୃଙ୍ଖଳାର ବନ୍ଧନଦ୍ୱାରା ଆପଣାକୁ ସତତ କର୍ମଠ ଓ ଜୀବନ୍ତ କର ରଖିବାକୁ ହେବ । ସାଧନାର ବାଟରୁ ଫାଙ୍କି ଦେଇ ପଳାଉଥିବା ଚୋରକୁ ଜବତ କରବାକୁ ପ୍ରଧାନତଃ ଆମେ ନିୟମର ଆଶ୍ରୟ ନେବା । ଏହ ନିୟମଦ୍ୱାରା ଆମେ ଆମର ସ୍ୱଭାବ ବଦଳାଇବାକୁ ଚେଷ୍ଟା କରବା । ଆଉ ସ୍ୱଭାବ ବଦଳ ଗଲେ, ଜୀବନ ତା'ର ସାଧନାଗତ ଭୂମିକୁ ଚୁଲଆସିଲେ ଆମ ଉପରେ ଆଉ କୌଣସି ନିୟମ ଆଣି ଲଦବାର ପରଶ୍ରମ କରବାକୁ ପଡ଼ବ ନାହିଁ ।

ତା ୧୬ । ୧ । ୫୭

ଏଇ କେତେ ଦନ ହେଲ ଆମର ବଦ୍ୟାଳୟ ଦୁଃଟରେ ପବ ମଧ ଦେଇ ଗଢ଼ କରୁଛୁ । ଯୋଉ କାରଗର ତା'ର ହତଆର ହରାଇ ବସେ ତା'ଠାରୁ ଅଧିକ ଦୁଃଖୀ ଆମେ କାହାକୁ କହବା ? ବଦ୍ୟାଳୟର ଆରମ୍ଭ ଦନଠାରୁ ମୁଁ ଆମ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ କାରଗର କଳ୍ପନା କରଆସିଛୁ । କାରଗର ମନ ନେଇ କାରଗରର ନିର୍ମାଣ-ସ୍ୱପ୍ନ ନେଇ ଆମେ ଏଠି ସମବେତ ହୋଇଛେ । ଆମର ଆଗ୍ରହ ଆମର ବଡ଼ ହତଆର; ନିଜ ଉପରେ ବିଶ୍ୱାସ ଆମର ସବୁଠାରୁ ବଡ଼ ସାଧନ । ସେଇ ଆଗ୍ରହ ଓ ଆତ୍ମବିଶ୍ୱାସ ସାହାଯ୍ୟରେ

ଆମେ ଆମ ନିଜ ନିଜର ଜୀବନକୁ ଗୋଟିଏ ଗୋଟିଏ ସୁନ୍ଦର ଶିଳ୍ପ ସଂପଦରେ ପରିଣତ କରି ପାରିବା । ଏଇ ଚମ, ମାଂସ, ଆଉ ହାଡ଼ ଉପରେ ହସ, ଆଲୁଅ ଆଉ କାନ୍ତି ଭରିଦେଇ ପାରିବା । ସେ ଆଗ୍ରହ ହୁଏତ ଆଜି ମରି ଯାଇଛି । ଆମର ମନ ଭିତରେ ଆଉ ବିଶ୍ୱାସ ନାହିଁ । ସେଥିଲାଗି ଆମର କାମ, ପାଠ ଓ ପ୍ରାର୍ଥନାରେ ଆଉ ପ୍ରାଣ ନାହିଁ; ଆମ ଦୈନନ୍ଦିନ କାର୍ଯ୍ୟକ୍ରମରେ ଆନନ୍ଦ ନାହିଁ; ଆମ ଗୃହାଣୀରୁ ବି ସମସ୍ତ କାନ୍ତି ବହିଷ୍କୃତ ହୋଇଗଲା ପରି ଲାଗୁଛି । ସବୁ ଯେପରି ନୀରସ ଆଉ ଯାନ୍ତ୍ରିକ ହୋଇ ପଡ଼ିଲାଣି । ଆମରି ଭିତରୁ ହୁଏତ ଅନେକେ ଏକଥା ଅନୁଭବ କରୁଛନ୍ତି । କିନ୍ତୁ ସେମାନେ ନାଗରିକ ହୋଇଗଲାପରି ରହିଛନ୍ତି । କାରଣ ବୋଧହୁଏ ସମସ୍ତେ ଏଇ ଆଗ୍ରହ ହରାଇ ବସିବାର ଦୁର୍ଗତି ଭୋଗ କରୁଛନ୍ତି ।

ଏଠିକାର ଅରଣ୍ୟ ହୁଏତ ଆମକୁ ଆଉ ଖୁସି ଲାଗୁନାହିଁ; ଏଠିକାର ସୂର୍ଯ୍ୟୋଦୟ ଆଉ ସୂର୍ଯ୍ୟାସ୍ତରୁ ହୁଏତ ଆମେ କୌଣସି ଖାଦ୍ୟ ସଂଗ୍ରହ କରି ପାରୁନାହୁଁ । ଏଇ ବନର ସୁଷମା ବଢ଼ାଇ ଯେ ଦିନେ ଏଇଠି ଏକ ସୁନ୍ଦରଣ୍ୟ ବିଦ୍ୟାଳୟ ଗଢ଼ି ଉଠିବ, ସେହିପରି କୌଣସି କଳ୍ପନା ଆଉ ଆମର ମନକୁ ସଚଳ ଓ ସରସ କରି ପାରୁନାହିଁ । ଏ ଏକ ବଡ଼ ଅଭିଶାପ । ଉପନିଷଦରେ ଋଷି ମହର୍ଷି ବିନଷ୍ଟିର କଥା କହିଛନ୍ତି । ବିଦ୍ୟାଳୟ ପ୍ରତି ବିତୃଷ୍ଣା, ଯେ କୌଣସି ବିଦ୍ୟାର୍ଥୀ ପକ୍ଷରେ ଏହା ହିଁ ମହତି ବିନଷ୍ଟି, ଚରମ ବିନାଶର ଦୁର୍ଯ୍ୟୋଗ । ଯେତେବେଳଯାଏ ଏଇ ବିଦ୍ୟାଳୟ ଆମକୁ ଭଲ ଲାଗୁଥିବ, ସେତେବେଳଯାଏ ଏଠିକାର କାମ, ଏଠିକାର ପାଠ ଓ ଏଠିକାର ପ୍ରାର୍ଥନା ଆମକୁ ସବୁ ଭଲ ଲାଗିବ । ଏଇଠି ଆକାଶତଳେ ବସି ଆମେ ଯୋଉ ସାହିତ୍ୟ ପଢ଼ିବା, ଅଙ୍କ କଷିବା ବା ରେଖା ଟାଣିବା ସେ ସବୁଥିରୁ ଆମେ ଆନନ୍ଦ ପାଇପାରିବା । ଗରିବର କୁଡ଼ିଆ ଗରିବକୁ କୋଟିନିଧିପରି ଲାଗେ, କାରଣ ଗରିବ ତାକୁ ଆପଣାର ଘର କରି ନେଇଥାଏ । କୋଉ ରାଜପ୍ରାସାଦରେ କେତେ ମହଲା କୋଠା ଉଠିଲା, ସେ ତେଣିକି ହିସାବ ରଖେ ନାହିଁ । ଏହି ଦୃଷ୍ଟିରୁ ଆମେ ରାଜପ୍ରାସାଦ ଆଉ କୁଡ଼ିଆ ଭିତରେ କୌଣସି ତୁଳନା କରି ପାରିବା ନାହିଁ । ରାଜାକୁ ତାଙ୍କର ପ୍ରାସାଦ ଯେତିକି ଭଲଲାଗେ, ଗରିବକୁ ତା'ର

କୁଡ଼ିଆ ସେଠିକି ଭଲ ଲାଗେ । ଘରବର କୁଡ଼ିଆ କେବଳ କୁଡ଼ିଆ ନୁହେଁ । ସେ ତା'ର ଘର, ତା'ର ଗୌରବ, ତା'ର ଜୀବନର ସବୁ ସ୍ନେହ ଓ ସାଧନାକୁ ସାଇତି ରଖିବାର ଆନନ୍ଦ-ଭବନ । ଏଇ ଘରର ମମତା ହିଁ ମଣିଷକୁ ସଂସାରରେ ଖୁସି କରି ରଖେ । ଜୀବନର ସାର୍ଥକତା ଓ ଜ୍ଞାନାର୍ଜ୍ଜନର ଉଜ୍ଜ୍ୱଳତା ଦେଇଯାଏ ।

ଆମ ବିଦ୍ୟାଳୟକୁ ଆମେ ଘର ବୋଲି ମନେ କରୁଥିବା ପର୍ଯ୍ୟନ୍ତ ଏଠି ଆମକୁ ସବୁ ଭଲ ଲାଗିବ । ଅପରର ଆଖିରେ ଦେଖିବାକୁ ଏଠି କ'ଣ ଅଛି ? ଥୁଣ୍ଟା ପଡ଼ିଆଟା ଭିତରେ କଞ୍ଚା ବାଉଁଶର କେତୋଟି ବଖରା ମାଟିଘର, ଝରଣାର ପଚାପାଣି, ରୁକ୍ଷ ବଗଡ଼ା ଭାତ, ତା' ସହିତ ଦିନକୁ କେତେ ଘଣ୍ଟା ମୂଲିଆର ଖଟଣୀ, ଆଉ ଅତି ଅଳ୍ପ ପାଠପଢ଼ା । ଏଠି ପିଲାଙ୍କ ଜୀବନକୁ ମାଟି କରି ଦିଆଯାଉଛି । ତେଣେ ସଭ୍ୟ ଜଗତର ସହରରେ ପଢ଼ୁଆ ପିଲାଏ କେତେ ରଙ୍ଗଢଙ୍ଗ ଫିଟ୍‌ଫାଟ୍ ହୋଇ ବୁଲୁଥିବା ବେଳେ ଏଠି ପିଲାଙ୍କୁ ଭଲ ଭଲ କଥାରେ ଭୁଲାଇ ରଖି ସେମାନଙ୍କୁ ବୋକା କରି ଦିଆଯାଉଛି । ବାହାର ଲୋକ ଆମକୁ ଦେଖି ନିଶ୍ଚୟ ଏପରି ଭାବିବ । ଏପରି ଭାବିବା ଲୋକର ଏ ଦେଶରେ ଆଜି ଅଭାବ ନାହିଁ । କିନ୍ତୁ ମୁଁ କହିବି, ଯୋଉ ମୁହୂର୍ତ୍ତରେ ଆମେ ଏ ବିଦ୍ୟାଳୟକୁ ଆପଣାର ଘର ବୋଲି ଭାବିବା ସେହି ମୁହୂର୍ତ୍ତରେ ଆମ ମନର ଅପର ମଣିଷର ସମସ୍ତ ଭ୍ରମ ଦୂର ହୋଇଯିବ । ଲକ୍ଷ୍ମୀମନ୍ତ କୃଷୀ ଯେମିତି ତା'ର ଜମିକୁ ଭଲପାଏ ଲକ୍ଷ୍ମୀମନ୍ତ କାରିଗର ଯେମିତି ତା'ର ହତିଆରକୁ ଭଲପାଏ, ଲକ୍ଷ୍ମୀମନ୍ତ ବିଦ୍ୟାର୍ଥୀ ହିସାବରେ ଆମେ ସେମିତି ଆମ ବିଦ୍ୟାଳୟକୁ ଭଲ ପାଇ ଶିଖିବା । ଏ ଏଗାର ବଖରାଘର କେବଳ ଏଗାରଟା ଘର ନୁହେଁ, ଇଏ ଆମର ସରସ୍ୱତୀମଶାଳା । ଏ ଘର ଆମେ ଗଢ଼ିଛେ, ଏ ଘରକୁ ନେଇ ଜୀବନର ଅଜସ୍ର ସ୍ୱପ୍ନ ଆମେ ଦେଖୁଛେ, ଏଇଠିକାର ଖୁସି ଆଉ ଖେଳରେ ଆମ ଜୀବନର ପାଖୁଡ଼ାକୁ ପାଖୁଡ଼ା ବିକଶିତ ହୋଇ ଚାଲିଛି । ଏ ଆମର ଘର ଆମର ମମତା, ଆମର ଆଗ୍ରହ ଆଉ ସାଧନା ଏଇଠି ମୂର୍ତ୍ତିମନ୍ତ ହୋଇ ଉଠିବ । ଏଇଠି ଆମେ ଶ୍ରେୟର ସନ୍ଧାନ କରି ଆସିଛେ । ସଂସାରରେ ପ୍ରେୟ ବସ୍ତୁ ଅନେକ ଅଛି । ବଡ଼ ବଡ଼ କୋଠାଘର ଅଛି । ବଡ଼ ବଡ଼ କ୍ଷମତା ମୁଣ୍ଡାଇଥିବା ହାକିମ ଓ ମାଷ୍ଟର ମଧ୍ୟ ଅଛନ୍ତି । ଘଣ୍ଟାର କଣ୍ଟା-ମୂନରେ ସେଠି ଅପାର ଆୟୋଜନରେ ପାଠ ପଢ଼ାଇବାର କାରବାର

ଚାଲିଛି । ସେ କଥା ଜାଣି ଆମେ ଏଇଠି ଏଇ ଜଙ୍ଗଲକୁ ପ୍ରେମ୍ସ ଖୋଜି ଆସିଛୁ । ଆମ ଜୀବନ-ଗୁହାରେ ନିହିତ ଥିବା ରତ୍ନର ଆବିଷ୍କାର କରି ଆସିଛୁ । ଆମ ସମସ୍ତଙ୍କର ଅନୁସନ୍ଧାନର ବାଟରେ ଏଇ ବିଦ୍ୟାଳୟର ଛକ ଉପରେ ଆମର ପରିଚୟ ହୋଇଛି । ଏହି ପରିଚୟର ମହତ୍ତ୍ୱ ଆମେ ବୁଝିବା । ଆମ ଭିତରେ ଯେତିକ ସ୍ନେହ ଓ ଶ୍ରଦ୍ଧା ଆଜି ରହିଛି, ସେ ସବୁ ଏହି ପରିଚୟଟିର ସକାଶେ ଘଟିଛି । ସେହି ପରିଚୟର ମହତ୍ତ୍ୱ ଭୁଲିଯିବା ମାତ୍ରକେ ଆମର ମନ ଆଉ ଏଠି ଲାଗିବ ନାହିଁ । ଆମର ମନ ଆଉ କୋଉ ବଜାରରେ ପୋଷାକୀ ପ୍ରତିଯୋଗିତା କରିବାକୁ ବ୍ୟସ୍ତ ହୋଇପଡ଼ିବ; ଅପର ପାଖରେ ଆପଣାକୁ ଶ୍ରେଷ୍ଠ ମନେ ହେବ ! ଏଣେତେଣେ ଦଉଡ଼ି ଜ୍ଞାନ ସାଉଁଟିବାର ଦୁର୍ଦ୍ଦଶା ଆମର ମନକୁ ବଡ଼ ହୀନକାରି ପକାଇବ । ହୁଏତ ଆଜି ସେହିକଥା ହୋଇଛି । ସେଥିଲାଗି ଏଠି ଆମର ଅସଲ ପରିଚୟଟି ଆମେ ଭୁଲିଯାଇଛୁ । ସେଥିଲାଗି ଆଉ କୋଉ ହାଟରେ ଆମ ବୁଦ୍ଧିର ଅଧିକ କାଟତି ହୋଇଆନ୍ତା ବୋଲି ଭାବି ଆମେ ଆପଣାର ଭାଗ୍ୟକୁ ନିନ୍ଦା କରି ବୁଲୁଛୁ । ନିଜ ଉପରୁ ବିଶ୍ୱାସ ହରାଇ ଏଠି ଆମେ ଅବିଶ୍ୱାସର ବିଷରେ ସମସ୍ତଙ୍କୁ ଦଂଶନ କରି ବାହାରିଛୁ ।

ଆଜି ଏଠି ଭାରି ଏକୁଟିଆ ଲାଗୁଛି । ସାଥୀ ନ ପାଇଲେ ହଜାର ହଜାର ମଣିଷମେଳରେ ମଧ୍ୟ ବଡ଼ ଏକୁଟିଆ ଲାଗେ । ହାଟ ଭିତରେ ଶହ ଶହ ମଣିଷଙ୍କ ସହିତ ଦେହ ଘଷାଘଷି ହେଲେ ମଧ୍ୟ ମନଭିତରେ ଆମେ ବଡ଼ ଏକୁଟିଆ ଅନୁଭବ କରୁ । ଆଗରୁ ତୁମମାନଙ୍କୁ ମୁଁ ବିଦ୍ୟାର୍ଥୀରୂପରେ ଚହ୍ନିଥିଲି । ଆପଣାର ଭିତରି ବିଦ୍ୟାର୍ଥୀକୁ ତୁମାନଙ୍କ ସହିତ ମିଳାଇ ଦେଇଥିଲି । ଏ ବିକାକିଣାର ସଂସାରରେ ଏତେ ଗୋଟି ହୃଦୟକୁ ସାଥୀ କରି ପାଇ ଅନେକ ଦମ୍ଭରେ ଅନେକ ଦୂର ମାଡ଼ି ଯାଇଥିଲି । ଆଜି ଅଧ ବାଟରେ ଯେପରି ମୁଁ କାହାରିକୁ ଚହ୍ନି ପାରୁନାହିଁ । ଏ ବୀଭତ୍ସ ରୂପଟା ଆମ ଭିତରେ କୋଉଠି ଲୁଚି ରହିଥିଲା ? ଏ ତ ବିଦ୍ୟାର୍ଥୀର ରୂପ ନୁହେଁ ! ସବୁରି ମନ ଭିତରେ ଏଠି, ଆଜି ଖାଲି ଲାଭ କ୍ଷତି ଓ ସଫଳତା ବିଫଳତାର ହିସାବ ଚାଲିଛି । ସଂସାରର, ବଜାରରେ ହଟିଯିବାର ଗୋଟାଏ ପ୍ରମାଦ ଆଜି ଯେପରି ସମସ୍ତଙ୍କୁ ଅସ୍ତବ୍ୟସ୍ତ କରି ରଖିଛି । ପ୍ରେମ୍ସ ଖୋଜି ବାହାରିବାର ସହଜ ବାଟଟା ଆଜି ଯେପରି ଏଠି

ସବୁରି ଆଖିକୁ ବେଶ୍ ପ୍ରଲୁବ୍ଧ ଓ ବିଭ୍ରମ କରି ରଖିଛି । ଅତି ଏକାକୀଭାବରେ ଆଜି ମୁଁ ଖାଲି ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଛି, ଏ ପ୍ରମାଦ ଏଠୁ ଘୁଞ୍ଚିଯାଉ । ଏଠୁ ଏ ହାଟବଜାରର ମେଘଗ୍ରସ୍ତତା ଦୂର ହୋଇଯାଉ, ବିଦ୍ୟାର୍ଥୀ ହୋଇ ବାହାରିବାର ସହଜ ଅଦମ୍ୟ ଉତ୍ସାହ ପୁଣି ଆମକୁ ପରସ୍ପରର ନିବିଡ଼ ପରିଚୟ ଭିତରକୁ ନେଇ ଆସୁ ।

ତା ୨୩ । ୧ । ୪୭

ମୁଁ ଦରିଦ୍ର । କୌଣସି ଭଲ ସ୍କୁଲରେ ବା ଭଲ ସହରରେ ପାଠ ପଢ଼ିବାକୁ ମୋ ବାପ ମା’ ଏତେ ଟଙ୍କା ଦେଇ ପାରିବେ ନାହିଁ । ତେଣୁ ଭାଗ୍ୟ ଆଦରି ମତେ ଏଇଠି ମୁହଁ ମାଡ଼ି ପଡ଼ିବାକୁ ହେବ;—ଏପରି ଦରିଦ୍ର ମନ ନେଇ ଯିଏ ଏ ବିଦ୍ୟାଳୟରେ ଦିନ କଟାଉଥିବ, ସେ ବିଦ୍ୟାଳୟର ସମସ୍ତ ଶ୍ରୀ ନଷ୍ଟ କରି ଦେଉଛି ବୋଲି ମୁଁ କହିବି । ଏଠିକାର ସମସ୍ତ କାର୍ଯ୍ୟକ୍ରମକୁ ତା’ର ଦରିଦ୍ର ମନୋବୃତ୍ତି କଳୁଷିତ କରି ପକାଇବ । ବାଧ୍ୟ ହୋଇ ଆମ ଦେଶରେ ମୂଲିଆ ମେହେନତ କରେ, ବାଧ୍ୟ ହୋଇ ଏ ଦେଶର ଶିକ୍ଷକ ପିଲାଙ୍କୁ ପାଠ-ପଢ଼ାଏ । କିନ୍ତୁ ଏଣେ କୃଷିର ମନ କଟକ କୋଠାର ସ୍ୱପ୍ନ ଦେଖୁଥାଏ, ଶିକ୍ଷକର ମନ କୋଉ କଣ୍ଟ୍ରାକ୍ଟରର ବା ଓକିଲର ଧନ ସମ୍ପତ୍ତିକୁ ଈର୍ଷା କରିବାରେ ବୁଡ଼ି ରହି ଆପଣାର ସମ୍ମାନ ହରାଇ ବସିଥାଏ । ବିଦ୍ୟାଳୟର ବିଦ୍ୟାର୍ଥୀ ବିଷୟରେ ମଧ୍ୟ ମୁଁ ଠିକ୍ ସେହି କଥା କହିବି । ଯିଏ ଏଠି ବାଧ୍ୟ ହୋଇ ପଡ଼ିରହିଥିବ, ଶିକ୍ଷକ ଆଗରେ ବାଧ୍ୟ ପିଲା ବୋଲି ପରିଚୟ ଦେଇ ପଛରେ ଯିଏ ନାନା ପ୍ରକାର ମନୋଗ୍ଲାନିରେ ଆପଣାକୁ ହନ୍ତସନ୍ତ କରି ରଖିଥିବ, ନାନାପ୍ରକାର ଅଶାନ୍ତିର ଆବର୍ଜନା ସୃଷ୍ଟି କରି ମନେ ମନେ ସାନ୍ତ୍ୱନା ପାଉଥିବ, ମୁଁ କହିବି ତା’ର ସମୟ ଓ ତା’ର ବୟସ ଏଠି ବୃଥା ହୋଇ ଯାଉଛି । ବାହାର ମନରେ ଯେତେ ବହି ପଢ଼ୁଥିଲେ କି ଭାଷା ଶିଖୁଥିଲେ ମଧ୍ୟ ଭିତରେ ସେ ଅତି ଅସହାୟ ଅରକ୍ଷିତ ହୋଇ ପଡ଼ୁଛି । ଖାଲି ଆପଣା ଭାଗ୍ୟକୁ ନିନ୍ଦା କରୁଛି । ନାନା ସଂଶୟରେ ଆପଣା ବାଟକୁ ବନ୍ଦ କରି ରଖି ସେ ଅପର

ପାଞ୍ଚଜଣଙ୍କର ବାଟ ବନ୍ଦ କରିବାକୁ ମନ ବଳାଉଛି । ତା'ର ନିଜର ବିକାଶ ବାଟକୁ ସେ ବନ୍ଦ କରି ରଖୁଛି, ତାହା ହିଁ ସବୁଠାରୁ ବଡ଼ ଦୁଃଖର କଥା । ବିଦ୍ୟାର୍ଥୀ-ଭିତରେ ଯେଉଁ ସାହସ ରହିବା କଥା, ସେ ସାହସ ସେ ହରାଇ ବସୁଛି । ଭିତରେ ବାହାରେ ସେ ଦୁଇଭାଗ ହୋଇ ଯାଉଛି । ତେଣୁ ଯାହା ଜ୍ଞାନ ସେ ଏଠୁ ପାଉଛି, ତାହା ଖାଲି ତା'ର ବଦହଜମୀ କରାଉଛି । ତା'ର ବୁଦ୍ଧି ସ୍ଥିର ହୋଇ ପାରୁନାହିଁ । ବୁଦ୍ଧିକୁ ସ୍ଥିର କରିବାକୁ ହେଲେ ପ୍ରଥମେ ଶ୍ରଦ୍ଧା ଦରକାର । ଆପଣା ଜୀବନକୁ ଆମେ ଶ୍ରଦ୍ଧା କରି ଶିଖିବା । ଆପଣା କାମକୁ ଆମେ ଶ୍ରଦ୍ଧା କରି ଶିଖିବା । ଯୋଉ ଘରେ ରହି ଆମେ ଜ୍ଞାନରାଶିର ଅର୍ଜନ ସଂଗ୍ରହ କରୁଛୁ, ସେ ଘରକୁ ମଧ୍ୟ ଶ୍ରଦ୍ଧାକରି ଶିଖିବା । ଏ ଶ୍ରଦ୍ଧା ଆମର ଅଛି କି ? ଆପଣା ଜୀବନକୁ ନେଇ ଯିଏ କେବଳ ଶ୍ରେୟର ଅନୁସନ୍ଧାନ କରି ବାହାରିବ, କେବଳ ସେହି ଆପଣା ଜୀବନକୁ ଶ୍ରଦ୍ଧା କରି ଶିଖିବ । କିନ୍ତୁ ଭୋଗ ବା ସହଜ ବାଟ ଖୋଜିବାର ଲୋଭରେ ଯିଏ ପଡ଼ିଯିବ, ତା'ର ମନକୁ କେବଳ ଦୁଷ୍ଟମନ ବୋଲି ହିଁ କହିବାକୁ ହେବ । ଦୁଷ୍ଟ ଅସନ୍ତୁଷ୍ଟ ପିଲା ଆପଣାର ଖେଳନାକୁ ଭାଙ୍ଗିରୁଜି ପକାଇଲାପରି ସେ ଆପଣାର ଜୀବନକୁ କେବଳ ଭାଙ୍ଗିରୁଜି ପକାଇବ । ଯୋଉ ପିଲା ତା'ର ଖେଳନାକୁ ଭଲପାଏ, ସେହି ଖେଳନାରୁ ହିଁ ସେ ଆନନ୍ଦ ପାଏ । ଯୋଉ ଶିକ୍ଷାର୍ଥୀ ଆପଣାର ପାଠକୁ ଭଲପାଏ, ସେ ପାଠରୁ ଆନନ୍ଦ ପାଏ । ଯିଏ କାମକୁ ଭଲ ପାଏ ସେ ତା' କାମରୁ ଆନନ୍ଦ ପାଏ । ଯିଏ ତା'ର ବିଦ୍ୟାଳୟକୁ ଭଲପାଏ ସେ ତା'ର ବିଦ୍ୟାଳୟରୁ ଆନନ୍ଦ ପାଏ । ଭଲ ପାଇବା ହେଉଛି ସବୁ ଆନନ୍ଦର ମୂଳ । ମୁଁ ଜାଣେ ନା, ଶାସ୍ତ୍ର ପଢ଼ିବା ସଙ୍ଗେ ସଙ୍ଗେ ଓ କାମ ପୂରଣ କରିବା ସଙ୍ଗେ ସଙ୍ଗେ କେତେଦୂର ଆମେ ଏହି ଭଲ ପାଇବାର କଳା ଅର୍ଜନ କରୁଛୁ । ତାହା ଆମ ପ୍ରତ୍ୟେକର ବିଚାର କରିବା କଥା ।

ଆମର ଅନୁଷ୍ଠାନ ଏକ ଦରିଦ୍ର ଅନୁଷ୍ଠାନ । ଏଠିକାର ଘର ଦୁଆର, ରନ୍ଧାବଢ଼ା ଦେଖିଲେ ଯେକୌଣସି ଲୋକ ଆମକୁ ଦରିଦ୍ର ବୋଲି ଭାବିବ । ସେହି ଦୃଷ୍ଟିରୁ ଯଦି ଏଠି ଆମେ ଆମକୁ ଦରିଦ୍ର ବୋଲି କହୁଥିବା, ତେବେ ମୋର କିଛି ଆପତ୍ତି ନାହିଁ । କିନ୍ତୁ ଅତି ଦମ୍ଭସହକାରେ ମୁଁ କହିବି, ଓଡ଼ିଶାର କେତୋଟି ଦରିଦ୍ର ଘର ପିଲାଙ୍କୁ ର, ଠ, ଟୋକାଏ ଆଶ୍ରୟ ଦେବାକୁ

ଏ ଅନୁଷ୍ଠାନ ଗଢ଼ା ଯାଉନାହିଁ । ସେ ଦରିଦ୍ର ମନର ବିକାର ଆମର ନାହିଁ । ତେଣେ ଦିଲ୍ଲୀ ଆଉ କଟକରେ ଧନୀ ସମାଜର ଧୂମ୍‌ଧାମ୍ ଲାଗିଛି । ସିମେଣ୍ଟ ଚଟାଣ ଉପରେ ଧନୀର ଯୋଡ଼ା ସେଠି ସୁଖୀ ଜୀବନର ଆଡ଼ମ୍ବର ଚଳାଉଛି । ସେ କଥା ଆମେ ଭଲକରି ଜାଣୁ । କିନ୍ତୁ ସେହିମାନଙ୍କ ଭଳି ହେବାର ଆଦର୍ଶକୁ ଗୋପନ କରି ଧରି ଆମେ ଏଠିକୁ ଆସି ନାହୁଁ । ଆମ ଭିତରେ ସେପରି କୌଣସି ଭୂତ ନାହିଁ । ଦୟାଦ୍ୱାରା ସବୁ ଦାନ ସମ୍ଭବ ହୋଇପାରେ, କିନ୍ତୁ ବିଦ୍ୟାଦାନ ସମ୍ଭବ ହୋଇ ପାରିବ ନାହିଁ । ବଡ଼ଲୋକର ଦୟାରେ ପାଠ ପଢ଼ି ଯିବାର ଦରିଦ୍ର-ସାନ୍ତ୍ୱନା ଧରି ଯିଏ ଏଠିକି ଆସିଛି, ସେ କେବଳ ଦରିଦ୍ର ହୋଇ ହିଁ ଏଠାରୁ ଫେରିଯିବ । ବଡ଼ଲୋକର କୋଠାଘର ସହିତ ପ୍ରତିଯୋଗିତା କରିବାକୁ ଆମେ ଏଠିକି ଆସି ନାହୁଁ । ଧନୀ ତେଣେ ଆପଣା ପିଲାଙ୍କୁ କୋଉଠିକି କି ପୋଷାକ ପିନ୍ଧାଇ ପଠାଇଲା, ସେହିଥିରେ ବିଚଳିତ ହୋଇ ନାନା ଅପରିତୃପ୍ତିର କଣ୍ଟାବାଡ଼ ଉପରେ ବସିବାକୁ ଏଠାକୁ ଆସି ନାହୁଁ । ଆମେ ଏଠି ମଣିଷ ହେବାକୁ ଆସିଛୁ । ପଶୁର ଜୀବନଠାରୁ ମଣିଷର ଜୀବନକୁ ଉଚ୍ଚତର କରି ରଖିବାକୁ ଯେଉଁସବୁ ଉପାଦାନ ବା ପ୍ରବୃତ୍ତି ମଣିଷ ଭିତରେ ରହିଛି, ସେସବୁର ବିକାଶ କରିବାକୁ ଆମେ ଏଠିକି ଆସିଛୁ । ମଣିଷର ଜ୍ଞାନ ଓ ହୃଦୟର ବିକାଶ କରିବାକୁ ହେଲେ ଯେ ଖାଲି ଧନୀ ହେବାକୁ ପଡ଼ିବ, ସେ କଥା ଆମେ ସ୍ୱୀକାର କରୁନା । ଗରିବ ଘରେ ଜନ୍ମହୋଇ ମଧ୍ୟ ପୂର୍ଣ୍ଣ ବିକଶିତ ହୋଇ ପାରିବାର ଯୋଗ୍ୟତା ଆମର ଅଛି; ସଂସାରରେ ମଣିଷ ହେବାର ଅଧିକାର ଆମର ଅଛି । ଆଉ ଯେଉଁ ଲକ୍ଷ ଲକ୍ଷ ଗରିବ ପିଲାଙ୍କର ବାଟକୁ ଆଜି ଧନଲୋଭୀ-ସମାଜ ବନ୍ଦକରି ରଖିଛି, ସେହି ବାଟ ଫିଟାଇ ସମାଜରେ ସବୁରି ଉଦୟଲାଗି କ୍ଷେତ୍ର ପ୍ରସ୍ତୁତ କରିବାର କର୍ତ୍ତବ୍ୟ ଆମର ଅଛି । ଏ ସବୁ ବିଷୟରେ ସଚେତ ହୋଇ ହିଁ ଆମେ ଏଠିକୁ ଆସିଛୁ । ଅନ୍ୟ କୋଉଠି କୋଉ ଚକ୍ ଚକ୍ କୋଠାରେ କେତେ ପ୍ରକାର ପାଠର ବଜାର ବସିଛି, କିନ୍ତୁ ସେଥିରେ ଆମେ ଦୁଃଖିତ ହେବୁ ନାହିଁ । ଆମର କ୍ଷେତ୍ରଟିକୁ ଅଧିକ ଭଲ ପାଇ ଆମେ ଆମ ବିକାଶର ସମ୍ଭାବନାକୁ ଅଧିକ ପ୍ରଶସ୍ତ କରିଦେବୁ । ଆମ ଆଗ୍ରହ ଓ ଆମ ସମୟକୁ ଅଧିକ ସମ୍ମାନ ଦେବୁ । ଧନରେ ଦରିଦ୍ର ହେବା ଆଦୌ ଲଜ୍ଜାଜନକ ନୁହେଁ । ମନରେ

ଦରିଦ୍ର ଯେ ହେବ ଦେବତା ମଧ୍ୟ ତା'ର ଶୂନ୍ୟପାତ୍ରକୁ ଭରିଦେଇ ପାରିବ ନାହିଁ । ଯିଏ ମନରେ ଦରିଦ୍ର ହୁଏ ସିଏ ଆପଣାକୁ ସମ୍ମାନ କରିବାକୁ ଭୁଲିଯାଏ । ଆଉ ଆତ୍ମ-ସମ୍ମାନ ନ ଆସିବା ପର୍ଯ୍ୟନ୍ତ ମଣିଷର ସବୁ ଜ୍ଞାନ, ସବୁ କାମ ଓ ସବୁ ଆଗ୍ରହ କେବଳ ବ୍ୟର୍ଥ ହିଁ ହୁଏ । ଧନରେ ଦରିଦ୍ର ହେଲେ ମଧ୍ୟ ଆମେ ଆମ ନିଜକୁ ସମ୍ମାନ କରି ଶିଖିବା । ତେବେ ଆମର ଅଧିକାର ଓ ଆମର କର୍ତ୍ତବ୍ୟ ବିଷୟରେ ଆମେ ଅଧିକ ସଚେତ ହୋଇ ପାରିବା ।

ଆମ ଦେଶରେ କେତେ ସ୍କୁଲ କେତେ କଲେଜ ରହିଛି । ସେହିଭଳି ଗୋଟାଏ ହେବାର ଲାଳସା ନେଇ ଏଠି ଏ ଅନୁଷ୍ଠାନ ଗଢ଼ିବାରେ କି ବାହାଦୁରି ଅଛି ? ସଂସାରର ବଜାରରେ କେତେ ସାଜସଜ୍ଜାରେ କେତେ ଶିକ୍ଷିତପଣିଆର ପ୍ରଚାର କରାଯାଉଛି । ସେହି ପ୍ରଚାରର ଆଡ଼ମ୍ବରରେ ମେଣ୍ଢାପରି ମିଶିଯିବାରେ କି ପୁରୁଷାର୍ଥ ରହିଛି ? ଯିଏ ପୁରୁଷାର୍ଥ କରିବା କଥା ଭାବିବ, ସିଏ ଧନ ନାହିଁ ବୋଲି ମନକୁ ଦରିଦ୍ର କରି ବସିରହିବ ନାହିଁ । ଅନ୍ୟଠାରେ ପାଠ ପଢ଼ି ମଣିଷ ଅଧିକ ପାଠୁଆ ହେଉଛି । ଆମେ ମଣିଷ ହେବାର ପାଠ ଏଠି ପଢ଼ିବା । ଏଥିଲାଗି ଆପଣାକୁ ଭଲ ପାଇବାକୁ ହେବ । ଆପଣାର ଶକ୍ତି ଉପରେ ଅଟଳ ବିଶ୍ୱାସ ରଖିବାକୁ ହେବ । ଜ୍ଞାନକୁ ଉପାର୍ଜନର ପନ୍ଥାଭାବେ ନୁହେଁ, ବ୍ରତ ହିସାବରେ ଗ୍ରହଣ କରିବାକୁ ହେବ । ସର୍ବୋପରି ଭଗବାନଙ୍କୁ ଭଲ ପାଇବାକୁ ହେବ ।

ତା । ୧ । ୮ । ୫୭

ସବୁଠାରେ ଆଜି ଦେଶ ଓ ଦେଶ ସେବାର ଧୂଆଁ ଉଠୁଛି । ଆମ ସରକାର ନାନା ଆଡ଼ମ୍ବରରେ ଦେଶର ସେବା କରୁଛନ୍ତି । ଆମ ଦେଶର କୋଟିପତିମାନେ ହଜାର ହଜାର ଟଙ୍କା ଦାନ କରି ନା ହଜାର ହଜାର ଟଙ୍କାର ସତ୍ର ବସାଇ ଦେଶ-ସେବାର ପଗଡ଼ି ପିନ୍ଧୁଛନ୍ତି । କିଏ ଦେଶ-ସେବକର ଖାତାରେ ନାଁ ଲେଖାଇବା ଲାଗି ଖଦଡ଼ ପିନ୍ଧିବାର ଯୋଗାଡ଼ କରୁଛି । ଏଇ ଦେଶ-ସେବାର ଦୋହାଇ ଦେଇ କେତେ ଦସ୍ୟୁଙ୍କୁ ବଡ଼ଲୋକ

କେତେ ହୋଟେଲର ଖୋଲି ବା ବିନୋଦନ ସଭା ବସାଉଛନ୍ତି । ଆପଣାର ଗାରିମା ପିଟିବାପାଇଁ ଦେଶସେବା ଯେପରି ଗୋଟାଏ ଭେକ ହୋଇଗଲାଣି । ତାହାରି ନାଁ । ଧରି ଆମ ଦେଶର ଅନେକ ଲୋକ. ଅନେକ ଫୁର୍ତ୍ତି କରୁଛନ୍ତି । ଅନେକ ବାହା ବାହା ପାଉଛନ୍ତି, ଅନେକ ବିଳାସ ଭିତରେ ବୁଡ଼ି ରହିଛନ୍ତି ।

କିନ୍ତୁ ଏତେ ଆଡ଼ମ୍ବରରେ ଯୋଉ ଦେଶର ସେବା ହେଉଛି, ସେ ଦେଶର ଅବସ୍ଥା ଆଜି କ'ଣ ହୋଇଛି ? ଏ ଦେଶରେ ଏ ପର୍ଯ୍ୟନ୍ତ ବି ଅନେକ ଘରେ ଚୁଲି ଜଳୁନାହିଁ । ଏ ଦେଶର ଅନେକ ମଣିଷ ଏବେ ବି ଆକାଶକୁ ଅନାଇ ହାହାକାର କରୁଛନ୍ତି । ବେଶୀ ବରଷିଲେ ସେମାନଙ୍କର ଭେଳା ବୁଡ଼ିଯାଉଛି । ଏଣେ ମୋଟେ ନ ବରଷିଲେ ସେମାନଙ୍କ ର ହାଲୁକ ଶୁଖିଯାଉଛି । ଏବେ ବି ଏ ଦେଶର ଅଧିକାଂଶ ପିଲା ପାଠ ପଢ଼ିବାର ବା ଖୁସିରେ ବଢ଼ିବାର ଅଧିକାର ପାଇନାହାନ୍ତି । ଅଥଚ ନାନାଭଳି ବିଭାଗରେ ନାନାଭଳି ସେବାର ଭେଳିକ ଲଗାହୋଇ ସରକାର ଓ ବଡ଼ଲୋକ ଉଭୟେ ମନ୍ତର ଧରି ସେବା କରିବାରେ ଲାଗି ପଡ଼ିଛନ୍ତି । ସଂସାରର ଯେ କୌଣସି କଥା ବା କାମର ଅପବ୍ୟବହାର କରାଯାଇ ପାରେ । ଆପଣାର ଅହଙ୍କାର-ବୁଦ୍ଧିରେ ମଣିଷ ଅମୃତଭିତରେ ମଧ୍ୟ ପୋକ ପକାଇ ଦେଇପାରେ । 'ସେବା' ଏ ଯୁଗରେ ସେହିପରି ଗୋଟାଏ ନିତ୍ୟ ଅପବ୍ୟବହୃତ ଶବ୍ଦରେ ପରିଣତ ହୋଇ ଗଲାଣି । ଆପଣାଲାଗି ଭୋଗ ସୁଖର ଅନ୍ୱେଷଣ କରି ବୁଲୁଥିବା ମଣିଷ ଆଜି ସେବାକାର୍ଯ୍ୟ ଓ ସେବା-କ୍ଷେତ୍ରକୁ ଅତି ମାରାତ୍ମକ ଭାବରେ କଳୁଷିତ କରିଦେଇ ସାରିଲାଣି । ଦଶବର୍ଷ ତଳେ ସେବା ଓ ସେବା-କ୍ଷେତ୍ରର ଯେତିକି ମର୍ଯ୍ୟାଦା ଏ ଦେଶରେ ଥିଲା, ବର୍ତ୍ତମାନ ତାହା ନାହିଁ । ସେବକର ବେଶରେ ମଣିଷକୁ ଦେଖିଲେ ଆଗ ଲୋକେ ସନ୍ଦେହ କରି ବସୁଛନ୍ତି ।

ଏବେ ଅଳ୍ପଦିନ ତଳେ ଉତ୍କଳମଣି ଗୋପବନ୍ଧୁଙ୍କର ଶ୍ରାଦ୍ଧଦିବସ ପଡ଼ିଥିଲା । ସେଦିନ ଅନେକ ସଭାସମିତି ହେଲା । ଓଡ଼ିଶାସାରା ଅନେକ ବକ୍ତୃତା ହେଲା । ବର୍ଷଯାକ ଶୋଇ ରହିଥିବା ସ୍ମରଣ ହଠାତ୍ ଚେଇଁଉଠି ସେଦିନ ଅନେକ ସ୍ତୁତି ଗାଇଲା । ଗୋପବନ୍ଧୁଙ୍କର ମରିବା ଅଠେଇଶ ବର୍ଷ ହୋଇ-

ଗଲଣି । ତଥାପି ତାଙ୍କର ସେବକ-ମୂର୍ତ୍ତି ଏ ପର୍ଯ୍ୟନ୍ତ ଆମ ସମସ୍ତଙ୍କୁ ପ୍ରେରଣା ଦେଉଛି । ସେ ଯେଉଁ କ୍ଷେତ୍ରକୁ ଯାଇଛନ୍ତି ତାଙ୍କର ନିର୍ମଳ ନିଷ୍ଠାର ସ୍ପର୍ଶ ବାଜି ସବୁକ୍ଷେତ୍ର ଶୁଦ୍ଧ ହୋଇ ଯାଇଛି । ତାଙ୍କର ହାତ ବାଜି ଯାବତୀୟ ସେବାକ୍ଷେତ୍ର ଧନ୍ୟ ହୋଇ ଯାଇଛି । ମଣିଷର ଦୁଃଖକୁ ଆପଣାର ଦୁଃଖପରି ଅନୁଭବ କରିଥିବା ତାଙ୍କପରି ବ୍ୟକ୍ତି ଜଗତରେ ଖୁବ୍ କମ୍ ଜନ୍ମଗ୍ରହଣ କରିଛନ୍ତି । ଆଜି ଆମେ ଆପଣାକୁ ସେହି ଗୋପବନ୍ଧୁଙ୍କର ଉତ୍ତରାଧିକାରୀ ବୋଲି ଭାବୁଛୁ । ତାଙ୍କୁ ଆପଣା ମୁଲକର ନେତା ବୋଲି କହି ଆମେ କେତେ ଗର୍ବ ଅନୁଭବ କରୁଛୁ । କିନ୍ତୁ ତାଙ୍କର ଜୀବନ ଆଉ ଆମ ଜୀବନ ଭିତରେ କେତେ ବ୍ୟବଧାନ ରହିଯାଇଛି । ଗୋପବନ୍ଧୁଙ୍କର ଜୀବନରେ ଜ୍ଞାନ, ଭକ୍ତି ଓ କର୍ମର ସମନ୍ୱୟ ହୋଇଥିଲି । ମଥା, ହୃଦୟ ଆଉ କର୍ମଶକ୍ତିର ସେଠି ତ୍ରିବେଣୀ-ସଙ୍ଗମ ହୋଇ ଥିଲି । ସେଥିଲାଗି ତାଙ୍କର ବୁଦ୍ଧିରେ କୌଣସି ପ୍ରକାର ଧୂର୍ତ୍ତତା ନ ଥିଲି, ତାଙ୍କର ଭଲ ପାଇବାରେ କୌଣସି ପ୍ରକାର ମୋହ ନ ଥିଲି, ତାଙ୍କର କର୍ମଚର୍ଯ୍ୟାରେ ଆଳସ୍ୟଲାଗି କୌଣସି ସ୍ଥାନ ନ ଥିଲି । ତାଙ୍କର ଜୀବନରେ କୌଣସି ପ୍ରକାର ଆଡ଼ମ୍ବରର କୌଣସି ଆଚ୍ଛାଦନ ନ ଥିଲି ।

ଆମେ ଦଳେ ଏଠି ଗୋଟିଏ ବିଦ୍ୟାଳୟରେ ଆସି ସମବେତ ହୋଇଚେ । ଆସନ୍ତା ସମାଜର କାରିଗରରୂପେ ଆମେ ଏଠି ପ୍ରସ୍ତୁତ ହେବାକୁ ଆସିଚେ । ସେଇଥିଲାଗି ନାନା ଚର୍ଚ୍ଚା ଓ ଆଲୋଚନାରେ ଏଠି ନିତି ଆମ ଜ୍ଞାନର ଘଷାମଜା ଚାଲିଛି । ନାନା ପ୍ରକାର ଏକତ୍ର ହେବାର କ୍ଷେତ୍ର ଯୋଗାଇ ଦିଆହୋଇ ଆମ ଭଲପାଇବା ଗୁଣର ଘଷାମଜା ଚାଲିଛି । ନାନା ପ୍ରକାର କର୍ମ ସାଧନାର ଜୀବନକ୍ରମରେ ଆମ ଜୀବନର ସବୁପ୍ରକାର ଆଳସ୍ୟକୁ ଦୂର କରି ଦେବାର ଆୟୋଜନ ଚାଲିଛି । ଆମର ଏ ଆୟୋଜନରେ ଆଡ଼ମ୍ବରର ଗନ୍ଧ ରହିଯାଉ ନାହିଁ ତ ? ଖାଲି ସଂସାରକୁ ଦେଖାଇ ହେବାକୁ ଆମେ ଏ ପାଠୁଆ କସରତ କରିବାର ମନ୍ଦ ବୁଦ୍ଧିରେ ପଡ଼ୁନାହୁଁ ତ ? କାଲି ଆମେ ସଂସାରକୁ ଯିବା । ବିଦ୍ୟାଳୟର ଏ ଉପବନ ଛାଡ଼ି ଜଗତର ବୃହତ୍ତର ଅରଣ୍ୟରେ ଆମ କାରିଗରିର ପରୀକ୍ଷା ଦେବାକୁ ଯିବା । ସେ ସଂସାରରେ ନାନା ଦାରିଦ୍ର୍ୟ ମଣିଷର ମନ କାମୁଡ଼ି ଧରିଛି । ସେଠି ନିତି ମଣିଷ-ଜୀବନର ଅବଜ୍ଞା

କରି ଯାଉଛୁ । ଦଳେ ମଣିଷ ସେଠି ନିତ ଆତୁର ଅନେକଙ୍କର ଦାନା ଛଡ଼ାଇ ବାହାଦୂର ହେବାର ଦୁଷ୍ଟବୃତ୍ତି କରିବାରେ ଲାଗିଛନ୍ତି । ନାନା ପ୍ରକାର ହୀନ ପ୍ରତିଯୋଗିତାର ମୂଢ଼ତା ସେଠି ମଣିଷର ଆଖି ଓ ମନକୁ ବଡ଼ ଅପବିତ୍ର କରି ପକାଇଲାଣି । ଆମେ କି ସମ୍ବଳ ନେଇ ସେ ସଂସାର ଭିତରକୁ ଯିବା ? ଆମଦ୍ୱାରା ଯଦି ସଂସାରରେ ଦାରିଦ୍ର୍ୟ ବଢ଼ିବ, ଶୋଷଣ ବଢ଼ିବ, ଆମେ ଯଦି ଉପଯୁକ୍ତ ଭେକ ପିନ୍ଧି ପ୍ରତିଯୋଗିତାର ମଣିଷମରା ଖୋଲ ଭିତରେ ମିଶିଯିବା, ତେବେ ଆମର ସମସ୍ତ ବିଦ୍ୟାର୍ଜ୍ଜନ ବୃଥା ହୋଇଯିବ । ଯାହା ପାଖରେ ଯଥାର୍ଥ ବିଦ୍ୟା ଅଛି, ସେ ସଂସାରରେ ସତ୍ୟ ଓ ନ୍ୟାୟର ପ୍ରତିଷ୍ଠାଲାଗି ସହାୟକ ହେବ । ଯେଉଁ କ୍ଷେତ୍ରରେ ସେ ପ୍ରବେଶ କରିବ, ସେ କ୍ଷେତ୍ରକୁ ସେ ଶୁଦ୍ଧ କରିଦେବ । ନିଜର ବିନୟ ବଳରେ ସେ ସଂସାରର ସବୁ କ୍ରୋଧ ଓ ସବୁ ଘୃଣାର ସମ୍ମୁଖୀନ ହେବ ।

ଆମେ ଆଜି ସମସ୍ତେ ସେହି କଥା ଭାବିବା । ଆମର ଏ ଶିକ୍ଷା ଆମକୁ ସେବାଲାଗି ତିଆରି କରୁଛି ନା ଆମ ଜୀବନର ଆଡ଼ମ୍ବର ବୃଦ୍ଧି କରି ଚାଲିଛି । ବର୍ତ୍ତମାନର ଆମର ପ୍ରତ୍ୟେକଟି କଥା ଓ କାମରେ ଆମେ ଏହି ତତ୍ତ୍ୱକୁ ଧରି ଆପଣାକୁ ଓଜନ କରିବା । ଆମର ଦେହ, ବୁଦ୍ଧି ଓ ହୃଦୟକୁ ଆମେ କିପରି ପ୍ରସ୍ତୁତ କରୁଛୁ ? ସଂସାରର ହାଟକୁ ଦେଖି ଅନେକ ସମୟରେ ଆମେ ନାନା ପ୍ରକାର ଭୁଲ ପ୍ରେରଣାର ବଶବର୍ତ୍ତୀ ହୋଇ ଯାଉଛୁ । ଆମ ଶରୀରକୁ ସଜାଇବାରେ, ବୁଦ୍ଧିକୁ ଦୁର୍ବୁଦ୍ଧି ଦ୍ୱାରା ଗ୍ରାସ କରିବାରେ, ଆପଣାର ଭଲପାଇବା ସଂସାରକୁ ଅଧିକରୁ ଅଧିକ ସଙ୍କୀର୍ଣ୍ଣ କରିବାରେ ସେତେବେଳେ ଆମେ ଭାରି ତତ୍ପର ହୋଇପଡ଼ୁଛୁ । ଯିଏ ସଂସାର ପରି ଆପଣାକୁ ସଜାଇବ, ସିଏ ସଂସାରକୁ ବଦଳାଇ ପାରିବ ନାହିଁ । ଯିଏ ବିଳାସ ଓ ଭୋଗ ଖୋଜି ବୁଲିବ ସିଏ ସଂସାରର ଦୁଃଖ ଦୂର କରିପାରିବ ନାହିଁ ।

୨।୮।୪୬

କାଲି ସକାଳେ ପ୍ରାର୍ଥନା ଲାଗି ଘଣ୍ଟା ବାଜିଲା ! ତା'ର ଦଶ ମିନିଟ୍ ପୂର୍ବରୁ ଉଠିବା ଲାଗି ମଧ୍ୟ ଗୋଟାଏ ଘଣ୍ଟା ବାଜିଥିଲା । ତଥାପି ଆମ ଭିତରୁ

ଅନେକେ ଉଠିପାରି ନ ଥିଲେ । ତା' ପରେ ପ୍ରାର୍ଥନାର ଆରମ୍ଭ ଘଣ୍ଟା ପଡ଼ିଲା । ସେତିକିବେଳେ ଗୋଟିଏ ଗୋଟିଏ ମଶାରି ଭିତରେ ଜୀବନର ସଞ୍ଚାର ହେଲା । ଧୀରେ ଧୀରେ ଶୋଇଥିବା ଶରୀରର ନିଦ ଭାଙ୍ଗିଲା, ଆଉ ଆମେ ନିଦ ମଳମଳ ଆଖିରେ ଆସି ପ୍ରାର୍ଥନାରେ ଯୋଗ ଦେବାକୁ ବସିଲୁ । ପ୍ରାର୍ଥନାର ଗୋଷ୍ଠୀକୁ ଆମେ ଅପବିତ୍ର କରିଦେଲୁ । ଅଧା ନିଦ ଆଉ ଅଧା ଚେତାରେ ପ୍ରାର୍ଥନା ଲାଗି ଆମେ କ'ଣ ଦେଲୁ, ତାହା ମୁଁ ଜାଣେ ନା; କିନ୍ତୁ ଏହି ପ୍ରାର୍ଥନା-ସମାଜରୁ ଆମେ କିଛି ଗ୍ରହଣ କରିପାରିଲୁ ନାହିଁ ।

କିନ୍ତୁ ଆମର ଯେ ସମୟାନୁବର୍ତ୍ତିତାର ଜ୍ଞାନ ମୋଟେ ନାହିଁ, ସେ କଥା କହିଲେ ଖରା ଭୁଲ ହେବ । ଯେଉଁ କାମ ଯେତେବେଳେ କରିବା କଥା, ତାକୁ ସେତିକିବେଳେ କରିବା ଓ ସେହି କାମର ବେଳ ଆସିବା ମାତ୍ରେ ସେଥିଲାଗି ମନ ଓ ଶରୀରକୁ ପ୍ରସ୍ତୁତ କରିନେବାକୁ ସମୟାନୁବର୍ତ୍ତିତା କୁହାଯାଏ । ଆମେ ବି ବେଳେ ବେଳେ ଘଣ୍ଟାର କଣ୍ଟା ଦେଖି କାମ କରୁ । ସକାଳେ ଯେଉଁ ଦୁଇଘଣ୍ଟା ଆମେ କ୍ଷେତକୁ ବା ବଗିଚାକୁ କାମ କରିବାକୁ ଯାଉ ସେ ଦୁଇଘଣ୍ଟା ଆମକୁ ଦୁଇ ଯୁଗପରି ଲାଗେ । ଅଧା ସମୟ ନ ଯାଉଣୁ ପୂରା ସମୟ ଚାଲିଗଲାଣି ବୋଲି ମନେ ହୁଏ । ହାତ ବା ଆଖିଟା ସିନା କରୁଥିବା କାମ ଉପରେ ଥାଏ; କିନ୍ତୁ ଧ୍ୟାନଟା ଥାଏ ଘଣ୍ଟା ଉପରେ— କେତେବେଳେ ଘଣ୍ଟା ବାଜିବ ଆଉ ଆମେ କାମରୁ ଉଠିବା । ଆମର ଗୋଟାଏ କାମ ବାକି ରହିଚି, ଆଉ ଦଶ ମିନିଟ୍ ଅଧିକ ସମୟ ଦେଲେ ହୁଏ ତ ଆଜିକାର କାମ ପୂରା ହୋଇଯିବ, ତାଦ୍ୱାରା କ୍ଷେତ ବା ବଗିଚା ଲାଗି ଅନେକ ଉପକାର ହେବ—ଏତିକି ବେଳେ ଯଦି ଦୁର୍ଯୋଗକୁ ଘଣ୍ଟା ବାଜିଲା, ତେବେ କଥା ସରିଗଲା । ସେଠି ଆମକୁ ଦୁଇ ମିନିଟ ଅଧିକ ଅଟକାଇ ରଖିବାର ଯୋର ଆଉ କାହାର ଅଛି ? କ୍ଷେତ ବା ଫସଲର ଆବଶ୍ୟକତା ବୁଝିବାକୁ ଆମର ଆଉ ଫୁରୁସତ ହୁଏ ନାହିଁ । ଆମେ ସଙ୍ଗେ ସଙ୍ଗେ ସେଠୁ ପଳାଇ ଅସି ବସୁ । ସକାଳର ଗୋଟାଏ ଆତଙ୍କ ଯାଏ । ଏହି ଆତଙ୍କ ପୁଣି ଆମକୁ ଏପରି ଖାଇ ଗୋଡ଼ାଏ ଯେ ଘଣ୍ଟା ବାଜିବାର ପାଞ୍ଚଦଶ ମିନିଟ ଆଗରୁ ମଧ୍ୟ କୌଣସି ଗୋଟାଏ କାରଣ ଦେଖାଇ ଖସି ଅସି ପାରିଲେ ଆମେ ନିଜକୁ

ଭାବି ଭାଗ୍ୟବାନ୍ ମନେ କରୁ—ମନେ ମନେ ଭାରି ଆନନ୍ଦ ପାଉ, ଯେମିତି ଅରମୁହାଁ ପିଲା ପାଠଶାଳାରୁ ଖସି ଆସି ପାରିଲେ ଯେମିତି ଆନନ୍ଦ ପାଏ ।

ଆମ କାମ ପଢ଼ା ଆମ ଭିତରେ ଯଥେଷ୍ଟ ଅଭାବ ରହିଛି । ସେଥିଲାଗି ପ୍ରାର୍ଥନାକୁ ଗଲାବେଳେ ଆମ ଆଖିରୁ ନିଦ ଛାଡ଼ି ପାରୁନାହିଁ—ଠିକ୍ ଯେତେବେଳେ ଯାଇ ନ ବସିଲେ ନ ଚଳେ, ସେହି ଶେଷ ମୁହୂର୍ତ୍ତଯାଏ ଆମେ ମଶାରି ଭିତରେ ପଡ଼ି ରହିବାକୁ ଅଧିକ ପସନ୍ଦ କରୁଛୁ । କ୍ଷେତର କାମ ଛାଡ଼ି ଦଶମିନିଟ୍ ଆଗରୁ ଚାଲି ଆସିବାକୁ ଆମର ମନ ଛଟପଟ ହେଉଛି । କ୍ଷେତକୁ ଗଲାବେଳକୁ ଦଶ ମିନିଟ୍ ଯଦି ବିଳମ୍ବ ହୋଇଯାଇପାରେ ତେବେ ସେ ତ ଅତି ତୁଚ୍ଛର କଥା । କିନ୍ତୁ କ୍ଷେତରୁ ଫେରିବାବେଳେ ମିନିଟ୍ କଣ୍ଟା ଠିକ୍ ଜାଗାରେ ରହିଥିବା ଦରକାର । ଏ ଅଳସୁଆମି ଆମକୁ ଅନେକ ଶିଥିଳ କରିଦେଲାଣି । ଖାଇବା ଘଣ୍ଟା ବାଜୁଛି, ଆମର ଏସଙ୍ଗେ ସଙ୍ଗେ ଯାଇ ଥାଳି ଧରି ଗୋଷ୍ଠୀରେ ବସିବା କଥା; କିନ୍ତୁ ଆମ ଭିତରୁ କିଏ ଗପ କରୁଛି, କିଏ ବାଛଣାରେ ଗଡ଼ପଡ଼ ହୋଇ ଅଳସ ମାରୁଛି । ପୁଣି କିଏ ବହି କଣ୍ଢେ ଧରି ପଢ଼ୁଛି । ଠିକ୍ ସମୟରେ ସଭିଙ୍କ ସହିତ ଯୋଗଦେବାଟା ଯେ ଆମ ସାମାଜିକତାର ଗୋଟାଏ ଅଂଗ, ସେ କଥା କେହି ଭାବିପାରୁନାହାନ୍ତି । ଏପରି ଟାଣି ଓଟାରି ଜୀବନ ବଞ୍ଚିବାଦ୍ୱାରା ଜୀବନର ସବୁ ଆନନ୍ଦ ଆମେ ହରାଇ ବସିଛୁ । ଯୋଉଠି ଆନନ୍ଦ ଥାଏ, କେବଳ ସେଇଠି ହିଁ ମଣିଷ ସ୍ୱାଧୀନ ଭାବରେ ତା'ର ଆପଣା ଶକ୍ତି-ଭଣ୍ଡାରର ବିନିଯୋଗ କରିପାରେ । ଆମ ଭିତରେ ବିପୁଳ ଶକ୍ତି ରହିଛି । କିନ୍ତୁ ଅଳସୁଆମିର ନାନା ସୁନା ଢାଙ୍କୁଣି ଦେଇ ଆମେ ସେ ଶକ୍ତିକୁ ଘୋଡାଇ ରଖିଛୁ । ସେ ଶକ୍ତିକୁ ଚିହ୍ନିବାକୁ ବି ଆମକୁ ଡର ଲାଗୁଛି । ଆମର ଯୌବନ ଓ ଆମର ମଣିଷପଣିଆ ବୃଥା ଯାଉଛି ।

ଆମର ଏ ଦୁର୍ଭାଗ୍ୟ ଲାଗି ଆମ ସମାଜ ହିଁ ଆମଠାରୁ ଅଧିକ ଦାୟୀ । ରୋଗୀ ମାଆର ଲାଳନରେ ପିଲା ରୋଗୀ ହୋଇ ଚାଲେପରି ଏ ରୋଗୀସମାଜର ଭିତରେ ରହି ଆମେ ମଧ୍ୟ ନାନାପ୍ରକାର ରୁଗ୍ଣ ମନୋଭାବର ଗୋଟିଏ ଗୋଟିଏ ଝଣି ହୋଇ ସାରିଲୁଣି । ଆମ ଦେଶର ପୁରୁଣା ଶାସ୍ତ୍ରରେ ଯେତେ

ଭଲ କଥା ବା ବଡ଼ କଥା ଆଉ ପଛକେ, ବର୍ତ୍ତମାନ ଆମ ସମାଜ ମନଠାରୁ ଶରୀରକୁ ହିଁ ଅଧିକ ମହତ୍ତ୍ୱ ଦେଉଛି ; ଆତ୍ମାର ସମସ୍ତ ପ୍ରସଙ୍ଗ ଉଡ଼ିଗଲାଣି । ଆମ ସମାଜରେ ଶରୀର ଲାଗି ଯିଏ ଯେତେ ଭଲ ଖାଇପାରିଲା, ଶରୀରକୁ ଯିଏ ଯେତେ ଭଲ ପୋଷାକରେ ସଜାଇ ପାରିଲା, ଆମ ଶରୀରରୂପୀ ଅମୂଲ୍ୟ ଧନକୁ ଯିଏ ଯେତେ କମ କାମରେ ଖଟାଇ ପାରିଲା, ତାହାରି ଆଦର ଆମ ସମାଜରେ ହେଉଛି । ଆମ ସମାଜ ତାହାକୁ ହିଁ ସଫଳ ବା ନବାବ୍ ବୋଲି କହୁଛି । ନାନାପ୍ରକାର ଅଳ ଓ ଆଡ଼ମ୍ବରରେ ଆମ ସମାଜରେ ଆଜି ସେଇ ଅଳସୁଆ ହେବାର ଜୟଜୟକାର ହେଉଛି । ଆମର ପଇସା, ଆମର ପାଠ ଓ ଆମର ବୁଦ୍ଧି ଯଦି ଆମକୁ ଅଧିକରୁ ଅଧିକ ଅଳସୁଆ ହେବାରେ ସାହାଯ୍ୟ କରି ନ ପାରିଲେ, ତେବେ ସେ ପଇସା, ପାଠ ଓ ବୁଦ୍ଧିର କୌଣସି ମୂଲ୍ୟ ରହୁନାହିଁ । ସେଥିଲାଗି ପ୍ରତ୍ୟେକ କାମକୁ ଆମେ ଆନନ୍ଦର ଖାଦ୍ୟ ବୋଲି ନୁହେଁ, ଖାଲି ଖଟଣି ବୋଲି ହିଁ ମନେ କରୁଛୁ ।

ଏ ଦୁର୍ଭାଗ୍ୟରୁ ବଞ୍ଚିବାକୁ ହେଲେ ଆମର ଏ ସମାଜକୁ ବଦଳାଇବାକୁ ହେବ । କିନ୍ତୁ ଖାଲି ପାଟିକଲେ ବା ବକ୍ତୃତା ଦେଲେ ସମାଜ ବଦଳିବ ନାହିଁ । ଖାଲି ଗୁଡ଼ାଏ ପାଠ ପଢ଼ିଲେ ମଧ୍ୟ ସମାଜର ରୋଗ ହଟିଯିବ ନାହିଁ । ଆମର ଜୀବନ ଓ ଆମର ଦିନମାନର ଅଭ୍ୟାସରୁ ହିଁ ଏ ପୁରୁଣା ସମାଜକୁ ହଟାଇ ଦେବାକୁ ହେବ । ସବୁ ପ୍ରକାର ଅଳସୁଆମିକୁ ବାହାର କରିଦେବାକୁ ହେବ । ଆମର ଶରୀର ଉପରେ ଆମର ମନ ଓ ଆତ୍ମାକୁ ଚଢ଼ି ନେବାକୁ ପଡ଼ିବ । ଆମ ଆପଣାର ଶକ୍ତିକୁ ଖୁସି ହୋଇ କାମରେ ଲଗାଇବାକୁ ପଡ଼ିବ । ଯେତେବେଳେ ଯୋଉ କାର୍ଯ୍ୟର ଡାକରା ଆସିବ, ସେତେବେଳେ ସେଇ ମୁହୂର୍ତ୍ତରେ ଆମେ ସେଇ କାର୍ଯ୍ୟଲାଗି ପ୍ରସ୍ତୁତ ହୋଇଯିବା । ଉଠିବାର ଘଣ୍ଟା ଶୁଣିଲେ ଆମେ ସଙ୍ଗେ ସଙ୍ଗେ ଉଠିପଡ଼ିବା । ପ୍ରାର୍ଥନାର ବେଳ ଆସିଲେ ଆମେ ଅତି ନୀରବ ଓ ଆନନ୍ଦ ମନୋମୁଦ୍ରାରେ ସେଥିଲାଗି ତିଆରି ହୋଇଯିବା । କ୍ଷେତ ବା ବଗିଚାରେ ଆମର ସେବା ଦରକାର ହେଲେ ସଙ୍ଗେ ସଙ୍ଗେ ଆମେ ସେଥିଲାଗି ବାହାରି ପଡ଼ିବା । ଠିକ୍ ସେହିପରି ରାତିରେ ଶୋଇବାର ସମୟ ଆସିଲେ ଦଣ୍ଡକ ଭିତରେ ଆମେ ଶାନ୍ତ ହୋଇ ଶୋଇଯାଇ ପାରିବା । ଆମ ଶରୀରର

ଆଲସ୍ୟ କେତେବେଳେ ହେଲେ ଆମକୁ ଅଟକାଇ ରଖିପାରିବ ନାହିଁ । ଆମ ଭିତରେ ଥିବା ଶକ୍ତିକୁ ଆମେ ଖୁସି ହୋଇ କାମରେ ଲଗାଇବା । ଆମର ଜ୍ଞାନ ଆମକୁ ଏଇ ଶକ୍ତିକୁ ଚିହ୍ନିବାରେ ସହାୟକ ହେବ । ତେବେ ଆଉ ଶୋଇ ରହିବାର ବା ଅଳସୁଆ ହୋଇ ସଂସାରକୁ ଠକିବାର ଭ୍ରମରେ ଆମେ ଆଦୌ ପଡ଼ିବା ନାହିଁ ।

୩ । ୮ । ୫୬

ଆଠ ଦିନତଳେ ପଣ୍ଡିତ ଗୋଦାବରୀଶ ମିଶ୍ର ଇହଧାମ ତ୍ୟାଗ କଲେ । ମଲା ବେଳକୁ ତାଙ୍କର ବୟସ ସତୁରିକୁ ବଳିଯାଇଥିଲା । ଗତ କେତେ ମାସ ଧରି ସେ ଡାକ୍ତରଖାନାରେ ଅସୁସ୍ଥ ହୋଇ ପଡ଼ିଥିଲେ । ତାଙ୍କର ମୃତ୍ୟୁରେ ଓଡ଼ିଶାର ଘରିଆଡ଼େ ଶୋକର ଛାୟା ବ୍ୟାପିଗଲା । ଓଡ଼ିଶାର ଯାବତୀୟ କ୍ଷେତ୍ରରେ ସେ ନିଜକୁ ପରିଚିତ କରାଇ ପାରିଥିଲେ । ମାଇନର ସ୍କୁଲର ପିଲାଙ୍କଠାରୁ ଆସେମ୍ବ୍ଲି ମଣ୍ଡଳର ନେତା, ଅଣନେତାମାନଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଚିହ୍ନିଥିଲେ । ଘରିଆଡ଼େ ତାଙ୍କ ଲାଗି ଶୋକସଭା କରାଗଲା । ତାଙ୍କର ପକ୍ଷବାଦୀ ଓ ବିପକ୍ଷବାଦୀ ଉଭୟେ ତାଙ୍କର କୃତିମାନ ମନେପକାଇ ତାଙ୍କ ମୃତ୍ୟୁରେ ଦୁଃଖିତ ହେଲେ । କେହି ତାଙ୍କର କବି-ଜୀବନର ପ୍ରଶଂସା କଲେ । କେହି ତାଙ୍କର ଇଂରାଜୀଭାଷାରେ ବକ୍ତୃତା ଦେବାର ଶକ୍ତି ବିଷୟରେ ବକ୍ତୃତା ଦେଲେ । କେହି ତାଙ୍କୁ ସତ୍ୟବାଦୀ ବକୁଳବନର 'ପଞ୍ଚସଖା' ଭିତରୁ ଜଣେ ବୋଲି କହିଲେ; ପୁଣି ଆଉ କେହି ତାଙ୍କୁ ଶିକ୍ଷାବିତ୍ ହିସାବରେ ବର୍ଣ୍ଣନା କଲେ । ପୁଣି ସମସ୍ତେ ନିର୍ବିବାଦରେ ସ୍ୱୀକାର କଲେ ଯେ ତାଙ୍କର ମୃତ୍ୟୁରେ ଓଡ଼ିଶାର ରାଜନୈତିକ ଆକାଶରୁ ଗୋଟିଏ ଉଜ୍ଜ୍ୱଳ ତାରକା ଖସିପଡ଼ିଲା ।

କୌଣସି ଜଣେ ପ୍ରଧାନ ବ୍ୟକ୍ତି ମରିଯିବା ପରେ ତାଙ୍କର ଗୁଣରାଶି ବଖାଣିବା ଅତି ସ୍ୱାଭାବିକ କଥା । ପଣ୍ଡିତ ଗୋଦାବରୀଶ ବଞ୍ଚିଥିବାବେଳେ ଆମେ ଆମର ଜାତୀୟ ଜୀବନରେ ତାଙ୍କୁ ହୁଏତ ଏତିକି ମହତ୍ତ୍ୱ ଦେଉ ନ ଥିଲେ ।

କିନ୍ତୁ ପରଲୋକଗତ ଆତ୍ମା ପ୍ରତି ସମୁଚିତ ସମ୍ମାନ ଦେଖାଇବା ପ୍ରତ୍ୟେକ ବିବେକୀ ସମାଜର କର୍ତ୍ତବ୍ୟ । ପଣ୍ଡିତ ଗୋଦାବରୀଶ ତାଙ୍କ ଜୀବଦ୍ଦଶାରେ ଯେତିକି ସେବା କରିଛନ୍ତି, ସେଥିଲାଗି ସେ ନିଶ୍ଚୟ ସମସ୍ତଙ୍କର ନମସ୍ୟ ଓ ସ୍ମରଣୀୟ ହୋଇ ରହିଥିବେ । ଅନେକ କ୍ଷେତ୍ରରେ ଅନେକ ଦିନଯାଏ ନିଶ୍ଚୟ ତାଙ୍କର ଅଭାବ ଅନୁଭୂତ ହେବ । ସ୍ୱର୍ଗତ ଗୁରୁଜନଙ୍କ ପ୍ରତି ସମସ୍ତ ଶ୍ରଦ୍ଧା ଓ ଭକ୍ତି ନିବେଦନ କରିସାରିବା ପରେ, ତଥାପି କେତେଟା କଥା ନିଶ୍ଚୟ ଆମ-ମନରେ ଉଠିବ । ଗତ କେତେ ବର୍ଷରେ ଓଡ଼ିଶାରେ ଘଟିଯାଇଥିବା ଘଟଣା-ବଳୀକୁ ଯିଏ ଅନୁଧ୍ୟାନ କରିଥିବ, ପଣ୍ଡିତ ଗୋଦାବରୀଶଙ୍କୁ ନେଇ ନିଶ୍ଚୟ ତା'ମନରେ ଗୋଟାଏ ପ୍ରତିକ୍ରିୟା ଜନ୍ମିବ ।

ପଣ୍ଡିତ ଗୋଦାବରୀଶ ଯେତେବେଳେ ପାଠ ପଢ଼ିସାରିଲେ, ସେତେବେଳେ ଓଡ଼ିଶାରେ ଏତେ ବେଶୀ ସଂଖ୍ୟାରେ ଉଚ୍ଚ ଶିକ୍ଷିତ ନ ଥିଲେ । ତାଙ୍କ ବାଣପୁର ଅଞ୍ଚଳରେ ତାଙ୍କ ପୂର୍ବରୁ କେହି କଲେଜଯାଏ ଯାଇନଥିଲେ । ଏତେ ବଡ଼ ଜଣେ ପ୍ରବୀଣ ଡିଗ୍ରୀଧାରୀଙ୍କ ଲାଗି ସେତେବେଳେ ଅନେକ ଉଚ୍ଚ ଉଚ୍ଚ ଚାକିରି ସୁଗମ ହୋଇଥାନ୍ତା । ସେ କିନ୍ତୁ ସେସବୁ ଲୋଭରେ ପଡ଼ିଲେ ନାହିଁ—ଏକ ବୃହତ୍ତର ଆବିଷ୍କାରର ନାବିକ ହୋଇ ଦେଶର ସେବା-କ୍ଷେତ୍ରରେ ସାମିଲ ହେଲେ । ଉତ୍କଳମଣିଙ୍କର ଜୀବନାଦର୍ଶ ତାଙ୍କୁ ଅନୁପ୍ରାଣିତ କରିଆଣିଲା । ଉତ୍କଳମଣି ବଞ୍ଚିଥିଲା ପର୍ଯ୍ୟନ୍ତ ଗୋଦାବରୀଶ ତାଙ୍କର ସହକର୍ମୀ ହୋଇ ରହିଲେ । ତାଙ୍କଠାରେ ନିଷ୍ଠାର ଅନ୍ତ ନ ଥିଲା; ସେବାକାଙ୍କ୍ଷା ଓ ଶକ୍ତିର ଅଭାବ ନଥିଲା; ଯେଉଁ କ୍ଷେତ୍ରକୁ ସେ ଗଲେ, ସେ କ୍ଷେତ୍ରରେ ନେତୃତ୍ୱ ଦେବାର ଯୋଗ୍ୟତା ତାଙ୍କର ଥିଲା । କିନ୍ତୁ ସେ ଚାଲିଯିବାପରେ ଆଜି ମୁଁ ଭାବୁଚି, ଗୋଦାବରୀଶଙ୍କର ସେବା ବା କୃତି ପରିପୂର୍ଣ୍ଣ ହୋଇପାରିଲା ନାହିଁ । ସେ ନାନା କ୍ଷେତ୍ରରେ ହାତ ଦେଲେ, ନାନା କ୍ଷେତ୍ରରେ ଆପଣାର ତୁଣ୍ଡ ଶୁଣାଇଲେ । ତେଣୁ କୌଣସି ଗୋଟିଏ କ୍ଷେତ୍ରରେ ମଧ୍ୟ ସେ ସାର୍ଥକ-ଭାବରେ ଆପଣାର ପରାକ୍ରମ ଦେଖାଇ ପାରିଲେ ନାହିଁ । କୌଣସି ଗୋଟିଏ କ୍ଷେତ୍ରରେ ମଧ୍ୟ ଆପଣାର ପ୍ରତିଭା ଅନୁରୂପ ପରିଚୟ ସେ ଦେଇପାରିଲେ ନାହିଁ । ଆପଣାର ସ୍ୱତନ୍ତ୍ର କ୍ଷେତ୍ର ବାଛିବା ପୂର୍ବରୁ ସେ କ୍ଷେତ୍ରରୁ କ୍ଷେତ୍ରାନ୍ତର ହେବାର

ମୋହରେ ପଡ଼ିଗଲେ । ସେଥିଲାଗି ତାଙ୍କ ଶକ୍ତିର ପରିପୂର୍ଣ୍ଣ ପ୍ରକାଶ ହୋଇ ପାରିଲା ନାହିଁ । ଦେଶ ତାଙ୍କର ପରିପୂର୍ଣ୍ଣ ସେବା ପାଇପାରିଲା ନାହିଁ । ତାଙ୍କର ପାଣ୍ଡିତ୍ୟ ଥିଲା, ପ୍ରତିଭା ଥିଲା ଅଥଚ ସ୍ଥିର ହୋଇ ଆପଣାର କ୍ଷେତ୍ରରେ ସ୍ଥିର ରହି, ଆପଣାର ଯୋଗ୍ୟ ନିବେଦନ କରିବାର ଧୈର୍ଯ୍ୟ ନ ଥିବାରୁ ଅତି-ଅସଂପୂର୍ଣ୍ଣଭାବରେ ତାଙ୍କର ଜୀବନ ଇତି ହୋଇଗଲା । ପ୍ରଥମେ ସେ ସତ୍ୟବାଦୀ ବିଦ୍ୟାପୀଠର ଶିକ୍ଷାପ୍ରୟୋଗରେ ଜଣେ କର୍ମୀ ହିସାବରେ ଯୋଗ ଦେଇଥିଲେ । ସେଥିରେ ଯଦି ସେ ସ୍ଥାୟୀଭାବରେ ତିଷ୍ଠିପାରିଥାନ୍ତେ, ତେବେ ଆଜି ହୁଏତ ସତ୍ୟବାଦୀର ସାଧନାପୀଠ ହିଁ ସାରା ଓଡ଼ିଶାକୁ ବାଟ ଦେଖାଇ-ଥାଆନ୍ତା; ସତ୍ୟବାଦୀ ହିଁ ସାରା ଓଡ଼ିଶାର ପୁଣ୍ୟ ସଂସ୍କୃତିମଣ୍ଡପ ହୋଇ ରହିଥାନ୍ତା । ସାରା ଓଡ଼ିଶାରୁ ଦାରିଦ୍ର୍ୟ ଓ ଅଜ୍ଞତା ଦୂର କରିବା ଲାଗି ସତ୍ୟବାଦୀ ହୁଏତ ଆଜି ମଧ୍ୟ ବ୍ରତୀଦଳ ତିଆରି କରୁଥାଆନ୍ତା । କିନ୍ତୁ ସେ ସୌଭାଗ୍ୟ ଓଡ଼ିଶାର ହେଲା ନାହିଁ ।

ଓଡ଼ିଶାର ସାହିତ୍ୟ-କ୍ଷେତ୍ରରେ ଗୋଦାବରୀଶଙ୍କ ଦାନ କିଛି କମ ନୁହେଁ; କିନ୍ତୁ ନାନାପ୍ରକାର ଅନ୍ୟ ଅନୁରକ୍ତିରେ ବିଭକ୍ତ ହୋଇପଡ଼ି ତାଙ୍କର ସାହିତ୍ୟ ସାଧନାକୁ ମଧ୍ୟ ସେ ଯଥେଷ୍ଟ ଅନୁରକ୍ତି ଦେଇପାରିଲେ ନାହିଁ । ତାଙ୍କର ଲେଖନୀ ଆହୁରି ସମୃଦ୍ଧ ହୋଇଥାନ୍ତା, ଯଦି ସେ ସାହିତ୍ୟ କ୍ଷେତ୍ରରେ ଅଧିକ ମନୋନିବେଶ କରିପାରିଥା'ନ୍ତେ । ରାଜନୀତି-କ୍ଷେତ୍ରରେ ମଧ୍ୟ ଗୋଦାବରୀଶଙ୍କୁ ସେହି ଦଶା ପଡ଼ିଲା । ସ୍ଥାନ ବଦଳାଇବାରେ ହିଁ ତାଙ୍କ ରାଜନୈତିକ ଜୀବନର ଅଧିକ ଶକ୍ତି ସରିଲା । ଶେଷ ପର୍ଯ୍ୟନ୍ତ ମଧ୍ୟ ସେ କେଉଁ ରାଜନୈତିକ ଆଦର୍ଶରେ ବିଶ୍ୱାସ କରୁଥିଲେ ବା ଦେଶ ଓ ଜାତିକୁ ନେଇ ସେ କି ଚିତ୍ରର କଳ୍ପନା କରୁଥିଲେ, ସେତିକ କେହି ଜାଣିପାରିଲେ ନାହିଁ । ଆପଣା ଆହ୍ୱାନରେ ସତତ ପରିବର୍ତ୍ତନର ବ୍ୟସ୍ତତା ଭିତରେ ଆପଣାର ପାଦକୁ ସ୍ଥିର କରୁ କରୁ ସେ ଏପରି ଏକ ଚିତ୍ରର କଳ୍ପନା କରିବାକୁ କେତେଦୂର ଅବକାଶ ପାଇଥିବେ, ସେଥିରେ ସନ୍ଦେହ କରିବାର ଯଥେଷ୍ଟ କାରଣ ରହିଛି ।

ତେଇଶି ବର୍ଷତଳେ ଖଣ୍ଡେ ବହିର ମୁଖବନ୍ଧରେ ପଣ୍ଡିତ ଗୋଦାବରୀଶ ଲେଖିଛନ୍ତି—"ମୋର ମନେହୁଏ, ନିମ୍ନ କ୍ଷେତ୍ରରେ ରହି ସେବା କରିବା

ନିମନ୍ତେ ବିଧାତା ମୋତେ ଶକ୍ତି ଦେଇଥିଲେ । ସେ ଶକ୍ତି ଧରି ଉପରେ ଉଡ଼ିବାକୁ ବସିବା ମୋ ପକ୍ଷରେ ଭୁଲ ହୋଇଛି ।" ଗତ ତେଇଶି ବର୍ଷ ଭିତରେ ଗୋଦାବରୀଶ କିଛି କମ୍ ଉପରେ ଉଡ଼ିନାହାନ୍ତି । ତଥାପି ଯେତେ ଯୁଆଡ଼େ ଉଡ଼ି ଯେତେ ବାହ୍ୱା ବାହ୍ୱା ପାଇଲେ ମଧ୍ୟ ହୁଏତ ଆପଣା କ୍ଷେତ୍ରରୁ ହୁଡ଼ି ଆସିବାର ଅସନ୍ତୋଷ ସବୁବେଳେ ତାଙ୍କୁ ଖାଇଗୋଡ଼ାଇଥିବ । ଯିଏ ଆପଣାର ସ୍ୱତନ୍ତ୍ର କ୍ଷେତ୍ର ଜୀବନରେ ପାଏ ଓ ସେଇଠି ରହିବାର ଧୈର୍ଯ୍ୟ ଅର୍ଜନକରେ, ସଂସାରରେ ସେଇ ମଣିଷର ଜୀବନ ଧନ୍ୟ ହୁଏ; ସେଇ ଜୀବନ ବଞ୍ଚିବାର ଯଥାର୍ଥ ଆନନ୍ଦ ପାଏ । ଯିଏ ନାନା କ୍ଷେତ୍ରରେ କୁଦାମାରିବାର ଲୋଭରେ ପଡ଼େ, ସେ ଆପଣାକୁ ହରାଇ ବସେ । ଆପଣାର ପ୍ରିୟ କ୍ଷେତ୍ର—ସେ ଯେତେ ନିମ୍ନ ହେଉ ପଛକେ,—ଛାଡ଼ି ପଣ୍ଡିତ ଗୋଦାବରୀଶ ଉପରେ ଉଡ଼ିଲେ, ତାହାହିଁ ଓଡ଼ିଶାର ବଡ଼ ଦୁର୍ଭାଗ୍ୟ ।

୭ । ୮ । ୫୭

ଦେଶଲାଗି ଆଜି ଅନେକେ ଅନେକ ପ୍ରକାରର କଲ୍ୟାଣ କାମନା କରୁଛନ୍ତି । ଏ ଦେଶରେ ବଡ଼ ବଡ଼ କୋଠା ହେବ, ଏ ଦେଶର ନଈ-ନାଳ ବନ୍ଧାହୋଇ ଘରେ ଘରେ ବିଜୁଳିବତୀ ଜଳିବ, ରେଡ଼ିଓ ଲାଗିବ, ଏତେ ବର୍ଷ ଭିତରେ ଏତେଟା କାରଖାନା ବା ଏତେଟା କଳ ବସିବ—ଏସବୁ ଖବରଗୁଡ଼ିକ ନିତି ଆମେ କାଗଜରେ ପଢ଼ିବାକୁ ପାଉଛୁ । ସେଥିଲାଗି ପ୍ରତ୍ୟେକ ବର୍ଷ କୋଟି କୋଟି ଟଙ୍କା ଖରଚ ହେଉଛି । କେତେ ପାଠୁଆ ହାକିମ ରଖା ଯାଉଛନ୍ତି । ଆମର ଆଖି ଆଗରେ ସୁଖ ସମୃଦ୍ଧିର ଆଦର୍ଶ ହୋଇ ଆମେରିକା ରହିଛି, ରୁଷିଆ ରହିଛି । ଦେଶର କଲ୍ୟାଣ-କଳ୍ପନା ବଦଳିବା ସହିତ ବ୍ୟକ୍ତିଗତ କଲ୍ୟାଣର କଳ୍ପନାମାନ ମଧ୍ୟ ବଦଳୁଛି । ଆମର ଚାହିଦା ଅନୁସାରେ ବଜାରରେ ଆବଶ୍ୟକ ଓ ଅନାବଶ୍ୟକ ନାନା ସାମଗ୍ରୀ ଭର୍ତ୍ତିହୋଇ ଗଲାଣି । ଲୋକଙ୍କ ଅଭାବ ଦିନକୁଦିନ ବଢ଼ିଚାଲିଛି । ଆଜି ଭଲ କମିଜର ଅଭାବ ହେଉଛି ତ କାଲି ଭଲ ଶାଢ଼ୀର ଅଭାବ ହେଉଛି । ଆଉ ଟିକିଏ ଉପର ସ୍ତରକୁ ଉଠିଗଲେ

କେଉଁଠି କୋଟ, ମୋଜା ବା ମଫଲର ଗାଉନର ଅଭାବ ରହୁଛି । ଅଭାବ ମେଣ୍ଟାଇବାର ନାନା ଫନ୍ଦି ଫିକର ଏ ଦେଶରେ ଚବିଶଘଣ୍ଟା ଚାଲୁଥିଲେ ମଧ୍ୟ ଅଭାବବୋଧର ଏକ ଅପ୍ରତିହତ ଅଜଗର ଆମକୁ ନିତି ବ୍ୟସ୍ତକରି ଲାଗିରହିଛି । ଦେଶର ଏ ହାଉଆ ଆମର ଏ ଜଙ୍ଗଲ ଭିତରେ ମଧ୍ୟ ଭୁଲିଯାଉଛି । ଆମର ନାନା ଅଭାବର କଳ୍ପନାରେ ଆମେ ବି ବେଳେ ବେଳେ ବଡ଼ ହନ୍ତସନ୍ତ ହୋଇପଡ଼ୁଛୁ । କୋଉ ବଜାରରେ ବା କୋଉ ସଭାରେ କାହାର ଗୋଟାଏ ନୂଆ ପ୍ରକାରର କମିଜ ଦେଖି ଆସିଲୁ ତ, ଆମର ମନ ହେଉଛି, ଆମେ ବି ସେମିତି ଖଣ୍ଡିଏ କମିଜ କରି ଆନନ୍ଦ ଟିକିଏ ପାଇବା । କାହା ଗୋଡ଼ରେ ନୂଆ ଜୋତା ହଳେ ଦେଖି ଆସି ଆମେ ଭାବୁଛୁ, ଆମ ଗୋଡ଼ତଳେ ସେଥିରୁ ପଟେ ପଟେ ଚକ୍‌ଚକି ଚମଡ଼ା ରହନ୍ତା କି ! ତଳେ ତିନି ପରସ୍ତ ଆଉ ଉପରେ ତିନି ପରସ୍ତ ପୋଷାକ ପିନ୍ଧିବାର ନିଶା ଆମକୁ ବେଳେ ବେଳେ ବେଶ୍ ନରମ କରି ରଖୁଛି । ଏଇଠି, ଏ ସଭ୍ୟତାରୁ ଅନେକ ଦୂରରେ ଥିବା ଜଙ୍ଗଲରେ ମଧ୍ୟ ଆମେ ଫେସନର ପ୍ରତିଯୋଗିତା ବେଶ୍ ଜମାଇ ରଖୁ ଥାଉଁ ।

ତୁମ୍ଭମାନଙ୍କୁ ମୁଁ ଈର୍ଷା କରିବାକୁ ଯାଉନାହିଁ । ତୁମେମାନେ ଭଲ ପିନ୍ଧିବାକୁ ଚାହୁଁଚ ବୋଲି ତୁମ ସହିତ ବିବାଦ ଲଗାଇବା ମୋର ଇଚ୍ଛା ନୁହେଁ । ମୁଁ ବି ପିଲାଦିନେ କମ୍ ଫେଶନ୍ ହୋଇନାହିଁ; ଆପଣାର ଦେହକୁ ସଜାଇବାର କଳ୍ପନାରେ କମ୍ ବାଉଳା ହୋଇନାହିଁ । ସବୁରି ଜୀବନରେ ଏମିତି ଗୋଟାଏ ସମୟ ଆସେ; ସବୁଠି ଅଶିକ୍ଷା ବା କୁଶିକ୍ଷା ଏମିତି ବାଉଳା କରେ । ଶିକ୍ଷାର ଅଭାବ ହେଉଛି କୁଶିକ୍ଷା ବା ଅଶିକ୍ଷା । ଜୀବନର ଶିକ୍ଷା ଯେତିକି ଯେତିକି ମହତ୍ତ୍ୱ ସଂଗ୍ରହ କରେ, ଯେତିକି ଯେତିକି ସେ ସବୁପ୍ରକାର ଅନୁକରଣ ଲାଳସାକୁ ଦୂରକରି ଆପଣା ବାଟ ଆପେ ଗଢ଼ିବାର ସମ୍ମାନ ଓ ବିଶ୍ୱାସ ମଣିଷକୁ ଦିଏ, ସେତିକି କୁଶିକ୍ଷାର ଭ୍ରମ ତୁଟିଯାଏ । ଆପଣା ବାଟ ଆପେ କାଢ଼ି ସେଇଥିରେ ଚାଲିବାର ସମ୍ମାନ ଓ ସାହସ ଯାହାର ଆସିନାହିଁ, ପରର ଜଣଙ୍କର ହୀନ ଅନୁକରଣ କରି ସିଏ ଅତି ଦୁର୍ବଳ ଆଉ ବିକଳ ହୋଇପଡ଼ିଛି, ସେଇ ହୁଏତ ଆପଣାକୁ ନାନାଭାବେ ସଜାଇବାର ଲୋଭରେ ଜର୍ଜର ହୋଇ ପଡ଼ୁଛି । ଜୀବନର ବିକାଶସୂତ୍ରଟି ମିଳିଗଲାକ୍ଷଣି ଏ ମୋହ ତୁଟିଯିବ । ସାପ ତାର କାତି ଛାଡ଼ିଦେଲା-

ପର ଆମେ ବି ଦିନେ ଆମର ସମସ୍ତ ଅନୁକରଣର ତୁଚ୍ଛ ଆଡ଼ମ୍ବର ଛାଡ଼ି ନିର୍ମଳ ଓ ନିର୍ଭୀକ ହୋଇ ବାହାର ଆସିବା । ଆମର ବି ଦିନେ ଦିନ ପାହିବ । ସୁଶିକ୍ଷା ମଣିଷକୁ ସରଳ କରେ, ବିନୀତ କରେ, ନିର୍ଭୀକ ଓ ଅନାଡ଼ମ୍ବର କରେ । ଯାହାର ଜୀବନକୁ ସରଳ କରି ସିଏ ଯେତିକି ଖୁସି ହୋଇ ପାରିଛି, ତା' ଜୀବନରେ ଶିକ୍ଷା ସେତିକି ଭେଦିଛି ବୋଲି ବୁଝିବାକୁ ହେବ ।

ମୌଳିକ ବିଦ୍ୟାଳୟର ପିଲାମାନଙ୍କୁ ସୂତା କାଟି ମୋଟା ଲୁଗା ପିନ୍ଧିବାକୁ ପଡ଼େ । ଦୁର୍ଭାଗ୍ୟବଶତଃ ସେହିପରି ଗୋଟାଏ ଶର୍ତ୍ତ୍ୟାଳ ରହି ଆସୁଥିବାରୁ ହୁଏତ ଆମେ ଏଠି ସୂତା କାଟିବାକୁ ବା ମୋଟା ଖଦଡ଼ ପିନ୍ଧିବାକୁ ବାଧ୍ୟ ହେଉଛୁ; ହୁଏତ ଆମର ମନଖୁସିରେ ଏହାକୁ ବ୍ରତରୂପେ ଗ୍ରହଣ କରିନାହୁଁ । ସୂତାକାଟି ଖଦଡ଼ ପିନ୍ଧିବା ଦ୍ୱାରା ତୁମମାନଙ୍କର କ'ଣ ଉପକାର ବା ଅପକାର ହୁଏ ସେ କଥା ମୁଁ ଜାଣେ ନାହିଁ । ଏହା ମଣିଷକୁ ସରଳ ଜୀବନଯାପନ କରିଶିଖାଏ । ମୋ ମତରେ ଏହାହିଁ ସୂତା କାଟିବାର ଓ ଖଦଡ଼ ପିନ୍ଧିବାର ସବୁଠାରୁ ବଡ଼ କଥା । ଖାଲି ଏ ଦେଶରେ ନୁହେଁ, ଏ ପୃଥିବୀରେ ଅଧିକରୁ ଅଧିକ ଲୋକଙ୍କର ଲୁଗା ଅଭାବରୁ ଲାଜ ଲୁଚିପାରୁ ନାହିଁ । ଏହି ପୃଥିବୀର ମଣିଷ ହିସାବରେ ସେମାନଙ୍କୁ ଲଙ୍ଗଳା କରି ରଖିଥିବା ଅର୍ଥନୀତି ଓ ଅସାମାଜିକ ବ୍ୟବସ୍ଥାର ପ୍ରତିବାଦ କରି ମୁଁ ସୂତା କାଟିବି ଓ ଖଦଡ଼ ପିନ୍ଧିବି । ଭୋଗ କରିବା ଓ ଫେଶନ ହେବା ଅପେକ୍ଷା ମଣିଷପଣିଆ ମୋର ବେଶୀ ଦରକାର । ସାରା ପୃଥିବୀ ଲାଗି ମଧ୍ୟ ମଣିଷପଣିଆ ବେଶୀ ଦରକାର । ସେଥିଲାଗି ମୁଁ ଜୀବନକୁ ସରଳ କରିବି, ମୋର ବେଶଭୂଷାକୁ ସରଳ କରିବି, ମୋର ରୁଚିକୁ ସରଳ କରିବି । ଏ ପୋଷାକ, ଏ ଅଳଙ୍କାର ଓ ଏ ଆଡ଼ମ୍ବର କେବଳ ମୋର ଶାରୀରିକ ଜୀବନର ପରିଚର୍ଯ୍ୟା ମାତ୍ର । ଶରୀର ମୋର ଜୀବନର ଧ୍ୟେୟ ନୁହେଁ; ତାହା ଏକ ସାଧନମାତ୍ର । ତେଣୁ ବାହାରଟାକୁ ତୋଫା କରି ଦେଖାଇବାର ଜଟିଳତା ମୋ ଜୀବନରେ ଯେତିକି ଯେତିକି ବଢ଼ୁଥିବ, ଶରୀରଟାକୁ ନାନା ଢଙ୍ଗରେ ଲୁଚାଇ ରଖିବା ଲାଗି ଯେତିକି ମୋର ମୁଣ୍ଡବ୍ୟଥା ଲାଗିରହିଥିବ, ସେତିକି ମୋର ଭିତରଟା ମରି ମରି ଯିବ; ମୋର ଅନ୍ତର ସେତିକି ଶୁଖି ଶୁଖି ଯିବ । ସଂସାରରେ ଓ ଇତିହାସରେ ଯୋଉଠି ମଣିଷ

ଭୋଗ ଆଉ ବାହାର ମଣ୍ଡନରେ ମାତିଛି, ସେଠି ତା'ର ସ୍ୱଚ୍ଛତା ମରିଯାଇଛି; ତା'ର ଅନ୍ତର ନୀରସ ହୋଇଯାଇଛି, ତା'ର ଜୀବନ ଯନ୍ତ୍ରବତ୍ ହୋଇଯାଇଛି । ମୁଁ ଏ ଭୁଲ କରିବି ନାହିଁ । ମୁଁ ମୋର ମନର, ମୋର ବିଚାରର ଓ ମୋର ହୃଦୟର ନିର୍ଭୀକ ବିକାଶ କରିବାକୁ ଚାହେଁ—ଏହି ବ୍ରତସାଧନର ଯଜ୍ଞରେ ଦେହକୁ ମୋତେ କେବଳ ଏକ ସାଧନ ହିସାବରେ ବ୍ୟବହାର କରିବାକୁ ହେବ । ଦେହ ମୋର ଧ୍ୟେୟ ନୁହେଁ, ଦେହକୁ ସଜାଇବାର ଭ୍ରମରେ ମୁଁ ପଡ଼ିବି ନାହିଁ—ଏହି ସତ୍ୟର ଅଭ୍ୟାସ କରିବା ପାଇଁ ମୁଁ ସରଳ ହେବି । ଆମର ସୂତାକଟା ଓ ଆମର ଖଦଡ଼ ପିନ୍ଧା ଆମକୁ ପ୍ରଧାନତଃ ଏହି ସରଳ ହେବାର ସାଧନାରେ ଆଗେଇ ନେଉ ।

କିନ୍ତୁ ଖଦଡ଼ ପିନ୍ଧି ମଧ୍ୟ ଜଣେ ସରଳତାର ଜୀବନ-ରୁଚିକୁ ଭୁଲିଯାଇ-ପାରେ । ଆମ ଦେଶରେ ଅନେକ କୋଟିପତି ମଧ୍ୟ ଆଜି କେତେକ କାରଣରୁ ଖଦଡ଼ ପିନ୍ଧୁଛନ୍ତି । ମିଲଲୁଗାର ଦୋକାନ କରିଥିବା ଧନୀ ବ୍ୟବସାୟୀ ମଧ୍ୟ ନାନା ଉପଲକ୍ଷରେ ଖଦଡ଼ର ଚପକନ୍ ଓ ଶେରଓ୍ୱାନୀ ପିନ୍ଧି ବାହାରୁଛନ୍ତି । ଲୋଭୀ ପୁଞ୍ଜିପତିର ଗଦୀ ବିରୁଦ୍ଧରେ ଲଢ଼ାଇ ଘୋଷଣା କରି ଖଦୀର ପ୍ରବର୍ତ୍ତନ ହୋଇଥିଲା । ଆଜି ଅନେକ ସ୍ଥାନରେ ଗଦୀ ଆଉ ଖଦୀ ବଡ଼ ନିର୍ଲଜ୍ଜ ଭାବରେ ହାତ ମିଳେଇ ସାରିଲେଣି । ଏ ଅଭିସନ୍ଧି ଖଦୀର ଅନ୍ତର୍ନିହିତ ସରଳତାର ସମସ୍ତ ବିଚାରକୁ ବାହାରକୁ ଫିଙ୍ଗିଦେଇଛି । ଆମର ବିଦ୍ୟାର୍ଥୀ-ଜୀବନରେ ଯେପରି ଆମେ ସେ ଦୁର୍ବୁଦ୍ଧିରେ ନ ପଡ଼ିବା, ତା'ର ବିଚାର ଆମେ କରିବା । ମୋର ମନ ଯଦି ଶରୀରକୁ ସଜାଇବାର ଜାଲରେ ପଡ଼ିଥିବ, ସଂସାରକୁ ଜଡ଼କରି ରଖିଥିବା ନାନାପ୍ରକାର ଭୋଗ ଓ ଆଡ଼ମ୍ବର ଭାବନାରେ ଯଦି ମୁଁ ଆପଣାକୁ ହରାଇ ବସିଥିବି, ତେବେ ଏ ସୂତାକଟା ଓ ଖଦଡ଼ପିନ୍ଧାର ରୁଟିନ୍ ମୋତେ କଦାପି ସରଳ କରାଇ ପାରିବ ନାହିଁ ।

୭ । ୮ । ୫୭

ସ୍ୱାଧୀନତା ପାଇବା ପରେ ଆମ ଦେଶରେ ପ୍ରତିଭା-ପୂଜାର ଆଗ୍ରହ ବଢ଼ୁଛି । ଦେଶର ଜୀବନକୁ ଯେଉଁମାନେ ନିଜ ନିଜର ସାଧନା ଦ୍ୱାରା ସମୃଦ୍ଧ

କରିଛନ୍ତି, ଏଣିକ ଏଣିକ ଆମେ ସେମାନଙ୍କର ଜନ୍ମ ତିଥି ଓ ଶ୍ରାଦ୍ଧତିଥି ପାଳନ କରିବାକୁ ଆରମ୍ଭ କଲୁଣି । ସେମାନଙ୍କ ଲାଗି ବହୁ ଆଡ଼ମ୍ବରରେ ସଭାସମିତି ହେଉଛି; ପଣ୍ଡିତମାନେ ସେମାନଙ୍କ ବିଷୟରେ ବକ୍ତୃତା ଦେଉଛନ୍ତି; ନାନା ଆଡ଼ମ୍ବରରେ ବଡ଼ ବଡ଼ ମଣିଷଙ୍କୁ ମନେ ପକାଇ ଆମେ ଖୁବ୍ ଗୌରବ ପାଉଛୁ । ଏବେ ଦେଶସାରା ଲୋକମାନ୍ୟଙ୍କର ଜନ୍ମ ଶତବାର୍ଷିକୀ ପାଳନ କରାଗଲା । ସେମିତି ଅନେକ ସ୍ଥାନ ଓ ଅନୁଷ୍ଠାନରେ ଗୁରୁଦେବ ରବୀନ୍ଦ୍ରନାଥଙ୍କର ଶ୍ରାଦ୍ଧସଭା ବସୁଥିବ । ତାଙ୍କର ବିରାଟ ଜୀବନର ନାନା ବିଚିତ୍ର ଧାରାର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ହେଉଥିବ । ତାଙ୍କର ଦେହତ୍ୟାଗ ଆଜିକୁ ପନ୍ଦର ବର୍ଷ ହୋଇଗଲା । ତଥାପି ଏ ଦେଶର ଅନେକ ସ୍ଥାନରେ ଆଜି ଅନେକେ ତାଙ୍କୁ ଅତି ଆପଣାର ଲୋକ ବୋଲି ଅନୁଭବ କରୁଥିବେ ।

ପ୍ରତିଭା-ପୂଜାର ଆଡ଼ମ୍ବର ଖାଲି ଆମ ଦେଶରେ କାହିଁକି, ସାରା ପୃଥିବୀରେ ମଧ୍ୟ ବଢ଼ୁଛି । ଶହେ ବର୍ଷ ତଳେ ଇଉରୋପର ଭୂମିରେ ନୂଆ ପ୍ରେରଣା ଆଣି ଦେଇଥିବା ଜାତୀୟତାବାଦର ଆଦର୍ଶ ପୃଥିବୀର ଯୋଉ ଦେଶକୁ ବ୍ୟାପୁଛି, ଜାତୀୟ ପ୍ରତିଭାର ପୂଜା କରିବାର ଆଗ୍ରହ ସେଠି ପ୍ରବଳ ହୋଇଉଠୁଛି । ଜାତୀୟ ପତାକା, ଜାତୀୟ ସଙ୍ଗୀତ ଓ ଜାତୀୟ ସାହିତ୍ୟ ପରି ଜାତୀୟ ପ୍ରତିଭାର ପୂଜା ବି ସବୁଠାରେ ଗୋଟାଏ ସ୍ଲୋଗାନ ପରି ମଣିଷର ମନକୁ ଆକୃଷ୍ଟ କରିନେଉଛି । କିନ୍ତୁ ଏ ପ୍ରତିଭା-ପୂଜାର ଆଗ୍ରହ ଗୋଟାଏ ନିଶାପରି ଆମକୁ ମାଡ଼ି ବସି ନାହିଁ ତ ? ପ୍ରତିଭାର ପୂଜା କରି ବାକ୍-ନୈବେଦ୍ୟରେ ପ୍ରତିଭା ସହିତ ଆମର ଭକ୍ତିଜନିତ ସମ୍ପର୍କ ସ୍ଥାପନ କରି ଆମେ ପ୍ରତିଭା ପ୍ରତି ଆମର କର୍ତ୍ତବ୍ୟ ସମାପ୍ତ କରିଦେଉ ନାହୁଁ ତ ? କୌଣସି ବଡ଼ ମଣିଷଙ୍କ ତିଥି ପାଳିଲାବେଳେ ମୋ ମନରେ ଏହିପରି ଗୋଟାଏ ପ୍ରଶ୍ନ ଅନେକ ସମୟରେ ଉଠେ । ଗୁରୁଦେବଙ୍କ ଶ୍ରାଦ୍ଧ ତିଥିରେ ଠିକ୍ ସେହି ପ୍ରଶ୍ନ ହିଁ ଉଠୁଛି ।

ପୂଜା କରିବାର ସମାରୋହ ସଂସାରରେ ଯେତିକି ବଢ଼ୁଛି, ମଣିଷ ମନରେ ଘୃଣା ମଧ୍ୟ ସେତିକି ପ୍ରବଳ ହୋଇ ଉଠୁଛି । ନାନା ପ୍ରକାର ବିବାଦ

ଓ ବିସମ୍ବାଦରେ ମଣିଷ ମଣିଷଠାରୁ ଅଧିକରୁ ଅଧିକ ବ୍ୟବଧାନକୁ ଗ୍ରୁଲି-ଯାଉଛି; ଜୀବନ ବଞ୍ଚିବାର ସମସ୍ତ ନୈତିକ ଭୂମି ସେତିକି ବିସ୍ମୃତ ହୋଇ-ଯାଉଛି । ଗୁରୁଦେବଙ୍କର କବିତା, ଗୁରୁଦେବଙ୍କର କାର୍ଯ୍ୟ ଓ ଗୁରୁଦେବଙ୍କର ଜୀବନ ପ୍ରଧାନତଃ ସଂସାରରୁ ଘୃଣା ଦୂର କରିବାର ସାଧନା କରିଥିଲି । ମଣିଷକୁ ମଣିଷ ସହିତ ଯୋଡି ରଖିବା ଲାଗି ନାନା ସ୍ନେହସୂତ୍ରର ସ୍ୱପ୍ନ ଦେଖିଥିଲି, ମଣିଷର ଅନ୍ତର ଭିତରେ ସାରା ବିଶ୍ୱବ୍ରହ୍ମାଣ୍ଡ ଲାଗି ପ୍ରଶସ୍ତ ସ୍ଥାନ ଖୋଜିବାର ବାସନା ରଖିଥିଲି । ଆମେ ସମସ୍ତେ ତାଙ୍କର ସାହିତ୍ୟ ଅଧ୍ୟୟନ କରୁଚେ, ତାଙ୍କ ବିଷୟ ନେଇ କେତେ ଗୌରବର ସୁଅରେ ଭାସି ଯାଉଚେ, ତାଙ୍କୁ ଆମ ଜାତୀୟ ସଂସ୍କୃତିର ପ୍ରତିନିଧି ବୋଲି କହୁଚେ, ତାଙ୍କୁ ବିଶ୍ୱକବିର ବରେଣ୍ୟ ଆସନ ଉପରେ ନେଇ ବସାଇ ଦେଉଚେ । କାହିଁକି ? ତାଙ୍କ ସ୍ୱପ୍ନ ଓ ସାଧନାର କି ପ୍ରଭାବ ବା ପ୍ରେରଣା ଆମ ଜୀବନ ଉପରେ ପଡ଼ିଚି ? ସ୍ୱାଧୀନତା ପରେ ଆମ ଦେଶରେ ଘୃଣା ବଢ଼ିଚି, ପ୍ରତିଯୋଗିତା ଓ ଧୂର୍ତ୍ତତା ବଢ଼ିଚି, ମଣିଷ ମଣିଷଠାରୁ ଅଧିକ ବିଚ୍ଛିନ୍ନ ହୋଇଯାଇଚି, ଟଙ୍କା ପଇସାର ଭେଲିକିରେ ମଣିଷ ଅଧିକ ଭୁଲିଚି । ଗୁରୁଦେବ ଠିକ୍ ଯେଉଁସବୁ ବିଷକୁ ଆମ ଜୀବନରୁ ଛଡ଼ାଇବାର ପ୍ରୟାସ କରିଥିଲେ ସେହି ସବୁ ବିଷହିଁ ଆମର ବ୍ୟାବହାରିକ ଜୀବନରେ ଆମକୁ ସବୁଠାରୁ ଅଧିକ ଉତ୍ତେଜନା ଦେଉଚି । ଅଥଚ ଏଣେ ଗୁରୁଦେବଙ୍କର ପୂଜାସ୍ତୁତିରେ ଆମେ କୌଣସି ତ୍ରୁଟି କରୁନୁ । ଏପରି କାହିଁକି ହେଉଚି ? ସାରା ସଂସାରର ଇତିହାସରେ ମହାପୁରୁଷର ଅଭାବ କୋଉଠି ନାହିଁ । ବୁଦ୍ଧ ଓ ଯୀଶୁଙ୍କଠାରୁ ଆରମ୍ଭ କରି ରାମକୃଷ୍ଣ ଓ ଗାନ୍ଧୀ ପର୍ଯ୍ୟନ୍ତ ଏ ପୃଥିବୀରେ ଅନେକ ମହାପୁରୁଷଙ୍କର ଜୀବନ ଇତିହାସ ରହିଚି । ନାନା କ୍ଷେତ୍ରରେ ଆଜି ପୂର୍ଣ୍ଣ ସମର୍ପଣରେ ସେମାନଙ୍କର ପୂଜା ଚାଲିଚି; କିନ୍ତୁ ସେହିମାନଙ୍କ ସତ୍ତ୍ୱେ ସଂସାରରେ ଘୃଣା ବଢ଼ୁଚି, ହିଂସା ବଢ଼ୁଚି, ପ୍ରେମ କମୁଚି, ସ୍ନେହ ମରି ଯାଉଚି ।

ଆମର ପୂଜା ବୋଧହୁଏ ଆମକୁ ଭୁଲ ପ୍ରେରଣା ଦେଉଚି । ମହାପୁରୁଷ-ମାନେ ଅନ୍ୟ କୋଉ ପୃଥିବୀରୁ ଗଡ଼ି ହୋଇ ଆସନ୍ତି ନାହିଁ । ସେମାନେ ସମସ୍ତେ ଏଇ ପୃଥିବୀର । ଏଇ ପୃଥିବୀରେ ସବୁ ପିଲାଙ୍କ ପରି ସେମାନେ ଥିଲେ-

ଖେଳ କରନ୍ତି । ଏଇଠି ନାନା କାମନା—ବାସନାର ନତ୍ୟ-ଆନ୍ଦୋଳନ ଭିତରେ ସେମାନେ ଆପଣାର ବାଟ ଚିହ୍ନାଇ କରନ୍ତି । ମହାପୁରୁଷର ଜୀବନ ପ୍ରଧାନତଃ ସାଧନାର ଜୀବନ, ଖୋଜିବାର ଜୀବନ, ସଂସାରର ଘନାରଣ୍ୟରେ ଆପଣାକୁ ଆବିଷ୍କାର କରିବାର ଜୀବନ । ସେମାନଙ୍କର ଜୀବନରେ କେତେ-ବେଳେ ହେଲେ ଦୁଇଟା ପୃଥିବୀର ଦ୍ୱନ୍ଦ୍ୱ ନ ଥାଏ । ଏଇ ପୃଥିବୀର ଜନ୍ମକୁ ସେମାନେ ବିଧାତାର ଆଶୀର୍ବାଦରୂପେ ଗ୍ରହଣ କରନ୍ତି । ଏହି ଜୀବନର ପରିପୂର୍ଣ୍ଣ ବିକାଶ କରି ବିଧାତା ଦେଇଥିବା ଦାୟିତ୍ୱକୁ ତୁଲାଇ ପାରିଲେ ସେମାନେ ପରିତୃପ୍ତି ପାଆନ୍ତି । ସେମାନେ ଶରୀର ମୋହରେ ପଡ଼ିଯାଆନ୍ତି ନାହିଁ । ଶରୀରର ପରିଚର୍ଯ୍ୟାଠାରୁ ଆହୁରି ଅନେକ ମହତ୍ତର ଏକ ସ୍ୱପ୍ନ ସେମାନଙ୍କୁ ସର୍ବଦା ମଗ୍ନ ଓ ମସ୍ତ କରି ରଖିଥାଏ । ସଂସାରର ଖ୍ୟାତି ଓ ସୁନାମ ସେମାନଙ୍କୁ ଜାଲରେ ପକାଇ ପାରନ୍ତି ନାହିଁ । ସେମାନେ ଆପେ ଆପେ ଭଗବଦ୍-ଗତ ଜୀବନରେ ଧରାଦେଇ, ତାହାରି ବନ୍ଧନ ଭିତରେ ରହି, ଆପଣାକୁ ମୁକ୍ତ କରି ଦେଇଥାନ୍ତି । ମହାପୁରୁଷ-ଜୀବନର ଏହି ସାଧନାମୂଲତାକୁ ଗ୍ରହଣ କରି-ପାରୁଥିଲେ ଆମେ କେବଳ ପୂଜା ଦେଇ ସେମାନଙ୍କୁ ଦୁଆର ପାଖରୁ ଫେରାଇ ଦେବାର ଭ୍ରମରେ ପଡ଼ନ୍ତୁ ନାହିଁ । ପୂଜାର ମୋହ ପୂଜକକୁ ଗୋଟାଏ ମିଛ ସାନ୍ତ୍ୱନା ଦିଏ ; ପ୍ରତିଭାକୁ ଆଉ ଗୋଟାଏ ସଂସାରକୁ ନିର୍ବାସିତ କରିଦେଇ ସେ ତା'ର ଆପଣାର କ୍ଷୁଦ୍ର ସଂସାରରେ ସ୍ଥାନ ହୋଇ ପଡ଼ିରହିବା ଲାଗି ଗୋଟାଏ ମୁକ୍ତି ପାଏ । ଏହି ଯୁକ୍ତି ତାକୁ ଅନ୍ଧ କରେ, ତା'ର ସମସ୍ତ ପୂଜାର ଫଳ ଅପହରଣ କରିନିଏ ।

ସାଧନା କେବଳ କେତେଜଣ ମହାପୁରୁଷଙ୍କର ଏକଚାଟିଆ ନୁହେଁ । ଏହା ତୁମର, ମୋର, ସମସ୍ତଙ୍କର । ଏ ସାଧନାର ଅନ୍ତ ନାହିଁ । ସାଧନା ଲାଗି ସବୁ କ୍ଷେତ୍ରରେ ପ୍ରଶସ୍ତ ସ୍ଥାନ ରହିଛି । ଜଙ୍ଗଲରେ ଘରକରି ବୈରାଗ୍ୟର ଅଭ୍ୟାସ କରିବାକୁ ଦିନେ ଏକମାତ୍ର ସାଧନା ବୋଲି କୁହାଯାଉଥିଲା । ଆଜି ସାଧନାର ଅର୍ଥ ସର୍ବବ୍ୟାପୀ । ଘରେ ଗୃହସ୍ଥ ହେବାର ସାଧନା, ପ୍ରୟୋଗ-ଶାଳାରେ ବୈଜ୍ଞାନିକ ହେବାର ସାଧନା, ବିଦ୍ୟାଳୟରେ ବିଦ୍ୟାର୍ଥୀ ଓ ଶିକ୍ଷକ ହେବାର ସାଧନା,—ଏ ସବୁଗୁଡ଼ିକ ଜୀବନରେ ପରିପୂର୍ଣ୍ଣ ମଣିଷ ହେବାର

ସାଧନାର ଗୋଟିଏ ଗୋଟିଏ ଅଙ୍ଗ ମାତ୍ର । ଯିଏ ଆପଣା ଜୀବନକୁ କେବଳ ତୃଷ୍ଣା, ଉଦର ଓ କାମ-ଶାନ୍ତିର ଏକ ଜଞ୍ଜାଳ ବୋଲି ମନେ କରୁଥିବ, ତା'କଥା ମୁଁ କହିପାରିବି ନାହିଁ । କିନ୍ତୁ ଯିଏ ଆପଣା ଜୀବନକୁ ଭଗବାନଙ୍କର ଦାନ ଓ ଆଶୀର୍ବାଦ ବୋଲି ଗ୍ରହଣ କରୁଥିବ, ଯେଉଁ ବଡ଼ ବା ଯେଉଁ କ୍ଷୁଦ୍ର କ୍ଷେତ୍ରରେ ଥାଉ ପଛକେ ସିଏ ସେଇଠି ଆପଣାର ସାଧନା ଆରମ୍ଭ କରିବ; ମହାପୁରୁଷମାନଙ୍କର ଜୀବନରୁ ସେଇ ଯୋଗ୍ୟତମ ପ୍ରେରଣା ପାଇ ପାରିବ ।

୮ । ୮ । ୫୭

ହାଟ ବଜାରରେ ମଣିଷ କିଣାବିକା କରିବାକୁ ଏକାଠି ହୁଏ । ବିଚାରାଳୟରେ ମଣିଷ ଦୋଷୀକୁ ଶାସ୍ତି ଆଉ ନିର୍ଦ୍ଦୋଷକୁ ମୁକ୍ତି ଦେବାକୁ ଯାଏ। ପୋଲିସ ଜୀବନର ସଂସାରରେ ଚୋର ଆଉ ପୋଲିସର ଲୁଚକାଳି ଖେଳ ନିତ୍ୟ ଲାଗିଥାଏ । କିନ୍ତୁ ବିଦ୍ୟାଳୟରେ ଏସବୁ ନୀତି ମୋଟେ ଚାଲି-ପାରେ ନାହିଁ । ଆମ ଦେଶର ସୁବିଧାବାଦୀମାନେ ଏ ପର୍ଯ୍ୟନ୍ତ ଆମ ବିଦ୍ୟାଳୟଗୁଡ଼ିକୁ ପାଠ କିଣିବା ଓ ବିକିବାର ସ୍ଥାନ କରି ରଖିଛନ୍ତି । ତଥାପି ବିଦ୍ୟାଳୟକୁ ଆମେ ହାଟ ବଜାର ସହିତ ତୁଳନା କରିପାରିବା ନାହିଁ । ବିଦ୍ୟାଳୟ ବିଚାରାଳୟ ମଧ୍ୟ ନୁହେଁ । ଦୋଷୀକୁ ଦଣ୍ଡ ଦେବା ଓ ସୁନାପୁଅକୁ ପୁରସ୍କାର ଦେବାର ସହଜପାଠ ବିଦ୍ୟାଳୟରେ ଚାଲି ପାରେନାହିଁ । ଦୋଷୀ ଆଉ ନିର୍ଦ୍ଦୋଷ ଏହିପରି ଦୁଇଟା ମାର୍କାରେ ବିଦ୍ୟାଳୟର କାମ ଚାଲିପାରେ ନାହିଁ । ସବୁପ୍ରକାର ବ୍ୟାବହାରିକ ମାର୍କାକୁ ଭେଦ କରିବା ହେଉଛି ବିଦ୍ୟାଳୟର ପ୍ରଥମ କାମ । ତା ନ ହେଲେ କୌଣସି ବିଦ୍ୟାଳୟକୁ ଯଥାର୍ଥ ବିଦ୍ୟାଳୟ ବୋଲି କୁହାଯାଇ ପାରିବ ନାହିଁ । ବିଦ୍ୟାଳୟର ବାଟ ପୋଲିସଥାନାର ବାଟଠାରୁ ଏକବାରେ ଓଲଟା ଦିଗକୁ । ଆଜି ଆମର ଦୁର୍ଭାଗ୍ୟ—ସମାଜରେ ପ୍ରାୟ ପ୍ରତ୍ୟେକ ମଣିଷ ପୋଲିସ ଆଉ ଚୋର ହେବାର ଦୁଇଟା ମୁଖା ରଖିଚନ୍ତି । ଜୀବନର ଯେଉଁ ପ୍ରହସନରେ

ଯେଉଁ ମୁଖା ଦରକାର ପଡୁଛି ସେଇଟାକୁ ପିନ୍ଧି ପକାଉଛନ୍ତି । ବାହାର କାରବାରରେ ସେ ଫିକର ବେଶ କାମ ଦେଉଛି । କିନ୍ତୁ ଆପଣା ଜୀବନର ବିଧାତା ପାଖରେ ଜବାବଦେହି ଦେଲାବେଳକୁ ସେ ମୁଖା ଦୁଇଟା ମଣିଷକୁ କୌଣସି ସାହାଯ୍ୟ କରି ପାରୁନାହିଁ । ପ୍ରତ୍ୟେକ ବିଦ୍ୟାଳୟର ପାରସ୍ପରିକ ଜୀବନରୁ ଏ ମୁଖା ଦୁଇଟା ଫିଙ୍ଗି ଦେବାକୁ ହିଁ ପଡ଼ିବ । ଶିକ୍ଷକ ଖାଲି ପୋଲିସ ହେଲେ ଚଳିବ ନାହିଁ, କି ଶିକ୍ଷାର୍ଥୀ ଖାଲି ଚୋର ହେଲେ ଚଳିବ ନାହିଁ । ଯୋଉ ସମ୍ପର୍କରେ ପୋଲିସ ଆଉ ଚୋର ହେବାର ଗନ୍ଧମାତ୍ର ଥାଏ, ସେଠି ସବୁ ଆଡ଼ମ୍ବର ତଳେ ଅଜସ୍ର ଭୟ ଛକି ଛକି ରହିଥାଏ । ଭୟ ଭାଙ୍ଗିବା ହେଉଛି ପ୍ରତ୍ୟେକ ବିଦ୍ୟାଳୟର ଧର୍ମ, ବିଦ୍ୟାର୍ଥୀର ଧର୍ମ ଓ ଶିକ୍ଷାର୍ଥୀର ଧର୍ମ ।

ଏଠିକାର ବିଦ୍ୟାଳୟକୁ ଆମେ କାହିଁକି ଆସିଛେ ? କିଣାବିକାର ହାଟପସରା ନେଇ କ'ଣ ଆମେ ଆସିଛେ ? ଏ ବିଦ୍ୟାଳୟରେ ଆମେ ଅଳପ କଷ୍ଟରେ ପାଠରୁ ପାର ହୋଇଯିବା, ପାଠରେ ପାସ କରିଥିବାର ପଗଡ଼ି ବାନ୍ଧି ବାହାରିବା—ଯୋଉ ପଗଡ଼ିର ଦାମ କି ମାସକୁ ଏତେ ଟଙ୍କା ହୋଇ ପାରିବ । ଆମ ଭିତରୁ କେହି ଯଦି ଏପରି କୌଣସି ଭାବନାକୁ ମନ ଭିତରେ ପୋଷି ରଖିଥାନ୍ତି ତେବେ ତାଙ୍କୁ ଦିନେ ବଡ଼ ନିରାଶ ହେବାକୁ ପଡ଼ିବ ବୋଲି ମୁଁ କହିବି । କୌଣସି ପାଠର ପୁଟୁଳି ମୁଣ୍ଡ ଉପରକୁ ଟେକି ଦେଇ ତୁମକୁ ଏତେ ଟଙ୍କା ରୋଜଗାର କରିବାର ସାମର୍ଥ୍ୟ ଏ ବିଦ୍ୟାଳୟ ଦେଇ ପାରିବ ନାହିଁ । ଏ ବିଦ୍ୟାଳୟକୁ ଆମେ ବିଶ୍ରାଳୟରୂପେ ମଧ୍ୟ ଗ୍ରହଣ କରିପାରିବା ନାହିଁ । ଏଠି ଦୋଷୀ ଆଉ ନିର୍ଦ୍ଦୋଷର ଦୁଇଟା ମାର୍କାରେ ବିଧାନ ଚଳିବ ନାହିଁ । ଆମେ କେହି କେବଳ ଦୋଷୀ ନୋହୁ, କି କେହି କେବଳ ନିର୍ଦ୍ଦୋଷ ନୋହୁ । ଆମେ ସମସ୍ତେ ପଥର ପଥିକ, ତେଣୁ ପରସ୍ପରର ସାଥୀ । ଆମେ ବାଟ ଭୁଲିବା, ଆପଣାକୁ ଆବିଷ୍କାର କରିବାର ବ୍ରତ ନେବା, ଆମ ବାଟ ଭୁଲିବାର ଓ ଆବିଷ୍କାର କରିବାର ସମସ୍ତ ଫଳକୁ ଏକାଠି ଉପଭୋଗ କରିବା । ଏହାହିଁ ଏ ବିଦ୍ୟାଳୟର ବ୍ୟାବହାରିକ ଧର୍ମ ହୋଇ ରହିବ । ଏଠିକାର ଶିକ୍ଷାର୍ଥୀ ଚୋର ସାଜିବାର ମୋହରେ

ପଡ଼ିବ ନାହିଁ । ଏଠିକାର ଶିକ୍ଷକ ପୋଲିସ ହେବାକୁ ଲଜ୍ଜା ବୋଧ କରିବ । ପୋଲିସ ଆଉ ସୈନ୍ୟର ହେବାର ତାମସା ଲଗାଇବାକୁ କୌଣସି ଆଗ୍ରହ ଥିଲେ ଆମେ ଏଠି ଗୋଟାଏ ଇସ୍କୁଲ ଆଖଡ଼ା ବସାଇ ଏ ସୁନ୍ଦର ଜଙ୍ଗଲର ଶାନ୍ତିଭଙ୍ଗ କରିବାକୁ ଆସି ନଥାନ୍ତୁ ।

ହାଟ-ବଜାରର ବେପାରୀ ହୋଇ ବିଦ୍ୟାଳୟର ବିଦ୍ୟାର ଲୋଡ଼ିବା, ପୋଲିସ ଓ ସୈନ୍ୟର ସାଜିବାର କୌଣସି ହୀନବୁଦ୍ଧି ନେଇ ଆମେ ଏ ବିଦ୍ୟାଳୟର ବିଦ୍ୟାର୍ଥୀ ହୋଇ ରହିବାର ଅଧିକାର ଦାବୀ କରିପାରିବା ନାହିଁ । ସେପରି ଦାବୀ କଲେ ତାହା ବଡ଼ ଅନ୍ୟାୟ ହେବ । କେବଳ ବିଦ୍ୟାର୍ଥୀ ଲାଗିହିଁ ବିଦ୍ୟାଳୟରେ ସ୍ଥାନ ରହିଛି । ଏଠି ବିଦ୍ୟାର୍ଥୀ ବୋଇଲେ ମୁଁ ଖାଲି ପାଠ ପଢ଼ି ଆସିଥିବା ପିଲାଙ୍କୁ ବୁଝାଉ ନାହିଁ; ମୁଁ ଶିକ୍ଷକଙ୍କୁ ମଧ୍ୟ ଏହି ବିଦ୍ୟାର୍ଥୀ ସଂପ୍ରଦାୟର ଅନ୍ତର୍ଗତ କରୁଛି । ଶିକ୍ଷାର୍ଥୀଙ୍କୁ ନେଇହିଁ ଶିକ୍ଷକ; ଶିକ୍ଷକର କୌଣସି ସ୍ୱତନ୍ତ୍ର ସଂଜ୍ଞା ହୋଇ ନ ପାରେ । ଶିକ୍ଷାର ମହତ୍ତ୍ୱର ଦୃଷ୍ଟିରୁ ଦେଖିଲେ ଶିକ୍ଷକ ମଧ୍ୟ ଜଣେ ଶିକ୍ଷାର୍ଥୀ । ଏ ସଂସାର-ଆଶ୍ରମରେ କାହାର ଶିକ୍ଷା ସମାପ୍ତ ହୋଇନାହିଁ । ଯିଏ ନିଜର ସବୁ ଶିକ୍ଷା ହୋଇଗଲା ବୋଲି ଦମ୍ଭ କରୁଛି, ସେ କେବଳ ଅଜ୍ଞାନତା ଭିତରେ ପଡ଼ିଛି । ସେ ଆପଣାକୁ ଠିକ୍ କରି ଚହ୍ନିପାରି ନାହିଁ । ସଂସ୍କୃତ ଭାଷାରେ ଶିଖାଇବା ବୋଲି ଏକ ସ୍ୱତନ୍ତ୍ର କ୍ରିୟାପଦ ନାହିଁ । ଶିଖିବାରୁହିଁ ଶିଖାଇବା ହୋଇଛି । ଡେନମାର୍କ ଭାଷାରେ ଆଜି ମଧ୍ୟ ଶିଖିବା ଓ ଶିଖାଇବା ଲାଗି କେବଳ ଗୋଟିଏ ଶବ୍ଦ ବ୍ୟବହୃତ ହେଉଛି । ଯିଏ ଯଥାର୍ଥରୂପେ ଶିଖିବାର ମନ ରଖିପାରିଛି, ଖାଲି ସେଇ ଯଥାର୍ଥରୂପେ ଶିଖାଇ ପାରିବ । ତା ନହେଲେ ଶିକ୍ଷା ଓ ଶିକ୍ଷାଳୟରେ କୌଣସି ଜୀବନହିଁ ରହିବ ନାହିଁ ।

ଆମର ଆଳସ୍ୟକୁ ଜୟ କରିହିଁ ଆମେ ସମସ୍ତେ ଯଥାର୍ଥ ଶିକ୍ଷାର୍ଥୀ ହୋଇ ପାରିବା । ଆଲୁଅ ଆସି ପ୍ରଭାତର ଦ୍ୱାରୋଦ୍‌ଘାଟନ କଲାପରି ଆଳସ୍ୟକୁ ଜୟ କରିପାରିଲେ ଯାଇ ଜ୍ଞାନର ଦ୍ୱାରୋଦ୍‌ଘାଟନ ହୋଇପାରିବ । ଉଚ୍ଚ ଆଗ୍ରହ ଦ୍ୱାରା ଆମେ ଆଳସ୍ୟକୁ ଜୟ କରିପାରିବା । ଦୁନିଆରେ ଖୁବ

ବେଶୀ ଆପଦ ନାହିଁ; କିନ୍ତୁ ଆଳସ୍ୟରେ ରହିଛୁ । କଅଁଳା ବାଛୁରୀ କେତେ ଦୁଷ୍ଟାମି କରେ, ଦୌଡ଼ି ଦୌଡ଼ି କେତେ ଥର ଗୋଡ଼ ହାତ ଭାଙ୍ଗେ, କେତେ ଶକ୍ତି କ୍ଷୟ କରେ; କିନ୍ତୁ ଜୀବନର ଦାବୀ ତାର ସବୁ ଦୁଷ୍ଟାମି ହରେଇ ନିଏ । ଜୀବନର ଶିକ୍ଷା ଅଧିକରୁ ଅଧିକ ପ୍ରସାରିତ ହେବା ସଙ୍ଗେ ସଙ୍ଗେ ଆମର ଦୁଷ୍ଟାମି ବଳେ ବଳେ ଥମିଯିବ, ଚିତ୍ତ ସ୍ଥିର ହୋଇଯିବ; କିନ୍ତୁ ଆଳସ୍ୟକୁ ଆବୋରି ବସିଥିବା ପର୍ଯ୍ୟନ୍ତ ଆମେ ଆଦୌ ବଢ଼ି ପାରିବା ନାହିଁ, ବଦଳି ପାରିବା ନାହିଁ, ବିକଶିତ ହୋଇପାରିବା ନାହିଁ ।

ତୁମମାନଙ୍କ ସହିତ ମୋର କୌଣସି ବିବାଦ ନାହିଁ । କାହାରି ପ୍ରତି ମୋର କୌଣସି ଈର୍ଷା ନାହିଁ । ମୁଁ ସଭିଁର ବିକାଶ ଚାହେଁ । ସେଇଥିଲାଗିହିଁ ଏ ବିଦ୍ୟାଳୟର କ୍ରୀଡ଼ାଘର ଲଗାଇ ଦେଇ ମୁଁ ଏଠି ପଡ଼ିରହିଛି । ତୁମ ସମସ୍ତଙ୍କୁ ନେଇକରି ହିଁ ଏ ଜଙ୍ଗଲ ଏଡ଼େ ସୁନ୍ଦର ଦିଶୁଛି । ଏ ପବନ ଆଉ ଆକାଶ ଏଡ଼େ ଭଲ ଲାଗୁଛି । ଏଠିକାର ପ୍ରତିଦିନର ଖାଦ୍ୟ ଏଡ଼େ ସୁଆଦ ଲାଗୁଛି । ଭବିଷ୍ୟତରେ ତୁମେମାନେ ଆପଣାର ପଥରେ ନିର୍ଭୀକ ଓ ନିର୍ମଳ ହୋଇ ବାଟ ଚାଲିବ, ସେଇ କଳ୍ପନାରେହିଁ ମୁଁ ଅଶେଷ ଆନନ୍ଦ ପାଉଛି । ତୁମମାନଙ୍କର ବିକଶିତ ଜୀବନର ଚିତ୍ର ଆଙ୍କି ଆଙ୍କି ମୁଁ ମଧ୍ୟ ତୁମରି ପରି ପିଲା ହୋଇ ଯାଉଛି; ଭିତରେ ଅପାର ଶକ୍ତିର ନିର୍ଝର ପାଉଛି । ତୁମମାନଙ୍କ ସହିତ ମୋର କୌଣସି କଳହ ନାହିଁ, ମୋର କଳହ ସେହି ଆଳସ୍ୟଟାର ସହିତ । ସେହି ଆଳସ୍ୟର ରାକ୍ଷସଟା ଆସି ଯେତେବେଳେ ଏଠିକା ଜୀବନର ଗତିରେ ବାଧା ପକାଉଛି, ଏଠିକାର ଯୌବନ ମୁହଁରେ ସେ ଯେତେବେଳେ ବୁଢ଼ା ହୋଇଯିବାର ବିଷ ଗୋଳାଇଦେଉଛି, ସେତେବେଳେ ମୁଁ ସହିପାରୁ ନାହିଁ, ମୋର ଆଉ ଧୈର୍ଯ୍ୟ ରହୁନାହିଁ । ଏ ବିଦ୍ୟାଳୟକୁ ତୁମେମାନେ ଯଦି ନିଜର ବୋଲି ମନେ କରୁଥାଅ ତେବେ ଆପଣାର ଜୀବନରୁ ଏଇ ଆଳସ୍ୟକୁ ଦୂର କରିଦିଅ । ଆଳସ୍ୟକୁ ତଡ଼ିବାରେ ତୁମେମାନେ ସମସ୍ତେ ସହଯୋଗ କର । ତୁମେମାନେ ମୋର ଏଇ କଥାଟି ମାନ, ଆଉ ମୋର ରାଗକୁ କ୍ଷମା କର । ତାହାହିଁ ସବୁଠାରୁ ବଡ଼ ଆନନ୍ଦର କଥା ହେବ ।

୯ । ୮ । ୫୭

ଅଗଷ୍ଟ ନଅ ତାରିଖର ବିପ୍ଳବ କଥା ଲିଖୁ ଲିଖୁ ହଠାତ୍ ଆଉ ଗୋଟିଏ କଥା ଆମ ସମସ୍ତଙ୍କର ମନେ ପଡ଼ିଗଲା । ଆଜି କବି ଗଙ୍ଗାଧର ମେହେରଙ୍କର ଜନ୍ମଦିନ । ତାଙ୍କର ବିଷୟରେ ଆମେ ସକାଳେ ଆଲୋଚନା କଲେ ; ତାଙ୍କ ଲେଖା ପଢ଼ିଲେ ଓ ତାଙ୍କର ରଚିତ ଗୀତମାନ ଗାଇଲେ । ମହାପୁରୁଷ-ମାନଙ୍କର ଦିନଗୁଡ଼ିକ ଏଇମିତି ଅତୀତ ସହିତ ଆମର ସୂତ୍ରଟିକୁ ଧରାଇ ଦେଇଯାଏ । ସାଧାରଣ ଦିନମାନଙ୍କରେ ଆମେ କ୍ଷଣ କ୍ଷଣର ଜୀବନ ବଞ୍ଚୁ । ଆମ ପଛରେ ଯେ ଏତେ ବଡ଼ ଗୋଟାଏ ଅତୀତ ରହିଛି, ସାଧାରଣତଃ ସେ କଥା ଆମର ଖିଆଲ ନ ଥାଏ । ମୁହୂର୍ତ୍ତ ମୁହୂର୍ତ୍ତର ଲାଭାଲାଭ ଓ ମାନ ଅପମାନ କଥା ବିଚାର କରୁ କରୁ ଆମର ଜୀବନ ଗଡ଼ି ଚାଲିଯାଏ, ଶତଧା ହୋଇ ତା'ହାର ଶକ୍ତି ସରିଯାଏ । ଆମର ଜୀବନର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ନେଇ ଆମେ ଗୋଟିଏ ଧାରାର ଜୀବନ ବଞ୍ଚି ପାରୁନାହିଁ ।

ତଥାପି ଅତୀତକୁ ସ୍ମରଣ କରିବାରେ ବିପଦ ବି ରହିଛି । ଅତୀତ ଆମ ଜୀବନର ସୂତ୍ର ଧରାଇ ଦିଏ । ପୁଣି ସେହି ଅତୀତ ମଧ୍ୟ ଆମକୁ ବାନ୍ଧି ରଖେ । ଅତୀତର ଗୌରବ ଗାଇବାର ମିଛ ଆଶ୍ୱାସନାରେ ପଡ଼ି ଆମେ ବର୍ତ୍ତମାନକୁ ଭୁଲି ବସୁ । ଅତୀତର ମୂଳଦୁଆ ଉପରେ ଯେ ଆମକୁ ନୂତନର ସୃଷ୍ଟି କରିବାକୁ ପଡ଼ିବ, ସେ କଥା ଆମର ମନେ ରହେ ନାହିଁ । ଅତୀତ ଆମକୁ କୌଣସି ପ୍ରକାର ନୂଆ ପ୍ରେରଣା ଦିଏ ନାହିଁ । କୌଣସି ପ୍ରକାର ନୂଆ ବ୍ୟଞ୍ଜନା ଆମେ ସେଥିରେ ପାଉନାହୁଁ । ସତେ ଅବା ଆମର ଅତୀତ ଗୋଟିଏ ଚିତ୍ରପଟ ମାତ୍ର, ବା ଗୋଟାଏ କାହାଣୀର ବନ୍ଧ ମାତ୍ର । ଆମର ବିନୋଦନ ସକାଶେ ଖାଲି ସେ ସବୁର ଆବଶ୍ୟକତା ରହିଛି । ପିଲାଏ ଯେଉଁପରି ବିନୋଦନ ପାଇଁ ଛବିବହି ଦେଖନ୍ତି; ଅନେକ ସମୟରେ ଖାଲି ସେତିକି ପାଇବାକୁ ଆମେ ଅତୀତର କଥା ଶୁଣୁ, ଅତୀତର ଆଲୋଚନା କରୁ ।

ଏହିପରି ଏକ ଅଯୋଗ୍ୟ ଆଗ୍ରହ ନେଇ ଆମେ ଓଡ଼ିଶାରେ ଅନେକ ସମ୍ପର୍କରେ ଅତୀତର ଆଲୋଚନା କରିବାକୁ ମନ ବଳାଇଥାଉଁ । ଏଠି ଅତୀତରେ ଯାହା ଥିଲା ତାହା ସବୁଠାରୁ ବଢ଼ିଆ ଥିଲା,—ଆପଣା ଘରର ସଂକୀର୍ଣ୍ଣ ଡିହ-ଉପରେ ବସି ଆମେ ବେଳେବେଳେ ଖୁବ ଚିତ୍କାର କରିବାରେ ଲାଗିପଡ଼ୁ । ଆପଣା କାନପାଖରେ କେବଳ ଆପଣାର ପ୍ରଶଂସାଗୁଡ଼ାକ ଶୁଣାଇ ଓ ଶୁଣି ସେତେବେଳେ ଆମେ ଖୁବ ଆନନ୍ଦ ପାଉଁ ; କିନ୍ତୁ ଏହାଦ୍ୱାରା ଆମର ଅନେକ କ୍ଷତି ହୁଏ । ଏହାଦ୍ୱାରା ଜୀବନର ସ୍ୱାସ୍ଥ୍ୟ ମରିଯାଏ, ଜୀବନର ରୁଚି ମରିଯାଏ, ଜୀବନରେ କିଛି ସୃଷ୍ଟି କରିବାର ପ୍ରବୃତ୍ତି ମରିଯାଏ । ଅତୀତ ଅଫିମ ଭଳି ହୋଇ ଆମକୁ ଜଡ଼ କରିପକାଏ । ଆମର ଜ୍ଞାନ, ବଳ ଓ କ୍ରିୟାକୁ ବଡ଼ ଅବଶ ଓ ଅସ୍ୱାଭାବିକ କରିପକାଏ, ତେଣୁ ଆମେ ଅତୀତର ମୋହରେ ବାନ୍ଧିହୋଇ ପଡ଼ିବା ନାହିଁ, ଅତୀତର ଅଠାରେ ଲାଖିକରି ରହିଯିବା ନାହିଁ । ଅତୀତ ଆମ ଲାଗି ମୂଳଦୁଆ ପକାଇବ, ଆମ ଲାଗି ଆସନ ତିଆରି କରିଦେବ । ସେହି ଆସନ ଉପରେ ଆମେ ନୂତନ ସୃଷ୍ଟିର ଆବାହନ କରିବା । ବର୍ତ୍ତମାନ ଓ ଭବିଷ୍ୟତ ଲାଗି କୌଣସି ସୁନ୍ଦର ସୃଷ୍ଟି କରି ଆମେ ଅତୀତର ବ୍ୟଞ୍ଜନାଟିକୁ ଅଧିକ ସୁନ୍ଦରଭାବରେ ଆମର ମାନମନ୍ଦିର ଭିତରେ ଧରି ରଖିପାରିବା ।

କବିମାନଙ୍କର ଜନ୍ମଦିନ ଓ ଶ୍ରାଦ୍ଧଦିନମାନଙ୍କରେ ଓଡ଼ିଶାରେ ମଧ୍ୟ ସଭାସମିତି ହୁଏ, ସ୍ମରଣ-ଅନୁଷ୍ଠାନମାନ ଆୟୋଜିତ ହୁଏ । ଅତୀତର କବିମାନଙ୍କୁ ସ୍ମରଣ କରିବାଲାଗି ଓଡ଼ିଆରେ ମଧ୍ୟ ବହୁ ଲେଖାହୁଏ, ତର୍କାଲୋଚନାର ପରିସର ସୃଷ୍ଟି କରାଯାଏ; କିନ୍ତୁ ଅନେକ ସମୟରେ ଏହି ସବୁ ପରିସରରୁ କିରଣ ହୋଇ ଫେରି ଆସିବାକୁ ହୁଏ । ଯିଏ ସାହିତ୍ୟରୁ ଆନନ୍ଦ ପାଇବାକୁ ବାହାରିଛି, ଅତୀତରୁ ଉଦ୍‌ବୋଧନ ପାଇବାକୁ ବାହାରିଛି, ତାର ମନ ଅଫିମରେ ବୋଧ ହେବ କିପରି ? କବିମାନଙ୍କର ଆଲୋଚନା କଲାବେଳେ ଆମେ ଆମ ସାହିତ୍ୟିକ-ବାସନାର ଯେତେ ପରିଚୟ ନ ଦେଉ, ଏକ ଅସାହିତ୍ୟିକ ସମ୍ମିଳନଦ୍ୱାରା ଆମେ ସାହିତ୍ୟ ଭୂମିକୁ ତାହାଠାରୁ ଅଧିକ ଦୂଷିତ କରି ପକାଇଥାଉଁ । ଓଡ଼ିଶାର ସାହିତ୍ୟାଲୋଚନା କ୍ଷେତ୍ରରେ ବସ୍ତୁର, ବିବେକ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଯେତେ ନାହିଁ, ଅତୀତକୁ ବିଭିନ୍ନ ବ୍ୟଞ୍ଜନା ଦେଇ

ଦେଖିବାର ବଳିଷ୍ଠ ଓ ସୃଷ୍ଟିଧର୍ମୀ ଆଗ୍ରହ ଯେତେ ନାହିଁ, ମୋହ ତାହାଠାରୁ ଢେର୍ ଅଧିକ ରହିଛି; ତେଣୁ ମୋ' ଓଡ଼ିଶାର ଅମୁକ କବି ଭାରତର ଶ୍ରେଷ୍ଠ କବି ବା ଅମୁକ କବିଙ୍କ ଭଳି ସାରା ପୃଥିବୀରେ ଏତେ ଉଚ୍ଚକୋଟୀର କାବ୍ୟ ଆଉ କେହି ରଚନା କରିନାହାନ୍ତି ବା କରିବେ ନାହିଁ—ଏହିପରି ଏକ ବାହାଦୁରୀ କରି ଆମେ ଭାରି ଲମ୍ଫ ଦିଉଛୁ, ଭାରି ଧୂଳି ଉଡ଼ାଉଛୁ। ସଂସାରରେ ପ୍ରକୃତରେ କେଉଁଠି କ'ଣ ଅଛି, ଆମ ପଡ଼ିଶାରେ କେଉଁଠି କ'ଣ ଅଛି, ତାହା ଅନାଇ ଦେଖିବାକୁ ଆମର ବେଳ ନାହିଁ କି ଧୈର୍ଯ୍ୟ ନାହିଁ। ଆମ ଆପଣା ଘରର ସୁନ୍ଦର ରତ୍ନମାନ ଆମକୁ ସଂସାରରେ ଥିବା ଅନ୍ୟାନ୍ୟ ଘରର ସାଇତା ରତ୍ନଗୁଡ଼ିକୁ ଚହ୍ନିବା ଲାଗି କୌଣସି ଦୃଷ୍ଟି ଦେଇପାରୁ ନାହିଁ, ଆପଣା ହୃଦୟର ଅନ୍ଧକାର ଭିତରେ ବାଟ କଢ଼ାଇବାକୁ କୌଣସି ସାହାଯ୍ୟ କରିପାରୁ ନାହିଁ। ଏହା ଆମର ବଡ଼ ଦୁର୍ଭାଗ୍ୟ ଯଥାର୍ଥ ସାହିତ୍ୟ ଆହୁରି ଅଧିକ ସାହିତ୍ୟିକ ଆଗ୍ରହକୁ ବାଟ କଢ଼ାଏ; ଅତୀତ ପ୍ରତି ଯଥାର୍ଥ ଆଗ୍ରହ ଅନାଗତ ଅନେକ ଆଗ୍ରହକୁ ବାଟ କଢ଼ାଏ, ଯଥାର୍ଥ ସୌନ୍ଦର୍ଯ୍ୟ ଅନୁଭୂତି ଅନେକ ସୌନ୍ଦର୍ଯ୍ୟ ଆଡ଼କୁ ବାଟ କଢ଼ାଏ—ଏହା ହିଁ ହେଉଛି ଯଥାର୍ଥ ଶିକ୍ଷା; କିନ୍ତୁ ଆମର ଦୁର୍ଭାଗ୍ୟ ଯେ ଆମ ଜୀବନରେ ତାହା ସମ୍ଭବ ହୋଇ ପାରୁ ନାହିଁ। ଓଡ଼ିଶାର ଭଙ୍ଗା ମନ୍ଦିର ପରି ଓଡ଼ିଶାର ଅତୀତ ସାହିତ୍ୟ ମଧ୍ୟ ଆମ ଆଗରେ ପଡ଼ି ରହିଛି; କିନ୍ତୁ ଏ ସବୁକୁ କେବଳ ଆମର ବୋଲି କହିବା ବ୍ୟତୀତ ଆମ ପାଖରେ ଆଉ ଅନ୍ୟ କୌଣସି ଭାଷା ନାହିଁ; ଆଉ ଅନ୍ୟ କୌଣସି ଅଭିପ୍ରାୟ ନାହିଁ।

ମେହେର, ରାଧାନାଥ, ଭକ୍ତ, ଫକୀରମୋହନ, ଗୋପବନ୍ଧୁ ଏମାନେ ସମସ୍ତେ ଓଡ଼ିଶାର ସାହିତ୍ୟ ଗଗନରେ ଗୋଟିଏ ଗୋଟିଏ ତାରା ପରି ସମସ୍ତେ ସେମାନଙ୍କର ଲେଖନୀ ଦ୍ୱାରା ଆମର ଅତୀତକୁ ସମୃଦ୍ଧ କରି ଦେଇ-ଛନ୍ତି; ଆମଲାଗି ଓ ଭବିଷ୍ୟତର ଅନେକ ବଂଶଧରଙ୍କ ଲାଗି ସେମାନେ ଅନେକ ପ୍ରେରଣାର ପୁଞ୍ଜି ରଖିଯାଇଛନ୍ତି। କେହି ସେ କଥା ଅସ୍ୱୀକାର କରିବ ନାହିଁ; କିନ୍ତୁ ସେମାନଙ୍କୁ ଚହ୍ନିଲାବେଳେ ବା ସେମାନଙ୍କ ବିଷୟରେ ସାହିତ୍ୟିକ ଆଲୋଚନା କଲାବେଳେ ଆମେ ସେମାନଙ୍କୁ କେବଳ ଆମର ବୋଲି କହି ଛାତି ଫୁଲେଇଲେ ତାହାକୁ ଅତି ନିକୃଷ୍ଟ ସାହିତ୍ୟିକ ମନୋବୃତ୍ତି ବୋଲି

କହିବାକୁ ହେବ । କବି ବା ବୈଜ୍ଞାନିକ, ଶିଳ୍ପୀ ବା ଦାର୍ଶନିକଙ୍କୁ କୌଣସି ପ୍ରକାର ଭୌଗୋଳିକ ସୀମାବନ୍ଧନ ଭିତରେ ରଖିହେବ ନାହିଁ । ସେମାନଙ୍କର ଇହ ଜୀବନ ଦୃଷ୍ଟିରୁ ଦେଖିଲେ ଅବଶ୍ୟ ସେମାନେ କୌଣସି ଏକ ନିର୍ଦ୍ଦିଷ୍ଟ ଦେଶର ବା ନିର୍ଦ୍ଦିଷ୍ଟ ଜାତିର; କିନ୍ତୁ ସେମାନଙ୍କର ସାଧନା ବା କୃତି କୌଣସି ଗୋଟିଏ ଦେଶର ବା ଗୋଟିଏ ଜାତିର ସ୍ୱତ୍ୱ ହୋଇ ରହିପାରିବ ନାହିଁ । ଆମ ଦେଶ ଓଡ଼ିଶାର କବି ନିଶ୍ଚୟ ଆମର, କିନ୍ତୁ ତଥାପି ସେ ଖାଲି ଆମର ନୁହନ୍ତି । ଗଙ୍ଗାଧର ମେହେରଙ୍କୁ ଖାଲି ଓଡ଼ିଶାର କବି ବୋଲି କହିଦେଲେ ତାଙ୍କ ପ୍ରତି ବଡ଼ ଅନ୍ୟାୟ ପ୍ରଦର୍ଶନ କରାହେବ ବୋଲି ମୁଁ କହିବି ।

କିନ୍ତୁ ଆଜିକାଲି ଆମର କବିଙ୍କୁ ଆମେ ଖାଲି ଆମର ବୋଲି କହିବାର ମୋହରେ ପଡ଼ିଯାଇଛୁ । ସାହିତ୍ୟକୁ ଆମ ମମତାର ଲାଳସାରେ ଦୂଷିତ କରିଦେବାର ଦୁର୍ବୁଦ୍ଧିରେ ଆମେ ପଡ଼ିଯାଇଛୁ । ସାହିତ୍ୟିକଙ୍କୁ ବିବେଚନାର ନ୍ୟାୟ ଅନୁସାରେ ଏହାକୁ ଅହଙ୍କାର ବୋଲି କହିଲେ ଆଦୌ ଭୁଲ ହେବ ନାହିଁ । ଏହାଦ୍ୱାରା ଆମରିହିଁ ସବୁଠାରୁ ଅଧିକ କ୍ଷତି ହେଉଛି । ଆମ କବିମାନେ ଆମଠାରୁ ଅନେକ ଦୂରରେ ରହିଯାଉଚନ୍ତି, ସେମାନଙ୍କଠାରୁ ଆମେ ଯଥାର୍ଥ ପ୍ରେରଣା ପାଇପାରୁ ନାହୁଁ । ଆମ ଜୀବନରେ ସେମାନଙ୍କର ସ୍ମୃତି କେବଳ ଅଫିମ ପରି କାମ ଦେଉଚି, ଆମକୁ କେବଳ ଉତ୍ତେଜିତ କରି ରଖୁଚି । ବିଭିନ୍ନ ଯୁଗରେ ପ୍ରତ୍ୟେକ କବିଙ୍କର ସ୍ୱତନ୍ତ୍ର ସାଧନା ଓ ସ୍ୱତନ୍ତ୍ର ମନୋବୃତ୍ତି ରହିଆସିଚି । ସେମାନେ ସେମାନଙ୍କର ନିଜସ୍ୱ ଆଖିରେ ସଂସାରକୁ, ସୌନ୍ଦର୍ଯ୍ୟକୁ ଓ ଜୀବନକୁ ଚିହ୍ନିବାର ପ୍ରୟାସ କରିଚନ୍ତି ଓ ଆପଣା ସାଧନାର ବଳିଷ୍ଠତା ଅନୁସାରେ ସେଥିରେ ସେହି ପରିମାଣରେ ସଫଳ ହୋଇଚନ୍ତି । ସେମାନଙ୍କର ଏହି ସାଧନା ସାରା ଯୁଗକୁ ବା ଜାତିକୁ ଏକ ନୂତନ ପଥର ସୂଚନା ଦେଇଚି । ଜାତିଲାଗି ଏକ ନୂତନ ସମ୍ଭାବନାର ଦ୍ୱାର ଖୋଲିଦେଇଚି । ତତ୍କାଳୀନ ବା ଭବିଷ୍ୟତର ସମାଜ ଓ ସଂସ୍କୃତିକୁ ଏକ ପରିବର୍ତ୍ତିତ ଜୀବନଦର୍ଶନ ଅନୁସାରେ ଗଢ଼ିବାଲାଗି ତାହା ଅନେକ ପ୍ରେରଣା ଦେଇଚି । ମଣିଷ ମନର ବର୍ତ୍ତୀଧାରୀ ଅଗ୍ରଦୂତ ହିସାବରେ ଆମର କବି ଚିରଦିନ ଆମର ସବୁ ବିପ୍ଳବ ଓ ସବୁ ଆନ୍ଦୋଳନର କାରିଗର ହୋଇ ରହିଆସିଚି ।

ସେହି ସାଧନାଟିର ସୂତ୍ର ଦେଇ ଆମେ କବିକୁ ଚହ୍ନିବା, ଶିଳ୍ପୀକୁ ଚହ୍ନିବା । ପ୍ରତ୍ୟେକ କବିଙ୍କର ନିଜସ୍ୱ ସାଧନା ଓ ଜୀବନଦୃଷ୍ଟି ଆମକୁ ତାଙ୍କର ନିଜସ୍ୱ ପରିଚୟ ଦେଇଯିବ । ସେଠି ଆଉ ସବୁ କବିଙ୍କୁ ଏକାଠି ଜମା କରି ମୋର ବୋଲି କହିବାର କୌଣସି ଅବକାଶ ରହିବ ନାହିଁ । ପ୍ରତ୍ୟେକଟି ପ୍ରତିଭା ତାଙ୍କର ନିଜସ୍ୱ ଜ୍ୟୋତିରେ ଆମ ଆଗରେ ଆସି ଦେଖାଦେବେ । ଆମ ସମ୍ପତ୍ତି ହିସାବରେ ନୁହେଁ—ଆମର ଯାତ୍ରାପଥର ପ୍ରେରକ ଓ ପ୍ରଦର୍ଶକ ହିସାବରେ ସେମାନେ ଆମର ନିକଟତର ହେବେ । ସାହିତ୍ୟ ସମୀକ୍ଷାର ମୂର୍ଖ ଯୁଗ ଯାଇ ଓଡ଼ିଶାରେ ଏକ ନୂତନ ଯୁଗ କେବେ ଆରମ୍ଭ ହେବ କେଜାଣି ?

୧୦-୮-୫୭

ହିନେ ଫେଶନ ହେବା ବିଷୟରେ ମୁଁ ଏଥିରେ ଦି’ପଦ ଲେଖି ଦେଇଥିଲି । ତାକୁ ଶୁଣି ତୁମମାନଙ୍କ ମନରେ କି ପ୍ରକାର ଭାବ ଜାତ ହେଲା ସେ କଥା ମୁଁ ଜାଣେ ନାହିଁ । ଅନେକେ ହୁଏତ ସେ କଥାକୁ ଟିକିଏ ଖରାପ ଭାବିଥିବେ । ତୁମ ମନରେ କୌଣସି ପ୍ରକାର ବିରକ୍ତି ଜାତ କରିବା ମୋର ଉଦ୍ଦେଶ୍ୟ ନ ଥିଲା । ସାରା ସଂସାରରେ ଆଜି ଫେଶନର ହାଓ୍ୱା ବହୁଚି । ଖାଲି ଆପଣାର ବାହାରଟାକୁ ସଜାଇବାର, ଅନ୍ୟ ସହିତ ପ୍ରତିଯୋଗିତା କରିବାର ମନୋବୃତ୍ତି ଆଜି ଅନେକ ଯାଗାରେ ଘାରିଚି । ଏଠି ସେ ହାଓ୍ୱାର ଆଞ୍ଚ ଆସି ବାଜିବା ଅତି ସ୍ୱାଭାବିକ; କିନ୍ତୁ ସେହି ହାଓ୍ୱା ଆସି ଆମର ମନକୁ ଉଡ଼ାଇନିଏ । ତେବେ ଏଠିକାର ସରଳ ଜୀବନ ଓ ସୁନ୍ଦର ପ୍ରକୃତି ଆଉ ଆମକୁ ଭଲ ଲାଗିବ ନାହିଁ । ଆମର ବିଦ୍ୟାର୍ଥୀ ହେବାର ସାଧନାରେ ନାନାଦି ଅସୁସ୍ଥ ଆଗ୍ରହ ପଶି ଆମକୁ ବୁଡ଼ା କରି ଦେଇଯିବ । ଆମ ଭିତରେ ଜଳୁଥିବା ଜିଜ୍ଞାସାର ନିଆଁକୁ ସେ ଥଣ୍ଡା କରି ଦେଇଯିବ । ସେଦିନ ଏତିକି କହିବାର ମୋର ଉଦ୍ଦେଶ୍ୟ ଥିଲା ।

ସବୁଠାରେ ଆଜି ସାଜିବାର ପ୍ରବୃତ୍ତି ବେଶ ପ୍ରବଳ ହୋଇଚି । ସଂସାରରେ ସଫଳ ହେବାକୁ ମଣିଷ ଆପଣାକୁ ନାନାଭାବେ ଫିଟ୍‌ଫାଟ୍ କରି ରଖିଲାଣି ।

ତା'ର ବେଶ, ତାର କଥାବାର୍ତ୍ତା ଓ ତାର ବ୍ୟବହାର କାଇଦାରୁ ସେଥିପାଇଁ କ୍ରମେ ସବୁ ସ୍ୱାଭାବିକତା ଖସି ପଡ଼ିଲାଣି । ତା'ର ଶରୀରଟା ତା'ର ଚବିଶ ଘଣ୍ଟାର ଜଞ୍ଜାଳ ହୋଇଛି । ଶରୀରକୁ ବଞ୍ଚାଇ ରଖିବା ପାଇଁ ଓ ଶରୀରକୁ ପ୍ରସନ୍ନ ରଖିବା ପାଇଁ ସେ ଶରୀରକୁ ସଜାଇବାର ଅଦ୍‌ଭୁତ ଫନ୍ଦା ଧରିଲାଣି । ଅନ୍ୟ କେଉଁ ଯୁଗରେ ଆପଣାର ଶରୀର ବିଷୟରେ ମଣିଷ ଏପରି ସଚେତ ଥିଲା ବା ଆପଣାର ବ୍ୟାବହାରିକ ଜୀବନକୁ ଏତେ ଜଟିଳ କରି ପକାଇଥିଲା, ସେ କଥା ଭାବି ବସିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ । ଆମ ଶରୀର ଆମ ଜୀବନର ସର୍ବସ୍ୱ ନୁହେଁ, ଏକ କଥା ଶାସ୍ତ୍ର ସବୁ ଦେଶରେ କହିଛି । ତଥାପି ଆମ ଜୀବନର ଶରୀରାବଲମ୍ବିତା କ୍ରମେ ବଢ଼ି ବଢ଼ି ଚାଲିଛି । ଶରୀର ଭିତରେ କେଉଁ ଅଶରୀରୀ ମହାସମ୍ପଦ ପ୍ରଚ୍ଛନ୍ନ ରହି ଆମର ଜୀବନକୁ ଚାଳିତ କରିବାର କଥା, ତାକୁ ଆମେ ଅନେକଦିନରୁ ଆମ ଦୃଷ୍ଟିରୁ ବହିଷ୍କୃତ କରିସାରିଲୁଣି ।

ଶରୀରକୁ ସଜାଇବାର ଆଡ଼ମ୍ବର ବିଷୟରେ ମହାତ୍ମା ଗାନ୍ଧି ଅନେକ-ଥର ଅନେକ କଥା କହିଛନ୍ତି । ଜଳବାୟୁ ଅର୍ଥାତ୍ ଖରା, ଶୀତ ଓ ବରଷାରୁ ଶରୀରକୁ ବଞ୍ଚାଇ ରଖିବାକୁ ଆମେ ପ୍ରଥମେ ପୋଷାକ ବ୍ୟବହାର କରି ଶିଖିଲୁ; କିନ୍ତୁ ସେ ଆବଶ୍ୟକତାର ବିଚାର ବର୍ତ୍ତମାନ ଆଉ ନାହିଁ । ବର୍ତ୍ତମାନ ପୋଷାକ ମଧ୍ୟ ଗୋଟିଏ ପ୍ରକାର ମଣ୍ଡନ-ସାମଗ୍ରୀ ହୋଇଗଲାଣି । ଏ ଯୁଗର ବାଳିକାମାନଙ୍କୁ ଲକ୍ଷ୍ୟ କରି ଗାନ୍ଧିଜୀ କହିଛନ୍ତି—ଆଧୁନିକା ବାଳିକା ସମାଜର ଅଧିକାଂଶ ଯୁବକଙ୍କର ଗୋପନପ୍ରଣୟିନୀ ହେବାକୁ ଇଚ୍ଛା କରେ । ଖରା କାକରରୁ ରକ୍ଷା ପାଇବାକୁ ସେ ପୋଷାକ ପିନ୍ଧେ ନାହିଁ; ଆପଣାକୁ ସଜାଇବାକୁ ଓ ଅପରର ଦୃଷ୍ଟି ଆକର୍ଷଣ କରିବାକୁ ସେ ପ୍ରଧାନତଃ ପୋଷାକ ପିନ୍ଧେ । ଆମ ସମାଜର ଆଧୁନିକ ବାଳକ ବାଳିକାଠାରୁ ଏ ଦିଗରେ କୌଣସି ଗୁଣରେ ଊଣା ନୁହେଁ । ଆଗେ ଯେଉଁ ସବୁ କଳାକୁ ସାଧାରଣତଃ ନାରୀ ପ୍ରତି ପ୍ରଯୁଜ୍ୟ କରାଯାଉଥିଲା, ଆଜି ପୁରୁଷ ମଧ୍ୟ ଚମତ୍କାର ପରିପାଟୀରେ ସେ ସବୁ କଳାକୁ ଆୟତ୍ତ କରି ଶିଖିଲାଣି । ନାନା ଭୂଷଣ ଓ ପ୍ରସାଧନରେ ଦେହକୁ ମଣ୍ଡାଇବାର ଉତ୍ସାହ ଆଧୁନିକ ପୁରୁଷଠାରେ ବି ବେଶ ଅଛି । ସେଇଥିରେ ସେ ଜୀବନର କମ ସମୟ ଦେଉ ନାହିଁ । ନାରୀ ପରି ହେବାର ଚୋଟାଏ

ଶୋଧିତ ବାସନା ତାକୁ ଗ୍ରାସ କରି ରଖିଛି । ଆମର ଫେଶନ, ଆମର ଆଭିଜାତ୍ୟ ଏହି ବାସନାର ଗୋଟିଏ ଗୋଟିଏ ସୂଚନା ମାତ୍ର । ଆମର ଶରୀରକୁ ଆମେ ଶ୍ରେଷ୍ଠ ଆଖିରେ ଦେଖୁଚୁ, ସେଥିଲାଗି ସେଇଟାକୁ ଲୁଚାଇ ରଖିବାରେ ଆମର ଅବିଶ୍ରାନ୍ତ ଉଦ୍ୟମ ଚାଲିଛି । ଗୋଟାଏ ପ୍ରକାର ଅଦ୍ଭୁତ ଅଥଚ ବିକୃତ ସାମାଜିକ ନୈତିକତା ଆମକୁ ଆମ ଶରୀର ବିଷୟରେ ଏତେ ଲଜ୍ଜିତ କରି ରଖିଛି । ଏଇ ହାତ, ଏଇ ଗୋଡ଼, ଏଇ ପିଠି, ଆଉ ଏଇ ବକ୍ଷ, ଅଥଚ ତା ଉପରେ ପାଞ୍ଚଜଣଙ୍କ ଆଖି ପଡ଼ିଗଲେ ଗୋଟାଏ ପ୍ରକାର ଅସ୍ୱାଭାବିକ ସଙ୍କୋଚ ଆମକୁ କାମୁଡ଼ି ଧରୁଚି । ଏ ଶରୀରକୁ ଢାଙ୍କିବାକୁ ହେବ । ନିର୍ମଳ ଖରା ଓ ଜୀବନଭରା ପବନର ଦେଶରେ ରହି ମଧ୍ୟ ଆମେ ତାକୁ ଢାଙ୍କି ରଖିବାର ନାନା ଫନ୍ଦି ଲଗାଇ ଦେଇଚୁ । କାଳ ଯେତିକି ବୁଢ଼ା ହେଉଛି, ଆମର ସାମାଜିକ ଜୀବନ ଯେତିକି ଜଟିଳ ହେଉଛି, ସେମିତି ଆମେ ଦେହକୁ ଘୋଡ଼ାଇ ରଖିବାର ନାନା କୌଶଳ ବାହାର କରୁଚୁ । ଆଗେ ଯେଉଁଠି ଖଣ୍ଡେ ଲୁଗା ଆଉ ଖଣ୍ଡେ ଗାମୁଛାରେ କାମ ଚାଲୁଥିଲା, ସେଠି ଆଜି ତିନି ପରସ୍ତ ପୋଷାକ ଦରକାର ହେଉଚି । ଦେହକୁ ଲୁଚାଇ ରଖିବାର ଏ ଅସ୍ୱାଭାବିକ ଇଚ୍ଛା ସମସ୍ତ ପୋଷାକ ସତ୍ତ୍ୱେ ଦେହ ସମ୍ବନ୍ଧରେ ଆମର ଲାଜକୁ ବେଶ୍ ପଦାରେ ପକାଇ ଦେଉଚି ।

ଆଉ ଗୋଟିଏ ଦିଗରୁ ଦେଖିଲେ ଏ ପୋଷାକ ଆମର ବେଶ ଉପକାର କରୁଚି; ଆମକୁ ଅନେକ ନୈରାଶ୍ୟରୁ ବଞ୍ଚାଇ ରଖୁଚି । ଏ ଦେଶରେ ଯୁବକଙ୍କ ଭିତରୁ ଶତକଡ଼ା ନବେ ଜଣଙ୍କର ଛାତିକୁ କଙ୍କାଳର ହାଡ଼ ବୁଜାଇ ରଖିଥାଏ । ପେଟ ଉପରେ ପ୍ଲୀହାର ପରାକ୍ରମ ବେଶ୍ ପ୍ରକଟ ହେଉଥାଏ । ଯୌବନର ସମସ୍ତ କାନ୍ତିକୁ ମଇଳା ରୋଗଣା ଚମ ଆବୋରି ରଖିଥାଏ । ସେଇ ଶ୍ରୀହୀନ ରୂପଟାକୁ ଦେଖୁଥିଲେ ଆମ ଦେଶର ଯୁବକ ଆପଣା ବିଷୟରେ ବଡ଼ ନିରାଶ ହେଉଥାନ୍ତା । ସେଇଥିଲାଗି ସେ ଆପଣାର ଅସୁନ୍ଦର ଶରୀରକୁ ଘୋଡ଼ାଇ ରଖିବାକୁ ସୁନ୍ଦର ପୋଷାକର ଆଶ୍ରୟ ନେଇଚି । ସେଥିଲାଗି ତା'ର ଆପଣା ଦେହଠାରୁ ତା'ର ଝଲକ ଭଲ ଅଙ୍ଗରଖା ତା' ଲାଗି ଅଧିକ ଧ୍ୟାନର ସାମଗ୍ରୀ

ହୋଇଛି । କୁରୂପ ଶରୀରକୁ ସୁନ୍ଦର ପୋଷାକରେ ଯଦି ସୁରୂପ କରାଯାଇ ପାରିଲା, ତେବେ ମନ୍ଦ କ'ଣ ?

କିନ୍ତୁ ବଳିଷ୍ଠ ସୁସ୍ଥ ଜୀବନ ଲାଗି ଏ ସାନ୍ତ୍ୱନା ଯଥେଷ୍ଟ ନୁହେଁ । ଏ କେବଳ ଫଟା କାନ୍ଥରେ ମାଟି ନେଇ ପୁଣି ନୂଆ ଫଟାର କ୍ଷେତ୍ର ପ୍ରସ୍ତୁତ କରିବାର କଥା । ମୋର ଶରୀର ମଧ୍ୟ ମୋର । ସଂସାରରେ ମୋର ଜୀବନକୁ ନିବେଦନ କରିଦେବା ଲାଗି ଏହା ମୋର ସର୍ବଶ୍ରେଷ୍ଠ ସାଧନ । ଏତେ ଶକ୍ତି ଆଉ ଏତେ ସାମର୍ଥ୍ୟରେ ଭରି ରଖିଥିବା ମୋର ଏହି ଶରୀର; ତାକୁ ଲୁଚାଇ ରଖିବାର ମନ୍ଦ ବୁଦ୍ଧି ମୁଁ କାହିଁକି କରିବି ? ମୁଁ କେବଳ ଶରୀର ନୁହେଁ, ଏ କଥା ଯେପରି ସତ, ଶରୀରକୁ ବାଦଦେଇ ମଧ୍ୟ ମୁଁ ନୁହେଁ, ଏ କଥା ବି ସେହିପରି ସତ । ମୋ' ଶରୀର ମୋର ଜୀବନସାଧନାର ଏକ ଅମୂଲ୍ୟ ସାଧନ; ତେଣୁ ତାହାର ଗୋଟିଏ ଅଙ୍ଗ ଏ । ମୁଁ ତାକୁ ଲୁଚାଇବାକୁ ଯିବି କୋଉ ଲାଳସାରେ । କେଉଁ ଅଭିସନ୍ଧି ନେଇ ତାକୁ ମୁଁ ସଂସାରର ଆଲୁଅ ଆଉ ପବନରୁ ବଞ୍ଚିତ କରି ରଖିବି କାହିଁକି ? ଏ କଥା ଆମେ ସମସ୍ତେ ଭାବିବା; ଆମ ବିଦ୍ୟାର୍ଥୀ ଜୀବନର ଭୂମି ଉପରେ ଆମର ଆଡ଼ମ୍ବର ଇଚ୍ଛାକୁ ବିସ୍ତାର କରି ଦେଖିବା ।

୨୪ । ୮ । ୫୭

ଯେଉଁଠି ଶୃଙ୍ଖଳାକୁ ଜୋରକରି ଲଦି ଦିଆଯାଉନାହିଁ, ସେଇଠି ଯଥାର୍ଥ ଶୃଙ୍ଖଳା ରହିଛି ବୋଲି ମୁଁ କହିବି । ଏଠି ଆମର ତାହା ହୋଇପାରୁ ନାହିଁ । ଆମେ ଆପେ ଆପେ ଏଠିକାଲାଗି ଅନେକ ନିୟମକାନୁନ କରୁଚେ; କେତେ ଦିନ ଟାଣିଓଟାରି ତାକୁ କାର୍ଯ୍ୟକାରୀ କରିବାର ଅଭିନୟ କରୁଚେ । ତା ପରେ ସବୁ ପାସୋର ହୋଇଯାଉଛି । ପୁଣି ପୁରୁଣା ଅଳସୁଆମି ଆମକୁ ସବୁ ଭ୍ରମରେ ପକାଇ ଦେଉଛି । ଏଠି ଯଦି କୌଣସି ରୁଟିନ ଚାଲୁଥାଏ ବୋଲି କୁହାଯାଇ ପାରିବ ତେବେ ତାହା ହେଉଛି ଏହି ଅଳସୁଆମିର ରୁଟିନ । ଆମର ଅଳସୁଆମି ଆମର ଜୀବନ ନିୟନ୍ତ୍ରଣ କରିଚାଲିଛି । ଆମେ ଯେଉଁଠି ବସୁଚେ, ସେଠି ଢଳି

ପଡ଼ୁଚେ । ଯୋଉଠି ପାଞ୍ଚଜଣ ଏକାଠି ହେଉଚେ ସେଠି ଖଟି ଆରମ୍ଭ କରି-
ଦେଉଚେ । ଯେତେବେଳେ ସାଙ୍ଗମେଳରେ କୁଆଡ଼େ ବୁଲିଯାଉଚେ ସେଠି
ଆମେ ପାଞ୍ଚଟା ମନଖୋଲି କଥା କହି ତୃପ୍ତି ପାଉଚେ । ମଝିରେ ମଝିରେ
ମଧ୍ୟରେ ପଡ଼ି ଅନେକ ନିୟମ ଏଠାରେ ହେଉଚି । ଘୋର ଭଦ୍ରତା ସହକାରେ
ଆମେ ବେଶ କେତେ ଦିନ ମାନୁଚେ । ଅଳସୁଆମିର ଜଳାଶୟରେ କ୍ଷଣକ ଲାଗି
ପାଣି ଚହଲିଯାଉଚି; କିନ୍ତୁ ମାତ୍ର କେତେଟା ଦିନ ପରେ ଅତି ନିର୍ଲିପ୍ତ-
ଭାବରେ ଆମେ ସେ ନିୟମକୁ ଭାଙ୍ଗୁଚେ; ଏଠି ଆପଣା ସମାଜରେ ନାନା
ଅରାଜକତା ସୃଷ୍ଟି କରୁଚେ । ଅଳସୁଆମିଟା ହିଁ ଜିତୁଚୁ । ଆମର ଅସଲ
ରୁଟିନ୍‌ଟା ହିଁ ଜାରି ରହୁଚି; କିନ୍ତୁ ଗୋଟାଏ ବିଦ୍ୟାଳୟରେ ବା ଶିକ୍ଷା-
ଗୋଷ୍ଠୀରେ ଯେଉଁପରି ଶୃଙ୍ଖଳା ରହିବା ଉଚିତ, ସେ ଶୃଙ୍ଖଳା ଆମର ଏଠି
ନାହିଁ ।

କାମ ଲାଗି ଅନେକ ସମୟରେ ଆମର ସଗର୍ଗ ହେଉନାହିଁ । ଜେଲରେ
କଇଦୀକୁ ପହରା ଜଗୁଆଳୀ ଆଉ କାମକୁ ନିଆଯାଏ । କାମ ନ କଲେ
କଇଦୀମାନେ ଶାସ୍ତି ପାଆନ୍ତି—ସେହି ଡରରେ ସେମାନେ କାମ କରନ୍ତି;
ଏମିତିକି ବେଳେବେଳେ ଠିକ ପଶୁପରି ଖଟିଆନ୍ତି । ଆମର ଏଠି ଅନେକେ
ଆପଣାକୁ ହୁଏତ କଇଦୀପରି ମନେ କରୁଛନ୍ତି । କାମ ନ କଲେ ତ ଏଠାରେ
କୌଣସି ପ୍ରକାର ଶାସ୍ତି ଦିଆଯାଉ ନାହିଁ, ତଥାପି ସେମାନେ କାହାକୁ ଭୟ
କରୁଛନ୍ତି ? ମନ ଭିତରେ କାମ କରିବାର କୌଣସି ଆଗ୍ରହ ନ ଥିଲେ ମଧ୍ୟ
କାହିଁକି ସେମାନେ ବାହାରେ ଘଣ୍ଟା ବାଜିବା ଅନୁସାରେ ହାତିଆର ଧରି କାମକୁ
ବାହାରି ପଡ଼ୁଚନ୍ତି । ଲୋକଲଜ୍ଜା ସେମାନଙ୍କୁ ଖାଇଯାଉଚି । ଭିତରେ ଆସ୍ଥାନ
ଜମାଇ ବସିଥିବା କୋଡ଼ି ମନଟା ଯେପରି ପାଞ୍ଚ ଜଣଙ୍କ ପାଖରେ ଧରାପଡ଼ି
ନ ଯାଉ, ସେଥିଲାଗି ନାନା ଅଭିନୟ କରି ସେମାନେ ଭିତରଟାକୁ ଯୋଡ଼ାଇ
ରଖିଚନ୍ତି । ଆପଣା ଲାଜଟା ଧରା ପଡ଼ିବାର ଭୟରେ ସେମାନେ ସନ୍ତ୍ରାସିତ
ହୋଇ ରହିଚନ୍ତି ।

ସେମାନଙ୍କୁ ମୁଁ ଏଠାକାର ସଂସାରରେ ସବୁଠାରୁ ବଡ଼ ଦୁର୍ଭାଗ୍ୟ ବୋଲି କହିବି । ସେମାନେ ସଂସାର ଆଖିରେ ଧରା ନ ପଡ଼ିବାକୁ କି ଅଧ୍ୟବସାୟ କରୁନାହାନ୍ତି ! କିନ୍ତୁ ସେମାନଙ୍କର ସମସ୍ତ ଦୁଶ୍ଚେଷ୍ଟା କେବଳ ସେମାନଙ୍କ ଉପରେ ଅଭିଶାପ ହୋଇପଡ଼ୁଚି । ଏଠିକାର ଶିକ୍ଷକଙ୍କୁ ସେମାନେ ପ୍ରଧାନତଃ ଶାସକ ବୋଲି ବିଚାରୁଚନ୍ତି, ପ୍ରଧାନତଃ ଭୟ କରୁଚନ୍ତି ; ସେମାନଙ୍କ ଆଖି ଆଗରେ ଥିଲାବେଳେ ଆପଣାକୁ ଯଥେଷ୍ଟ ତତ୍ପର ଓ ଉଦ୍ୟମଶୀଳ ବୋଲି ଦେଖାଇବାର ଚେଷ୍ଟା କରୁଛନ୍ତି; ଆଉ ଶିକ୍ଷକମାନଙ୍କର ତ୍ରାସ ଦୂରେଇ ଗଲେ ସେମାନେ ଏକ ଅରାଜକ ରାଜ୍ୟର ପରାକ୍ରମୀ ଯୁବରାଜ ସାଜି ବାହାରୁଚନ୍ତି । ମଣିଷ ମଣିଷ ଭିତରେ ଯେ ଶ୍ରଦ୍ଧାର ସମ୍ପର୍କ ରହିପାରେ, ଶିକ୍ଷକ ଓ ବିଦ୍ୟାର୍ଥୀ ଭିତରେ ଯେ ସହଯୋଗ ଓ ସ୍ନେହର ସମ୍ପର୍କ ସମ୍ଭବ ହୋଇପାରେ, ଏ କଥା ସେମାନେ ହୁଏତ କଳ୍ପନା ହିଁ କରିପାରୁ ନାହାନ୍ତି । କାମକୁ ସେମାନେ ନିଜର ବୋଲି ଭାବିପାରି ନାହାନ୍ତି । ଆପଣା ବିକାଶର ଏକ ସାଧନରୂପେ ଯେ ମଣିଷ କାମକୁ ବ୍ୟବହାର କରିପାରେ, ସେ କଥା ସେମାନେ ବୁଝିପାରି ନାହାନ୍ତି । ସେଥିପାଇଁ ସେମାନେ କାମ କଲାବେଳେ ଖୁସି ହୋଇପାରୁ ନାହାନ୍ତି । ଆପଣାକୁ ଏକ କଏଦୀପରି ଭାବୁଚନ୍ତି । କାମ ସେମାନଙ୍କର ଜୀବନ ଗଢ଼ିବାରେ କୌଣସି ସାହାଯ୍ୟ କରିପାରୁ ନାହିଁ । ପାଠକୁ ସେମାନେ ଗୋଟିଏ ଆବଶ୍ୟକ ବୋଝ ପରି ଗ୍ରହଣ କରିଚନ୍ତି । ସେଥିପାଇଁ ପାଠ ଅର୍ଜନ ଓ ହଜମ କରିବାର କୌଣସି ଶୃଙ୍ଖଳା ଦେଖିଲେ ସେମାନଙ୍କୁ ଭୟ ଲାଗୁଚି । ଆପଣା ଜୀବନର ବିକାଶ ଲାଗି ମୁଁ ପାଠ ପଢ଼ୁଚି, ତେଣୁ ପାଠ ପଢ଼ିବାର ଦାୟିତ୍ୱ ଓ ଗୌରବ ପ୍ରଧାନତଃ ମୋର ହେବା ଉଚିତ—ଏ ବିଶ୍ୱାସ ଏପର୍ଯ୍ୟନ୍ତ ସେମାନଙ୍କର ହୋଇନାହିଁ । କେବଳ ଅଭିପ୍ରିର ତାଡ଼ନାରେ ସେମାନେ କେବଳ ଯନ୍ତ୍ର ହୋଇ ପଳାଇଚନ୍ତି । ଏହି ପଳାୟନ-ଲିପ୍ସାର ପରାକ୍ରମୀ ପ୍ରବୃତ୍ତିରେ ସେମାନଙ୍କର ସମସ୍ତ ଚାଲିଯାଉଚି । ସେମାନଙ୍କର ଯୌବନ ଚାଲି ଯାଉଚି । ସେମାନଙ୍କର ଜୀବନ ସରି ଯାଉଚି । ଅଟକାଇ ରଖିବାର ଶକ୍ତି ସେମାନଙ୍କର ନାହିଁ । ଆଳସ୍ୟ ଆଉ ବାର୍ଦ୍ଧକ୍ୟ ସେମାନଙ୍କର ଭାଗ୍ୟର ଅଧିପତି ହୋଇବସିଚି ।

ମଣିଷ ଆପେ ଆପଣା ଜୀବନର ବିଧାୟକ ହେବ, ଆପଣାର ବାଟ ସେ ଆପେ ବାହାର କରିବ । ଆପଣାର ନିର୍ବାଚିତ ଶୃଙ୍ଖଳାରେ ଆପେ ସେ ଆପଣାକୁ ବାନ୍ଧିବ—ଏହା ହିଁ ଜୀବନର ଓ ଜୀବନ ଶୃଙ୍ଖଳାର ଉତ୍କର୍ଷ । ସେହି ଜୀବନ-ସ୍ଥିତିକୁ ଧ୍ୟେୟ କରି ଆମେ ଏଠି ପ୍ରସ୍ତୁତ ହେବୁ । ବାହାରର ଶୃଙ୍ଖଳା କ୍ରମେ ଆମକୁ ଆତ୍ମଶୃଙ୍ଖଳା ଆଡ଼କୁ ନେଇଯିବ । ବାହାରର ଜୀବନଚର୍ଯ୍ୟା କ୍ରମେ ଆମକୁ ଅଧିକରୁ ଅଧିକ ଅନ୍ତର୍ମୁଖ କରାଇବ । ଯୋଗସାଧନାରେ ନାନାବିଧ ନିୟମ ଶୃଙ୍ଖଳା ଥିଲା । ନାନାବିଧ କଠୋର ସାଧନାର ଶୃଙ୍ଖଳାରେ ଯୋଗଗତ ଜୀବନକୁ ବାନ୍ଧି ଦିଆଯାଉଥିଲା; କିନ୍ତୁ ଯୋଗୀ ହେବା ପରେ ଅର୍ଥାତ୍ ସିଦ୍ଧିଲାଭ କରିବା ପରେ ମଣିଷକୁ କୌଣସି ନିୟମର ଅନୁଗତ ହୋଇ ରହିବାକୁ ପଡ଼ୁ ନ ଥିଲା । ସମସ୍ତ ନିୟମ ଶୃଙ୍ଖଳା ତାର ସ୍ୱଭାବଗତ ହୋଇ-ଯାଉଥିଲା । ସେଥିପାଇଁ ବାହାରର କୌଣସି ପ୍ରକାର ଶୃଙ୍ଖଳା-ଶାସ୍ତ୍ରର ସାହାଯ୍ୟ ନେବା ତା ଲାଗି ଆବଶ୍ୟକ ପଡ଼ୁ ନ ଥିଲା । ଯୋଗର ସିଦ୍ଧି-ଅଙ୍ଗରେ ସାଧନା-ଅଙ୍ଗର କୌଣସି ଶୃଙ୍ଖଳ ଆବଶ୍ୟକ ହେଉ ନ ଥିଲା । ତନ୍ତ୍ରଶାସ୍ତ୍ର କୌଳାବଳୀ ନିର୍ଣ୍ଣୟ (୨୧-୬୩।୬୫) ରେ ସିଦ୍ଧଯୋଗୀକୁ ଦ୍ୱିତୀୟ ମହେଶ ବୋଲି କୁହାଯାଇଛି ।

ବୈଜ୍ଞାନିକ ଆଜି ଆପଣାର ପ୍ରୟୋଗ-ଶାଳାରେ ଆପଣାକୁ ନାନା ନିୟମରେ ବାନ୍ଧୁଛି, କାଲି ଆପଣା ସାଧନାଜନିତ ଆନନ୍ଦରେ ମୁକ୍ତିଲାଭ କରିବ ବୋଲି । ଜ୍ଞାନୀ ଆପଣାକୁ ନାନା ଅଧ୍ୟୟନ ଓ ଅଭ୍ୟାସର ଶୃଙ୍ଖଳାରେ ବାନ୍ଧୁଛି, ଜ୍ଞାନର ଆନନ୍ଦରେ ମୁକ୍ତିଲାଭ କରିବ ବୋଲି । ଭକ୍ତ ଆପଣାକୁ ନାନା ପୂଜା ଓ ଆରାଧନାର ଉପଚାରରେ ବାନ୍ଧୁଛି, ଭକ୍ତିର ଆନନ୍ଦରେ ମୁକ୍ତିଲାଭ କରିବ ବୋଲି । କର୍ମଯୋଗୀ ଆପଣାକୁ ନାନା କର୍ମର ବ୍ରତରେ ବାନ୍ଧୁଛି, କର୍ମ କରିବାର ଆନନ୍ଦରେ ମୁକ୍ତିଲାଭ କରିବ ବୋଲି । ବିଦ୍ୟାର୍ଜନ ଓ ଆତ୍ମ-ପରିଚୟର ଅମୂଲ୍ୟ ଆନନ୍ଦରେ ମୁକ୍ତିଲାଭ କରିବାର ଉଦ୍ଦେଶ୍ୟରେ ହିଁ ବିଦ୍ୟାର୍ଥୀ ବିଦ୍ୟାଲାଭ ଓ ଆତ୍ମଗଠନର ନାନା ଶୃଙ୍ଖଳାରେ ଆପଣାକୁ ବାନ୍ଧି ରଖୁ । ଖୁସି ହୋଇ ସେ ଆପଣାକୁ ଆପଣାର ସାଧନା ଭିତରେ ଧରି ଦେଉ ।

'ସା ବିଦ୍ୟା ଯା ବିମୁକ୍ତୟେ'—ଯିଏ ବିମୁକ୍ତି ଦିଏ ତାହାହିଁ ବିଦ୍ୟା; ଆମର ଋଷିମାନେ ବିଦ୍ୟାର ଏହି ଅର୍ଥ କରିଛନ୍ତି । ଆମର ବିଦ୍ୟା ଆମକୁ ମୁକ୍ତ କରୁ, ନିର୍ଭୀକ କରୁ, ଅପଣାକୁ ସମ୍ମାନ କରି ଶିଖାଉ, ନାନାପ୍ରକାରେ ନାନା ପ୍ରାସର କାଙ୍ଗାଳ ହେବାର ସବୁ ଦୁର୍ଗତିରୁ ସେ ଆମକୁ ଉଦ୍ଧାର କରି ନେଉ ।

୧୫।୮।୫୭

ମଣିଷର ଶରୀର ମଣିଷର ଅସଲ ପରିଚୟ ନୁହେଁ । ଆହାର, ନିଦ୍ରା, ମୈଥୁନ ଏବଂ ତତ୍‌ସମ୍ବନ୍ଧୀୟ ଯାବତୀୟ ଆସକ୍ତି ଓ ଅନାସକ୍ତି ମଣିଷ ଜୀବନର ସଂପୂର୍ଣ୍ଣ କାହାଣୀ ନୁହେଁ । ମଣିଷ ଭିତରେ ଅପାର ଶକ୍ତି ନିହିତ ହୋଇ ରହିଚି । ମଣିଷର ଚେତନାରେ ଅସୀମ ସମ୍ଭାବନାର ବୀଜ ପ୍ରଚ୍ଛନ୍ନ ହୋଇ ରହିଚି । ଦୃଶ୍ୟ ବ୍ୟାବହାରିକ ଜୀବନର ସବୁ ସାଧାରଣତ୍ୱ ତଳେ ଏକ ଅସାଧାରଣ ଚେତନ ଶକ୍ତି ଲୁଚି ରହିଛି । ଆପଣାର ଏ ମହତ୍ତ୍ୱ ପରିଚୟ ବିଷୟରେ ମଣିଷ ବିସ୍ମୃତ ହୋଇ ଗଲଣି । ଆପେ ଏତେ ବଡ଼ ବା ବିରାଟ ବୋଲି ବିଶ୍ୱାସ କରିବାକୁ ମଣିଷର ସାହସ ହେଉନାହିଁ । ତଥାପି ଆପଣାର ଚେତନାକୁ ଆହୁରି ଉଚ୍ଚତର ସ୍ତରକୁ ଉଠାଇ ପାରିବାର ସାଧନା ମଣିଷ ଲାଗି ପ୍ରଶସ୍ତ ପନ୍ଥା । ଏହି ଉପରକୁ ଉଠାଇ ନେବାକୁହିଁ ଯଥାର୍ଥରେ ଯୋଗସାଧନାର ମୂଳ ବୋଲି କୁହାଯାଇ ପାରିବ । ଶ୍ରୀ ଅରବିନ୍ଦ ତାଙ୍କର ଜୀବନ ସାଧନା ଦ୍ୱାରା ପ୍ରଧାନତଃ ଏହାରି ଘୋଷଣା କରିଯାଇଛନ୍ତି । ଆଜି ତାଙ୍କର ଜନ୍ମଦିନ । ନଅବର୍ଷ ହେଲା ଅଗଷ୍ଟ ୧୫ ତାରିଖକୁ ସ୍ୱାଧୀନତା ଦିବସରୂପେ ପାଳନ କରାଯାଉଛି । ସେଥିଲାଗି ଅନେକ ଯାଗାରେ ଅନେକ ପାଳି ମଉଚ୍ଛବ ଲାଗିଚି । ସେଇ ପାଳିର କୋଳାହଳରେ ପଡ଼ିଯାଇ ଯଦି ଆମେ ଏତେ ବଡ଼ ମହାତ୍ମାଙ୍କର ପୁଣ୍ୟତିଥିକୁ ବିସ୍ମରି ଯିବା ତା'ହେଲେ ଆମେ ଭାରି ଅନ୍ୟାୟ କରିବା । ପ୍ରତ୍ୟେକ ସ୍ୱାଧୀନ ମଣିଷ ତା' ସଂସ୍କୃତିର ସାରଗୁଡ଼ିକୁ ସାଇତି ରଖେ । କୌଣସି ପ୍ରକାର ଭୋଗ ବିଳାସର ମୋହ ତାକୁ ଏ ଗୌରବରୁ ବଞ୍ଚିତ କରେ ନାହିଁ । ଗାନ୍ଧୀ, ରବୀନ୍ଦ୍ରନାଥ ଆଉ ଅରବିନ୍ଦ ଆଧୁନିକ ଭାରତୀୟ

ମନର ସର୍ବଶ୍ରେଷ୍ଠ ପ୍ରତିନିଧି ହୋଇ ରହିଚନ୍ତି । ଆପଣା ଆପଣାର ବିଶିଷ୍ଟ
ଜୀବନ ସାଧନା ଦ୍ୱାରା ସେମାନେ ଭାରତୀୟ ସଂସ୍କୃତିର ଉତ୍କର୍ଷ ଦେଖାଇ
ଯାଇଚନ୍ତି । ନାନା ନୈରାଶ୍ୟରେ ଜର୍ଜର ହୋଇ ପଡ଼ିଥିବା ପୃଥିବୀରେ ସେମାନେ
ତଥାପି ଆଶାର ବାଟ ଦେଖାଇଯାଇଚନ୍ତି । ଶ୍ରୀ ଅରବିନ୍ଦଙ୍କର ଜନ୍ମତିଥିରେ ଆଜି
ଆମେ ତାଙ୍କୁ ଆମର ପ୍ରଣାମ ଜଣାଇ ଦିବା ।

ଅନ୍ୟାନ୍ୟ ଦେଶର ସଂସ୍କୃତିଠାରୁ ଭାରତୀୟ ସଂସ୍କୃତିର
ଗୋଟିଏ ବିଶେଷ ଲକ୍ଷଣ ଅଛି ଯେ ଏହା ପରାକ୍ରମୀ ରାଜାର ପୂଜା ନ କରି
ସବୁ ପରାକ୍ରମୀଙ୍କୁ ଏଡ଼ି ଚାଲିଯାଇଥିବା ସନ୍ନ୍ୟାସୀର ପୂଜା କରେ । କ୍ଷମତାର
ପୂଜା କରିବା ଏ ଦେଶର ସାଂସ୍କୃତିକ ଜଳବାୟୁରେ ଯାଏ ନାହିଁ । କ୍ଷମତାକୁ
ଏଡ଼ିଯାଇଥିବା ସର୍ବତ୍ୟାଗୀର ଆଦର ଏ ଦେଶରେ ସବୁଠାରୁ ଅଧିକ ।
ସଂସାରର ଧନ ସମ୍ପଦ ବା ବେପାର ବଣିଜ ବଢ଼ାଇବାରେ ଭାରତ ବେଶି
କିଛି ଭାଗ ନେଇ ନାହିଁ ; କିନ୍ତୁ ସଂସାରର ଆଧ୍ୟାତ୍ମିକ ସଂସ୍କୃତିରେ ଭାରତ
ଆପଣାର ଦାନକୁ ସବୁ ଯୁଗରେ ପ୍ରତିଷ୍ଠିତ କରି ଆସିଚି । ଆଧ୍ୟାତ୍ମିକ
ଜୀବନରେହିଁ ଜୀବନର ପରାକାଷ୍ଠା ନିହିତ ରହିଚି । ଏହାକୁ ସ୍ୱୀକାର କରୁ
ନ ଥିଲେ, ଆମେ ଭାରତୀୟ ସଂସ୍କୃତିରୁ ଖୁବ ବେଶି ପ୍ରେରଣା ପାଇ-
ପାରିବା ନାହିଁ । ଭାରତର ଆଧ୍ୟାତ୍ମିକ ସାଧନାରେ ଋଷି ଅରବିନ୍ଦ ସବୁଦିନେ
ଆମର ପ୍ରଣିଧାନର ଯୋଗ୍ୟ ହୋଇ ରହିଥିଲେ ।

ମଣିଷ ଭିତରେ ଭଗବାନ୍ ରହିଚନ୍ତି । ଆମର ରକ୍ତ, ମାଂସ, ହାଡ଼ ଆଉ
ହଜମ କରିବାର ଯନ୍ତ୍ରଟା,—ଏ ଆମର ଅସଲ ପରିଚୟ ନୁହେଁ । ଏହାରି
ଭିତରେ ହୃଦୟର ଗୁହା ଭିତରେ ଆତ୍ମା ରହିଚି । ଆତ୍ମା ଆମ ସମସ୍ତଙ୍କ ଭିତରେ
ରହିଚି । ଆତ୍ମା ବିଶ୍ୱ ବ୍ରହ୍ମାଣ୍ଡଯାକ ଭରି ରହିଚି । ଏହା ପୋଥିପାଠ ନୁହେଁ,
ଅସଲ ପଣ୍ଡିତଙ୍କୁ ସାନ୍ତ୍ୱନା ଦେବାଲାଗି ଖାଲି ଏ ସବୁର ଉଦ୍‌ଗାର ହୋଇ-
ନାହିଁ । ଯୋଗୀ ମଣିଷ ବା ଯୋଗୀ ଋଷି ଏ ସତ୍ୟ ଉଚ୍ଚାରଣ କରିଚି, ଅତି
ନିର୍ଭୟରେ ଏହି ବାଣୀର ଘୋଷଣା କରିଚି । ସେ ତାହାର ଚେତନାକୁ ଏକ
ଉଚ୍ଚତର ସ୍ତରକୁ ଉତ୍ତୋଳିତ କରି ନେଇପାରିଚି, ଯାହା ଫଳରେ କି ସେ

ଏତେ ବିଶ୍ୱାସର ସହିତ ସବୁରି ଭିତରେ ଆତ୍ମାର ଏକସୂତ୍ରତା ରହିଚି ବୋଲି ଘୋଷଣା କରିଚି । କାଗଜ କଲମରେ ବୁଝାଇ କେହି ଆତ୍ମାର ଏକସୂତ୍ରତା ପ୍ରମାଣ କରିପାରିବ ନାହିଁ । ଯୁକ୍ତି କରି କେହି ସବୁରି ଭିତରେ ଭଗବାନ୍ ଅଛନ୍ତି ବୋଲି ଦେଖାଇ ଦେଇ ପାରିବ ନାହିଁ । ଏଥିଲାଗି ଅନୁଭୂତିର ସ୍ତର ବଦଳିବା ଦରକାର, ଚେତନାର ସ୍ତର ବଦଳିବା ଦରକାର । ଜୀବନର ଯେଉଁ ସ୍ତରରେ ଆମେ ଜଡ଼ ହୋଇ ପଡ଼ିଚୁ, ଯେଉଁଠି ବୁଦ୍ଧିର ପଞ୍ଜୁରି ଭିତରେ ମିଥ୍ୟା-ନିଶ୍ଚିତତାର ନିଶା ଆମକୁ ଘାରି ରଖିଚି, ସେହି ସ୍ତରରୁ ଉପରକୁ ଉଠିଥିବା ଦରକାର । ଜୀବନର ସାଧନା ଏଇଥିଲାଗି ହେବା ଉଚିତ । ଆତ୍ମ-ପରିଚୟ ମଣିଷର ଧେୟ ହେବା ଉଚିତ । ଏହି ବିରାଟ ପରିଚୟହିଁ ମଣିଷକୁ ସମସ୍ତ ବିଶ୍ୱ ଜଗତ ସହିତ ଏକରସ କରିଦେଇ ପାରିବ ।

ସଂସାରରେ ଆଜି ସମସ୍ୟାର ଅନ୍ତ ନାହିଁ । ସୃଷ୍ଟିଠାରୁ ବଡ଼ଯାଏ ନାନା ଘୃଣା ଓ ନାନା ମୋହ ମଣିଷକୁ ବଡ଼ ଦୁର୍ବଳ କରି ସାରିଲାଣି । ମଣିଷର ବୁଦ୍ଧି ଯେଉଁ ବିରାଟ ବାରୁଦଘର ଗଢ଼ି ଠିଆ କରିଦେଉଚି, ତାର ଅପରିପକ୍ୱ ହୃଦୟ ସେଇଥିରେ ନିଆଁ ଲଗେଇ ଦେବାର ଭୟାବହ ଉତ୍ସାହରେ ମାତିଚି । ଏହି ସଙ୍କଟରୁ ଉଦ୍ଧାର ପାଇବାକୁ ନାନା ବାଟର ଚିନ୍ତା କରାଯାଉଚି । ସଂସାରର ଧନ ସମ୍ପତ୍ତି ବଢ଼ାଇ କିଏ ମଣିଷର ଦୁଃଖ ଦୂର କରିଦେବ ବୋଲି ଭାବୁଚି । ଯନ୍ତ୍ର ପରେ ମହାଯନ୍ତ୍ରର ସୃଷ୍ଟି କରି ମଣିଷକୁ ଶ୍ରମ ଓ ସମୟର କବଳରୁ ମୁକ୍ତକରି ମଣିଷକୁ ସୁଖୀ କରାଇବ ବୋଲି ହୁଏତ କେଉଁ ବୈଜ୍ଞାନିକ ଚିନ୍ତା କରୁଚି । କିଏ ରାଜନୀତିର ଭେକ ଧରୁଚି, କିଏ ଅର୍ଥନୀତିର ଦୁଆ ଲଗାଉଚି; ପୁଣି କିଏ ଗୋଟାଏ ନିର୍ଦ୍ଦିଷ୍ଟ ବାନା ଧରିଲେ ଦୁଃଖ ଯିବ ବୋଲି ପ୍ରଚାର କରୁଚି । ଅରବିନ୍ଦ କହୁଚନ୍ତି—ଏ କୌଣସିଟି ବାଟ ମଣିଷକୁ ତାର ସୁଖର ଧେୟ ପାଖକୁ ନେଇଯାଇ ପାରିବ ନାହିଁ । ମଝିରେ ମଝିରେ ଜଣେ ଜଣେ ମହାତ୍ମା ଆସି ଭକ୍ତିର ଗୁଡ଼ାଏ ଧୂମ୍‌ଧାମ୍ କରିଗଲେ ମଧ୍ୟ ସଂସାର ବଦଳିଯିବ ନାହିଁ । ଏଥିଲାଗି ପ୍ରତ୍ୟେକ ମଣିଷର ଜୀବନର ସ୍ତର ବଦଳିବା ଦରକାର । ଖଣ୍ଡ-ଚେତନାରୁ ଆପଣାକୁ ଉନ୍ନୀତ କରି ସେ ଏକ ପୂର୍ଣ୍ଣତର ଚେତନାର ସ୍ତରକୁ ଆପଣାକୁ ଉତ୍ତୋଳିତ କରିନେବା ଦରକାର । ମହାପୁରୁଷ-

ମାନେ ଆପଣା ଜୀବନରେ ଯାହା କରୁଚନ୍ତି, ସବୁ ମଣିଷ ଭିତରେ ସେସବୁ ସମ୍ଭବ ହୋଇ ପାରିବ । ସେଥିପାଇଁ ସାଧନା ଦରକାର । ଏହି ସାଧନାଲାଗି ଘର ଛାଡ଼ି ଜଙ୍ଗଲକୁ ପଳାଇବା ଦରକାର ନାହିଁ । ଯିଏ ଯୋଉଠି ଯୋଉ କ୍ଷେତ୍ରରେ ରହିଚି, ସେ ଗୃହସ୍ଥ, ସନ୍ନ୍ୟାସୀ, କବି ବା ଶିଳ୍ପୀ ଯାହା ହୋଇଥାଉ ପଛକେ, ସେହି କ୍ଷେତ୍ରରୁହିଁ ତାର ସାଧନା ଆରମ୍ଭ ହୋଇ ପାରିବ । ଏହିପରି ଯେତେ ବେଶି ମଣିଷ ସାଧନାର ପଥିକ ହେବେ, ଆପଣାର ଅନୁସନ୍ଧାନ ଓ ଉନ୍ମୋଚନ କରି ବାହାରିବା ପଥର ପଥିକ ହେବେ, ପୃଥିବୀ ସେତିକି ବଦଳିବ; ପୃଥିବୀରୁ ସେତିକି ଦୁଃଖ ଓ ଜର୍ଜରତା ଚାଲିଯିବ । ମଣିଷର କର୍ମ, ମଣିଷର ଜ୍ଞାନ ଓ ମଣିଷର ଶ୍ରଦ୍ଧା ତା'ର ସ୍ୱାର୍ଥର ସଙ୍କୀର୍ଣ୍ଣ ସୀମା ଡେଇଁଯାଉ । ନିତ୍ୟ ଜୀବନର ଯୋଗ-ସାଧନାରେ ସେ ଆପଣାର ମହାନ୍ ଧନଟିକୁ ପାଉ । ତା'ର ଦୃଷ୍ଟିରୁ ସବୁ ପ୍ରକାର ମଳିନତା ଯାଉ—ଅରବିନ୍ଦଙ୍କର ସାଧନା ଓ ବାଣୀ ଏହି ଅଭିଳାଷ କରିଥିଲା । ତାଙ୍କର ଜନ୍ମତିଥି ଆମକୁ ସେହି ପ୍ରେରଣା ଦେଇଯାଉ ।

୧୭ । ୮ । ୪୭

ରଜା ନ ଥିବା ଦେଶରେ ବାହାରର କୌଣସି ଦ୍ରବ୍ୟ ଆପଣାର ହୋଇ ରହେ ନାହିଁ । ମାଛପରି ସମସ୍ତେ ପରସ୍ପରକୁ ଖାଇବାରେ ଲାଗି ଯାଆନ୍ତି :— ବାଲ୍ମୀକି ରାମାୟଣ (୬୭-୩୧ - ଅ: କା:)ରେ ଦିନେ ଏଇ ପଦକ ଆଖିରେ ପଡ଼ିଗଲା । ହଠାତ୍ ଆମ ଏଇଠିକାର କଥା ମୋର ମନେ ପଡ଼ିଗଲା । ଆମର ବିଦ୍ୟାଳୟକୁ ଆମେ ଗୋଟିଏ ଦେଶ ସହିତ ବେଶ ତୁଳନା କରି ପାରିବା । ବେଳେ ବେଳେ ମୋତେ ଲାଗୁଚି, ଯେପରି ଏ ଦେଶରେ ଆମେ ପରସ୍ପରକୁ ଖାଇବାରେ ଲାଗିଯାଇଚୁ । ମଣିଷର ସଂସାରରେ ଲୋକନ୍ୟାୟ ଚଳିବାର କଥା; ବିଦ୍ୟାଳୟର ସଂସାରରେ ବିଦ୍ୟାର୍ଥୀ-ନ୍ୟାୟ ଚଳିବାର କଥା; କିନ୍ତୁ ଆମର ଏଠି ଅନେକ ସମୟରେ ମତ୍ସ୍ୟ-ନ୍ୟାୟହିଁ ଚାଲୁଚି ।

ମୋତେ କେହି ଭୁଲ ବୁଝିବ ନାହିଁ । ଆମର ଅପମାନ କରିବା ମୋର ମତଲବ ନୁହେଁ । ଆପଣାକୁ ଶ୍ରେଷ୍ଠ କରି ଦେଖାଇ ହେବାକୁ ମୁଁ ମୋଟେ ପସନ୍ଦ କରେ ନାହିଁ । ମଣିଷକୁ ମୁଁ ଶ୍ରେଷ୍ଠ ବୋଲି ଭାବେ ନାହିଁ । ଆପଣାକୁ ମୁଁ ଯେପରି ସମ୍ମାନ କରେ, ସବୁ ମଣିଷଙ୍କୁ ସେହିପରି ସମ୍ମାନ କରିବାକୁ ଚେଷ୍ଟା କରେ । ଜ୍ୟେଷ୍ଠ କନିଷ୍ଠ ସମସ୍ତଙ୍କୁ ମଣିଷର ଉଚିତ ସମ୍ମାନ ଦେବାକୁ ମୁଁ ଚେଷ୍ଟା କରେ । ବୟସରେ ତୁମେମାନେ ମୋ'ଠାରୁ ଅନେକ ଶ୍ରେଷ୍ଠ, କିନ୍ତୁ ମଣିଷକୁ କେବଳ ଏତେ ବୟସର ପୁରୁଣା ଶରୀର ବୋଲି ମୁଁ କଦାପି ଭାବେ ନାହିଁ । ମୋର ବୟସ ଅଧିକ ତୁମର ଶରୀରଠାରୁ ମୋର ଶରୀର ଅଧିକ ପାକିଲା । କିନ୍ତୁ ତା' ବୋଲି ମୋର ଆଦର୍ଶ, ଆକାଙ୍‌କ୍ଷା ଓ ଉଦ୍ୟମଠାରୁ ତୁମମାନଙ୍କ ଆଦର୍ଶ, ଆକାଙ୍‌କ୍ଷା ଓ ଉଦ୍ୟମ ମୋଟେ କମ ମୂଲ୍ୟବାନ୍ ନୁହେଁ । ମୋର ବାଟ ଚାଲିବାର ଆନନ୍ଦ ତୁମମାନଙ୍କର ବାଟ ଚାଲିବାର ଆନନ୍ଦର ସହୋଦର ହୋଇ ରହିବା ଉଚିତ । ପ୍ରତ୍ୟେକ ମଣିଷର ଜୀବନକୁ ଯୋଉ ଦିନ ଆମେ ଆମ ଜୀବନର ସାଥୀ ବା ସହୋଦର ବୋଲି ମନେ କରି ପାରିବା, ସେହି ଦିନ ଜୀବନ ବଞ୍ଚିବାରେ ଆମେ ଅନେକ ଆନନ୍ଦ ପାଇପାରିବା । ଏଇ ଆନନ୍ଦ-ଟିକକର ଲୋଭରେ ମୁଁ ସଂସାରର ମଣିଷ ସହିତ ସାଥୀ ହେବାକୁ ଏତେ ଦେଖୀ ହୋଇ ବୁଲୁଛି । ସେଇ ଲୋଭରେ ଏଠି ଏ ବିଦ୍ୟାଳୟର କ୍ରୀଡ଼ାଘର ଆରମ୍ଭ ହୋଇଛି । ଯେଉଁଦିନ ଏଠିକାର ସମସ୍ତଙ୍କର ଜୀବନକୁ ମୋ' ଜୀବନର ସହୋଦର ହିସାବରେ ପାଇ ପାରିବି, ଯେଉଁ ଦିନ ଆପେ ସବୁରି ସହୋଦର ହେବାର ଯୋଗ୍ୟତା ଅର୍ଜ୍ଜନ କରି ପାରିବି, ସେଇ ଦିନ ଆପଣାକୁ ଜଣେ ଶିକ୍ଷକ ବା ମଣିଷ କହିବାର ଯୋଗ୍ୟତା ମୋର ରହିବ ।

ମାଛର ସଂସାରରେ କେହି କାହାକୁ ମାନେ ନାହିଁ । ଶ୍ରେଷ୍ଠ ମାଛକୁ ମଝିଆଁ ମାଛ ଖାଏ, ପୁଣି ମଝିଆଁ ମାଛକୁ ବଡ଼ ମାଛ ଖାଏ । **Darwin** ଖାଇଗୋଡ଼ାଇବା ତତ୍ତ୍ୱ ବୋଧ ହୁଏ ମାଛଙ୍କ ସଂସାରରେ ସବୁଠାରୁ ଅଧିକ ପ୍ରାମାଣିକ ଭାବରେ ଚାଲିଛି । ସେଠି ସମ୍ମାନର ସ୍ଥାନ ନାହିଁ, ବ୍ୟକ୍ତି ପ୍ରତି ସମ୍ମାନ ନାହିଁ କି ଜୀବନ ପ୍ରତି ସମ୍ମାନ ନାହିଁ । ପ୍ରୟୋଜନ ହେଉଛି ସେଠିକା

ଜୀବନର ପରମତତ୍ତ୍ୱ । ଯିଏ ଯେତେ ଜଣକୁ ଆପଣାର ଆହ୍ୱାର ବା
ପ୍ରୟୋଜନ ସିଦ୍ଧିରେ ଲଗାଇ ପାରିଲା, ସେଠି ସିଏ ସେତେ ଅଧିକ ପରାକ୍ରମୀ ।
ପ୍ରୟୋଜନର ଶୂଳୀକାଠରେ ସେଠି ସବୁ ମୂଲ୍ୟ ଓ ମୂଲ୍ୟବୋଧ ବଳିପଡ଼ିବାକୁ
ବାଧ୍ୟ ।

ଆମେ ଏଠି କଣ ସମ୍ମାନକୁ ପ୍ରୟୋଗର ଶୂଳୀକାଠରେ ବଳି ଦେଇ-
ଦେବାକୁ ଚାହୁଁଚୁ କି ? ଆମର ଅଭ୍ୟାସ, ଆମର ଆଚରଣ, ପରସ୍ପର ପ୍ରତି
ଆମର ବ୍ୟବହାର ଯେପରି ବେଳେବେଳେ ଏହିପରି ଏକ ଅଶୁଭ ସୂଚନା
ଦେଇଯାଉଛି । ଯିଏ ସମସ୍ତଙ୍କ ପ୍ରତି ସମ୍ମାନ ରଖିଥାଏ, ସେ ବ୍ୟବହାରରେ
ନମ୍ର ହୁଏ, ଆଚରଣରେ ସଂଯତ ହୁଏ, ଆପଣାର ଅଧିକାର ଦାବି କରିବା
ଅଗରୁ ଆପଣାର କର୍ତ୍ତବ୍ୟ ସେ କରିଯାଏ । କର୍ତ୍ତବ୍ୟ କରିହିଁ
ସେ ଆନନ୍ଦ ପାଏ, ତେଣୁ ଆଉ କାହାରି ଅପମାନର ଜ୍ୱାଳାରେ ସନ୍ତପ୍ତ
ହେବାକୁ ତାକୁ ପଡ଼େ ନାହିଁ । କେତେ ଜଣ ଆମେ ଅଧିକାର ଦାବି କରିବା
ଆଗରୁ ନିଜର କର୍ତ୍ତବ୍ୟ କରିଯାଉଚୁ ଓ ସେଇଥିରେ ଆନନ୍ଦ ପାଉଚୁ ।
କେତେ ଜଣ ଆମେ ପରସ୍ପରକୁ ସାଥୀ ସହୋଦର ବୋଲି ଭାବୁଚୁ ? ଏ କଥା
ଆମ ପ୍ରତ୍ୟେକଙ୍କର ବିଚାର କରିବା ଉଚିତ । କିଏ କଥାରେ ଅନ୍ୟକୁ ମାଡ଼ି
ଚାଲିଯିବାକୁ ଚାହୁଁଚି, କିଏ ପାଞ୍ଚ ପ୍ରକାରରେ ଆପଣାକୁ ସଜାଇ ଆପଣାର
ପାଞ୍ଚଜଣ ଭାଇ ଭଉଣୀଙ୍କୁ ବଳିଯିବାର ପରାକ୍ରମ ଦେଖାଉଚି ; କିଏ ଆପେ
ଅଲଗୁଆ ରହି ଆଉ ପାଞ୍ଚଜଣଙ୍କ ଦ୍ୱାରା କାମ ଚଳାଇ ନେବାର ଚତୁର ଉପାୟ
ପାଞ୍ଚିବାରେ ରହିଛି । ଏ ପାଞ୍ଚରେ ଶ୍ରଦ୍ଧାର ଲେଶମାତ୍ର ନାହିଁ; ଖାଲି ଉପେକ୍ଷାହିଁ
ଅଛି । ଯଥାସମ୍ଭବ ଉପେକ୍ଷା କରି ମୁଁ ଚାଲିଯିବି । ଆପଣାର ପ୍ରତିଷ୍ଠା ଦାବି
କରିବା, ଆପଣାର ଶରୀର ଓ ମନକୁ ସୁଖରେ ରଖିବା ଯେପରି ମୋର ସବୁ
ସାଧନାର ପ୍ରଥମ କଥା । ଏ ସଂସାରଟା ଯେପରି କେବଳ ମୋର । ଏ ବିଦ୍ୟା-
ଶିକ୍ଷାର ଆଖଡ଼ା ସତେ ଅବା ମୋରି ସୁଖ ବିଧାନ ଲାଗି ତିଆରି ହୋଇଛି ।
ମୋର ବାଟ ସତେ ଅବା ଏ ସଂସାରର ଏକମାତ୍ର ବାଟ, ଏହିପରି ଗୋଟିଏ
ଭ୍ରମ ଆମକୁ ମାଡ଼ି ବସିଚି । ଆମର ଅହଙ୍କାର-ଯାହାରେ ଆମେ ବେଶ୍
ଆଖି ବୁଜି ଚାଲିଚୁ; କିନ୍ତୁ ଅନ୍ୟକୁ ଉପେକ୍ଷା କରିବାର ଦୁର୍ବୁଦ୍ଧିରେ ପଡ଼ି ଯୋ

ଆମେ ଆପଣାକୁ ସବୁଠାରୁ ଅଧିକ ଉପେକ୍ଷା କରୁଚୁ, ଯେ କଥା କିଏ ଆମକୁ ଚେତେଇ ଦେବାକୁ ଆସିବ ?

ଏଠି ମତ୍ସ୍ୟନ୍ୟାୟକୁ ଲୋପ କରି ବିଦ୍ୟାର୍ଥୀ-ନ୍ୟାୟର ପ୍ରତିଷ୍ଠା କରିବାକୁ ହେଲେ ଆମର ଜଣେ ରାଜା ଦରକାର । ଦେଶରେ ଜଣେ ରାଜା ନ ରହିଲେ ଦେଶ ଅରାଜକ ହେବାର ଭୟ ଥାଏ । ଆମର ଏଠାରେ ଆମେ କାହାକୁ ରାଜା ବୋଲି ମାନିବା ? କୌଣସି ଜଣେ ବ୍ୟକ୍ତି ରାଜା ହେଲେ ଏ ବିଦ୍ୟାଳୟ ଶୋଭା ପାଇବ ନାହିଁ । ଜଣେ ରାଜାର ଇଚ୍ଛା ଚାଲିଲେ ତାହାକୁ ସ୍ୱେଚ୍ଛାଚାରହିଁ କହିବାକୁ ହେବ । ବିଦ୍ୟାଳୟର ହୁକୁମ ତାମିଲ କରିବାର ରାଜଯନ୍ତ୍ର ଏ ନୁହେଁ; ଜୀବନ ଗଢ଼ିବାର ମହାନ୍ ସାଧନା ଏଠିକାର ପ୍ରଧାନ ଲକ୍ଷଣ ହୋଇ ରହିବ । ଜୀବନ ଗଢ଼ିବାର ଅନୁକୂଳ ପରିସ୍ଥିତି ସୃଷ୍ଟି କରିବାକୁ ହେଲେ ଆମକୁ ବିଦ୍ୟାର୍ଥୀ ହେବାର ମନ ରଖିବାକୁ ହେବ; ବିଦ୍ୟାର୍ଥୀ ହେବାର ଶୃଙ୍ଖଳାକୁ ଆପଣା ଆପଣା ଜୀବନରେ ସ୍ୱୀକାର ଓ ଗ୍ରହଣ କରିନେବାକୁ ପଡ଼ିବ । ମୁଁ କହୁଚି ବିଦ୍ୟାର୍ଥୀ ହିଁ ଏଠାରେ ରାଜା ହୋଇ ରହୁ । ବିଦ୍ୟାର୍ଥୀର ମନ ଏଠାକାର ସବୁ ବିଧାନ ଗଢ଼ୁ । ବିଦ୍ୟାର୍ଥୀର ଶୃଙ୍ଖଳା ଏଠାକାର ସଂସାରକୁ ନିୟନ୍ତ୍ରଣ କରୁ । ଯିଏ ଘଟଣାଚକ୍ରରେ ପଡ଼ି କୌଣସି ବିଦ୍ୟାଳୟରେ ଆସି ପହଞ୍ଚିଯାଇଚି, ତାକୁ ଖାଲି ସେତିକି ଦେଖି ଆମେ ବିଦ୍ୟାର୍ଥୀ ବୋଲି କଦାପି ଗ୍ରହଣ କରିପାରିବା ନାହିଁ । ବିଦ୍ୟାର୍ଥୀଠାରେ ଆଳସ୍ୟ ନ ଥିବ, କୌଣସି ପ୍ରକାର ଭୋଗଲାଳସା ନ ଥିବ, ପ୍ରତିଯୋଗିତାରେ ଅନ୍ୟକୁ ଆପଣାଠାରୁ ହୀନ ବୋଲି ପ୍ରମାଣିତ କରିବାର କୌଣସି ଚେଷ୍ଟା ତାର ନ ଥିବ । ସେ ସବୁରି ପ୍ରତି ଶ୍ରଦ୍ଧା ରଖିବ, ସମ୍ମାନର ଆଖିରେ ସମସ୍ତଙ୍କୁ ଦେଖିବ । ସେ ନମ୍ର ହେବ, ଅଥଚ କାହାରିକୁ ଭୟ କରିବ ନାହିଁ, କାହାରି ପ୍ରବର୍ତ୍ତାଇବାକୁ ନ ଡରି ଆପଣା ବିଚାର ଆପେ ତିଆରି କରିବାର ସାହସ ତା'ଠାରେ ଥିବ । ସେ ଆପଣାକୁ ବିଶ୍ୱାସ କରିବ ମଣିଷ ହିସାବରେ ସେ ଆପଣାକୁ ଉଚିତ ସମ୍ମାନ ଦେବ । ସେହିପରି ବିଦ୍ୟାର୍ଥୀ ହିଁ ଯେ କୌଣସି ବିଦ୍ୟାଳୟରେ ରାଜା ହୋଇ ରହିବାର ଉପଯୁକ୍ତ ହୋଇପାରିବ ।

ଏହି ବିଦ୍ୟାର୍ଥୀ-ସମାଜରୁ ମୁଁ ଶିକ୍ଷକଙ୍କୁ ମଧ୍ୟ ବାଦ ଦେଉ ନାହିଁ । ବିଦ୍ୟାଳୟର ସାଧନାରେ ଓ ଆନନ୍ଦରେ ବିଦ୍ୟାର୍ଥୀ ପରି ଶିକ୍ଷକର ସମାନ ଭାଗ ରହିବା ଉଚିତ । ଶିକ୍ଷକ ଆପଣାକୁ ବିଦ୍ୟାର୍ଥୀର ସହଯାତ୍ରୀ ବୋଲି ଭାବିବ । ବିଦ୍ୟାର୍ଥୀ ହେବାର ସମସ୍ତ ଶୃଙ୍ଖଳା ସେ ନିଜେ ମଧ୍ୟ ଗ୍ରହଣ କରିବ । ଅନେକ କୋମଳ ବିଦ୍ୟାର୍ଥୀ ହୃଦୟକୁ ମାଡ଼ି ମକଚି ସେ ବିଦ୍ୟାଳୟରେ ରାଜା ହୋଇ ବସିବାର ଦୁଃସାହସ କରିବ ନାହିଁ । ଶିକ୍ଷକ ଅଭିମାନବଶ ହେଲେ ବା କର୍ତ୍ତବ୍ୟ-ଅକର୍ତ୍ତବ୍ୟର ଜ୍ଞାନ ହରାଇ କୁମାର୍ଗରେ ଗଲେ ତାଙ୍କୁ ମଧ୍ୟ ଶାସନ କରିବାର ବିଧାନ ରାମାୟଣରେ (୨୧-୧୩ ଅ. କ.)ରେ ଅଛି । ତେଣୁ ଶିକ୍ଷକ କଦାପି ବିଦ୍ୟାଳୟରେ ରାଜା ହୋଇପାରିବ ନାହିଁ । ତା'ର ବିଦ୍ୟାର୍ଥୀ ମନ ଅନ୍ୟ ବିଦ୍ୟାର୍ଥୀମାନଙ୍କର ମନର ସହୋଦର ହୋଇ ପାରିବ । ଏହି ବିଦ୍ୟାର୍ଥି ମନ ହିଁ ବିଦ୍ୟାଳୟର ବିକାଶପଥ ଆବିଷ୍କାର କରି ବୁଲିବ ।

୧୬ । ୮ । ୫୬

ଫୁଲ କାହିଁକି ଫୁଟୁଛି ? ଦେଉଳର ପୂଜାରୀ କହିବ, ଦେବତାଙ୍କ ପାଖରେ ଲାଗି ହେବାକୁ ଫୁଲ ଫୁଟୁଛି । ସଂସାରରେ ମଣିଷର ସେବା ପାଇବ ବୋଲି ଭଗବାନ୍ ଫୁଲର ସୃଷ୍ଟି କରିଚନ୍ତି । ମହୁ ବେପାର କରୁଥିବା ବେପାରୀ କହିବ, ମହୁମାଛି ମହୁ ସଞ୍ଚିବା ଲାଗି ଫୁଲ ଫୁଟେ । ରସିକ କହିବ, ବେକରେ ପକାଇବାକୁ ଫୁଲ ଫୁଟେ । ସଉକିନିଆ ବଡଲୋକ ହୁଏତ କହିବ, ବୈଠକଖାନାର ଟେବୁଲ ସୁନ୍ଦର ଦିଶିବାକୁ ଫୁଲ ଫୁଟେ । ଯିଏ ଯାହାର ପ୍ରୟୋଜନମତେ ବୁଦ୍ଧି ଖଟାଇ ଫୁଲ ଫୁଟିବାର କାରଣ ଖୋଜିବାକୁ ନିଶ୍ଚୟ ବାହାରି ପଡ଼ିବେ ; କିନ୍ତୁ ଟିକିଏ ଭିତରକୁ ଭେଦି ବିଚାର କଲେ ଆମେ ପ୍ରତ୍ୟେକେ ଅତି ସହଜରେ କହିପାରିବା ଯେ କେବଳ କୌଣସି ପ୍ରୟୋଜନ ପୂରଣ କରିବା ଲାଗି ଫୁଲ ଫୁଟୁ ନାହିଁ । ଫୁଲ ଫୁଟୁଚି; ଆମେ ହୁଏତ ଆମର ପ୍ରୟୋଜନମତେ ତାକୁ କାମରେ ଲଗାଉଚୁ । କୌଣସି ପ୍ରୟୋଜନରେ ନ ଲାଗି ମଧ୍ୟ ଫୁଲ ଫୁଟୁଚି ।

ଫୁଟିବାର ଅନୁକୂଳ ବାୟୁମଣ୍ଡଳରେ ସ୍ତବକ ଭିତରୁ କଢ଼ିର ସେନ୍ଧା ବାହାରି ପଡ଼ୁଛି, ଆପଣାର ସମସ୍ତ ନେଇ ସେଇ କଢ଼ି ଫୁଲ ହୋଇ ଫାଟୁଛି । ଯୋଉଠି ଅନୁକୂଳ ପରିସର ମିଳୁ ନାହିଁ, ସେଠି ଫୁଟିବା ଆଗରୁ କଢ଼ି ଝଡ଼ି ପଡ଼ୁଛି ବା ଫୁଲ ମୋଉଳା ହୋଇଯାଉଛି । ସୃଷ୍ଟିରେ ନିତି ନିତି ଫୁଲ ଫୁଟାଇବାର ବିଚିତ୍ର କାର୍ଯ୍ୟକ୍ରମ ଯିଏ ରଖିଛି, ଫୁଲ ଫୁଟାଇବାର କାରଣ ହୁଏତ କେବଳ ତାହାଙ୍କୁ ହିଁ ଜଣାଥିବ ।

ଆମ ପୃଥିବୀରେ ଏମିତି ଅନେକ ଧାର୍ମିକ ଲୋକ ଅଛନ୍ତି, ଯେଉଁମାନେ କି ମଣିଷକୁ ନେଇ ସଂସାରଟାକୁ 'ଏମିତି କରିଦେବେ, ତେମିତି କରିଦେବେ' ବୋଲି ପ୍ରଚାର କରନ୍ତି । ଆଦର୍ଶ ମଣିଷକୁ ପ୍ରେରଣା ଦିଏ, ମଣିଷକୁ ଯୋଗ୍ୟରୁ ଯୋଗ୍ୟତର କରେ; କିନ୍ତୁ ଯୋଉଠି ଆଦର୍ଶଟି ନିଜର ଜୀବନର ବାହାରକୁ ନେଇଯାଇ ମଣିଷ ତାକୁ ଗୋଟାଏ ସହଜ ତାତ୍ତ୍ୱିକ ପରି ବ୍ୟବହାର କରିବାର ଭ୍ରମରେ ପଡ଼ିଯାଏ, ସେଇଠି ସେ ଆଦର୍ଶର ଭୂତକୁ ନେଇ ନାନା ପ୍ରକାର ସ୍ୱର୍ଣ୍ଣଲଙ୍କାର ସ୍ୱପ୍ନ ଦେଖେ । ଏଇଠି ଆଦର୍ଶ ଅନ୍ଧବିଶ୍ୱାସରେ ରୂପାନ୍ତରିତ ହୋଇଯାଏ । ଅନ୍ଧବିଶ୍ୱାସୀ ରାଜନୀତିଜ୍ଞ ଏତେ ବରଷରେ ଲୋକଙ୍କର ଦୁଃଖ ମୋଚନ କରି-ଦେବାକୁ ବାହାରେ । ଅନ୍ଧବିଶ୍ୱାସୀ ସାହିତ୍ୟିକ ବା ଶିଳ୍ପୀ ତା'ର ଆରାଧନାର ମନ୍ଦିରରେ ଗୋଟାଏ ନିର୍ଦ୍ଦିଷ୍ଟ ମାର୍କା ମାରିଦିଏ ବା ଝଣ୍ଡା ଉଡ଼ାଇଦିଏ । ଅନ୍ଧବିଶ୍ୱାସୀ ଶିକ୍ଷକ ଗୋଟାଏ ନିର୍ଦ୍ଦିଷ୍ଟ ସାମାଜିକ ଆଦର୍ଶର ପ୍ରତିଷ୍ଠା ଲାଗି ପିଲାଙ୍କୁ ମଣ୍ଡ କରିବାକୁ ଦମ୍ଭ କରେ । ସବୁ ପିଲାଙ୍କୁ ଏକାଠି ଗୋଟିଏ କାର୍ଯ୍ୟକ୍ରମ ଓ ଶିକ୍ଷଣପଦ୍ଧତିର ଚକ୍ରରେ ଯନ୍ତ୍ର ସେ ଆପଣାର ପ୍ରିୟ ସମାଜକୁ ଗଢ଼ିବାକୁ ବାହାରେ । ସଂସାରରେ ଦଳେ ମଣିଷ ଅଛନ୍ତି, ଯେଉଁମାନେ ବଞ୍ଚିବା ଅପେକ୍ଷା ବଞ୍ଚାଇବାର ଦୁଆ ଧରି ବୁଲିବାରେ ଭାରି ସାନ୍ତ୍ୱନା ପାଆନ୍ତି । ଯେଉଁମାନେ ବର୍ତ୍ତମାନକୁ ପାସୋରି ଭବିଷ୍ୟତର ବାନା ଧରି ବୁଲନ୍ତି, ଲୋକ ଭୁଲାଇବାର ଆଳ ଧରି ସେମାନେ ସଂସାରକୁ ବିପର୍ଯ୍ୟସ୍ତ କରିପକାନ୍ତି । ଏଇ ଜାତିର ମଣିଷ ଯୋଉ କ୍ଷେତ୍ରକୁ ଯାଆନ୍ତି, ସେ କ୍ଷେତ୍ରକୁ ବିପର୍ଯ୍ୟସ୍ତ କରି ପକାନ୍ତି । ରାଜନୀତି, ସାହିତ୍ୟ, ଧର୍ମ ବା ଶିକ୍ଷା—ଯାବତୀୟ କ୍ଷେତ୍ରରେ ସେମାନେ ସହଜ ପ୍ରବର୍ତ୍ତନର ବିଭୂତି ବାଣ୍ଟି ମଣିଷର ମୁଣ୍ଡ ଖାଇବାକୁ ଆସନ୍ତି; ମଣିଷକୁ ମାରିଦେଇ

ସାମାଜିକ ଆଦର୍ଶରେ ଧର୍ମୀୟ ଗଢ଼ିବାର ଦମ୍ଭରେ ସଂସାରକୁ ସନ୍ତ୍ରସ୍ତ କରି ରଖନ୍ତି ।

ଆମେରିକାରେ ଆଜି ଗଣତନ୍ତ୍ରର ବାନା ଉଡ଼ୁଛି । ରୁଷିଆରେ କମ୍ୟୁନିଷ୍ଟ-ବାଦର ବାନା ଉଡ଼ୁଛି । ଏହାଦ୍ୱାରା ଆମେରିକାର ମଣିଷ ଯଥାର୍ଥ ଗଣତନ୍ତ୍ରର ଆଦର୍ଶରେ ବା ରୁଷିଆର ମଣିଷ ଯଥାର୍ଥ କମ୍ୟୁନିଷ୍ଟ-ବାଦର ଆଦର୍ଶରେ କେତେଦୂର ଆପଣାର ଜୀବନ ଓ ଚରିତ୍ରର ପରିବର୍ତ୍ତନ କରିପାରୁଛି, ଦୂର ଭବିଷ୍ୟତ ତା'ର ଉତ୍ତର ଦେଇପାରିବ; କିନ୍ତୁ ଦୁଇ ଦେଶରେ ମଣିଷ ଅପେକ୍ଷା ଆଦର୍ଶ ଆଜି ବଡ଼ ହୋଇଛି । ଆଦର୍ଶର ଶୁଦ୍ଧତା ଓ କଠିକଣା ଅନୁସାରେ ସେ ସବୁ ଦେଶରେ ମଣିଷକୁ କାଣ୍ଡଗୁଣ୍ଡ କରି ତିଆରି କରିବାର ବେଶ୍ ପାଳି ଲଗିଛି । ଧ୍ୱଜା ଉଡ଼ାଇ, ଦୁଆ ଦେଇ ବାହାରିଥିବା ଅନ୍ଧବିଶ୍ୱାସୀ ନେତାମାନେ ଏଥିରେ ଖୁବ୍ ଅମୃତପ୍ରସାଦ ପାଉଛନ୍ତି । ନୂଆ ଦେଶ ଇସ୍ରାଏଲ୍‌ରେ ବି ଏଇ ଆଦର୍ଶର ଉତ୍ତେଜନା ମଣିଷକୁ ଭଗ୍ନ ଧରିଛି । ସାମୂହିକ ଗାଁମାନଙ୍କରେ ସେ ଦେଶରେ ମଣିଷକୁ ଚରମ ଧ୍ୟେୟ ବୋଲି ଯେତେ ଗ୍ରହଣ କରାଯାଇ ନାହିଁ, ଆପଣା ଆପଣା ରାଜନୈତିକ ମତବାଦକୁ ତା'ଠାରୁ ଉଚ୍ଚତର ଧ୍ୟେୟ ବୋଲି ଧରି ନିଆ-ଯାଇଛି । ମଣିଷ ଯେପରି ତା'ର ରାଜନୈତିକ ମତବାଦର ଅନୁଗ୍ରହରୁ ବଞ୍ଚି-ପାରେ । ଏହିପରି ଗୋଟାଏ ଜଣ୍ଡବିଶ୍ୱାସ ସେଠି ଶାସନ ଜମେଇଛି । ପରସ୍ପରର ଜୀବନରେ ସମଭାଗୀ ଓ ସହଯୋଗୀ ହୋଇ ରହିବାର ଯେଉଁ ସ୍ୱାଭାବିକ ପ୍ରବୃତ୍ତି ମଣିଷର ରହିଛି, ରାଜନୀତିକ ଆଦର୍ଶର ପ୍ରୟୋଜନ ଲାଗି ସେହି ପ୍ରବୃତ୍ତିକୁ ବେଶ୍ କାମରେ ଲଗାଯାଇଛି । ଆମେ ବି ଆମ ଦେଶରେ କିଛି କମ୍ ମାତିନାହୁଁ । କିଏ କହୁଛି, ଏଇ ପାଞ୍ଚ ବର୍ଷ ଭିତରେ ଆମ ଦେଶକୁ ଆମକୁ ଏମିତି କରି ଅବଶ୍ୟ ଗଢ଼ିବାକୁ ହେବ । ଏଥିଲାଗି ସ୍କୁଲ କଲେଜରେ ସବୁ ପିଲାଙ୍କୁ ଏମିତି ଗ୍ରାଙ୍କରେ ତିଆରି କର । ଆଉ କିଏ କହୁଛି, ଆମର ସାମାଜିକ ଆଦର୍ଶ ଦେଶରେ ପ୍ରତିଷ୍ଠିତ ହେଲେ ଆଉ ଶୋଷଣ ରହିବ ନାହିଁ, ବିଷମତା ରହିବ ନାହିଁ, ଗାଁ ଗାଁରେ ଲକ୍ଷ୍ମୀ ବିରାଜମାନ କରିବେ । ତେଣୁ ସ୍କୁଲ ପିଲା-ମାନଙ୍କୁ ସେହିପରି ଆଦର୍ଶର ଶୁଦ୍ଧତା ଅନୁସାରେ ଗଢ଼ିବାକୁ ହେବ । ଦୁନିଆ,

ଆମେରିକା, ଇସ୍ରାଏଲ ବା ଭାରତବର୍ଷ ଯୋଉଠି ଦେଖ, ଆଜି ସାଧାରଣତଃ ଏକ ନିର୍ଦ୍ଦିଷ୍ଟ ପ୍ରୟୋଜନର ପୂର୍ତ୍ତି ଲାଗି ଶିକ୍ଷାବ୍ୟବସ୍ଥାକୁ କାମରେ ଲଗାଯାଉଛି । ଆପଣା ଆଦର୍ଶରେ ଗୁଣି-ମନ୍ତ୍ର ବୋଲି ସବୁଠି ଆଜି ମଣିଷ ପିଲାକୁ ସାପ କରି ଖେଳାଯାଉଛି । ଦରକାର ପଡ଼ିଲେ ସେଥିଲାଗି ଶାସନର ପାଶବ ମଧ୍ୟ ସ୍ୱାଧୀନଭାବେ ବ୍ୟବହାର କରାଯାଉଛି ।

ମଣିଷ ଗଢ଼ିବାର ଶିକ୍ଷାରେ ଅମୁକ ଛାଞ୍ଚରେ ଗଢ଼ିବାର ଗ୍ୟାରେଣ୍ଟି କେହି ଦେଇପାରିବ ନାହିଁ । ଯିଏ ସେ ଭ୍ରମ କରିବ, ସେ ବାଟ ଭୁଲିଛି ବୋଲି କହିବାକୁ ହେବ । ଯୋଉଠି ଆଦର୍ଶର ଅମୁକ ମାର୍କା ଛାଞ୍ଚ ଭିତରେ ମଣିଷର ଅପାଳକ ମନକୁ କୁଆଇ ରଖିବାର ଅପଚେଷ୍ଟା କରାଯାଉଛି, ସେଠି ସବୁ ଶିକ୍ଷାର ଅପଲାପ ହେଉଛି । ମଣିଷପିଲା ଏ ସଂସାରରେ ବଗିଚାରେ ଫୁଲ ପରି ଫୁଟି ଉଠିବାର ସୁବିଧା ପାଇବ; ସବୁ ଆଦର୍ଶ ସହିତ ତା'ର ନିର୍ମଳ ପରିଚୟ ହେବ; କିନ୍ତୁ ନାନା ପ୍ରକାର ଦୁଆ ବୋଲି କୌଣସି ଗୋଟାଏ ଆଦର୍ଶକୁ ତା' ଉପରେ ଲଦି ଦେବାକୁ ଚେଷ୍ଟା କଲେ ତାକୁ ଅମର ଅହଙ୍କାରି ବୋଲି କହିବାକୁ ହେବ । ଏପରି ହେଲେ ମଣିଷର ମନକୁ ଆମେ ପାଗଳ କରି ପାରିବା ନାହିଁ । ଆପଣା ଉପରୁ ମଣିଷ ତା'ର ବିଶ୍ୱାସ ହରାଇ ବସିବ । ତା'ର ରାଜନୀତି, ଧର୍ମ, ତା'ର ଜୀବନଦର୍ଶନ—ସବୁ ବହିର୍ମୁଖ ହୋଇଯିବ । ସବୁ ଆଦର୍ଶ ଓ ସବୁ ଘଟଣାକୁ ଗମ୍ଭୀର ଭାବେ ବିଚାର କରି ଶିଖିବାକୁ ହେବ । ଆପଣା ବାଟ ଆପେ ଠିକାଇବାର ବିଶ୍ୱାସ ଓ ଆତ୍ମନିର୍ଭରତା ରଖିବାକୁ ହେବ । ଏ ସଂସାରରେ ମଣିଷ ହେବାକୁ ହେଲେ ପ୍ରଥମେ ଏ ସବୁ ଦରକାର । ଏହିପରି ଯୋଗ୍ୟତା ଅର୍ଜନ କରିବାର ବାତାବରଣ ଓ ବିଶ୍ୱାସ ସୃଷ୍ଟି କରିବା ସବୁ ବିଦ୍ୟାଳୟର ପ୍ରଧାନ କର୍ତ୍ତବ୍ୟ ହୋଇ ରହିବା ଉଚିତ । ଏବେ ଗୋଟିଏ ଗ୍ରନ୍ଥର ମୁଖବନ୍ଧ ଲେଖିବାକୁ ଯାଇ ଆଇନ୍‌ଷ୍ଟାଇନ୍ ଏହି କଥା ସୂଚାଇ ଦେଇଛନ୍ତି—"ଗଣତନ୍ତ୍ରକୁ ସୁରକ୍ଷିତ କରି ରଖିବା ଲାଗି ବିଦ୍ୟାଳୟମାନଙ୍କରେ ରାଜନୈତିକ ମତବାଦର ପ୍ରଚାର ହେବା ଆଦୌ ଆବଶ୍ୟକ ହେବ ନାହିଁ । ଗମ୍ଭୀର ମୋହମୁକ୍ତ ଚିନ୍ତା କରିପାରୁଥିବା ଏବଂ ସାମାଜିକ ଦୃଷ୍ଟି ଅର୍ଜନ

କରିଥିବା ମଣିଷ ତିଆରି କରିପାରିଲେ ପ୍ରତ୍ୟେକ ବିଦ୍ୟାଳୟ ତା'ର ଯଥେଷ୍ଟ କର୍ତ୍ତବ୍ୟ କରୁଛି ବୋଲି ମୁଁ କହିବି ।"

କୌଣସି ଆଦର୍ଶକୁ ନେଇ ଅନ୍ଧ ହେବା ମଣିଷର ଧର୍ମ ନୁହେଁ । କୌଣସି ନିର୍ଦ୍ଦିଷ୍ଟ ଆଦର୍ଶକୁ ଆଣି ବିଦ୍ୟାଳୟର ବାଡ଼ରେ ଜଆଳ କରି ପକାଇବା ସତ୍‌ଶିକ୍ଷାର ଧର୍ମ ନୁହେଁ । ଆମେ ଏହି ଅନ୍ଧ ହେବାରୁ ଆପଣାକୁ ବଞ୍ଚାଇବା । ଆମେ କୌଣସି ଅଳକ୍ଷ୍ୟ ବା ଉପଲକ୍ଷ୍ୟରେ ବାନ୍ଧି ଦେଇ କଦାପି ଅନ୍ଧ ହେବା ନାହିଁ । ଦେଶପାଇଁ ନୁହେଁ, ଜାତିପାଇଁ ନୁହେଁ, ଭଗବାନଙ୍କପାଇଁ ମଧ୍ୟ ନୁହେଁ ସବୁଠାରେ ସମୁଚିତ ବିଗ୍ରହ ଗ୍ରହଣ କରିବାଲାଗି ଆମ ମନର ଦ୍ୱାର ଉନ୍ମୁକ୍ତ ହୋଇ ରହିବ । ସବୁଟିର ବିଗ୍ରହପୂର୍ଣ୍ଣ ମନ୍ଥନ କରିବାଲାଗି ଆମର ବୁଦ୍ଧି ଉନ୍ମୁକ୍ତ ହୋଇ ରହିବ । ସବୁକୁ ଉଚିତ ସମ୍ମାନ ଦେବାଲାଗି ଆମର ହୃଦୟ ମୋହମୁକ୍ତ ହୋଇ ରହିବ । ବିଗ୍ରହ ଦ୍ୱାରା ଆମର ଜୀବନର ରାସ୍ତା କାଟିବାଲାଗି ଆମେ ଆପଣାକୁ ପ୍ରସ୍ତୁତ କରି ରଖିବା ।

୨୦-୮-୪୭

ପାଠ ଆମେ ବାଧ୍ୟ ହୋଇ ପଢ଼ୁଛୁ । ସେଥିଲାଗି ପାଠଟା ଆମକୁ ବୋଝପରି ଲାଗୁଛି । କାମ ଆମେ ବେଠି ଖଟିଲାପରି କରୁଛେ, ତେଣୁ କାମଟା ଆମର ବୋଲି ମନେ ହେଉନାହିଁ । ଜୀବନଟା ସତେ ଅବା ଆମେ ବାଧ୍ୟ ହୋଇ ବଞ୍ଚୁଛେ, ତେଣୁ ଆମର ଜୀବନ ଆମ ଉପରେ ବୋଝ ହୋଇ ରହିଛି । ଭୋଗ ଜୀବନ ନୁହେଁ, ଭୋଗ ଜୀବନର ଉଦ୍ଦେଶ୍ୟ ମଧ୍ୟ ନୁହେଁ । ଜୀବନର ଅଭାବ ଯୋଉଠି ଯେତେ ବେଶୀ, ଭୋଗର ଲାଳସା ସେଠି ମଣିଷକୁ ସେତିକି ଜର୍ଜରିତ କରି ରଖିଛି । ଆନନ୍ଦହିଁ ଜୀବନର ଉଦ୍ଦେଶ୍ୟ, ଆନନ୍ଦହିଁ ଜୀବନର ସୁଆଦ । ବାଧ୍ୟ ହୋଇ କୌଣସି କାମ କଲାବେଳେ ଏହି ଆନନ୍ଦ ମଣିଷ ପାଇପାରେ ନାହିଁ । ତେଣୁ ଯାବତୀୟ ଅର୍ଜନ, ଉଦ୍ୟମ ଓ ସଞ୍ଚୟ ସତ୍ତ୍ୱେ ମଣିଷର ଜୀବନ ବୃଥା ହୋଇଯାଏ । ତା'ର ମାଟିରୁ ଜନ୍ମିଥିବା

ଜୀବନ ମାଟି ହୋଇହିଁ ପଡ଼ିରହେ । ମାଟିରୁ ସାର ନେଇ ଆଲୁଅ ଓ ପବନରେ ଆପଣାକୁ ସଂପ୍ରସାରିତ କରି ସେ ଫୁଟି ଉଠି ପାରେ ନାହିଁ ।

ଭୋଗକୁ ଆମେ ଆମ ନୀରସ ଜୀବନର ସାର ସମ୍ପଦ କରି ରଖିବାକୁ ଖୁବ୍ ଲାଗିପଡ଼ିଛୁ । ଖାଉଛୁ ଆମେ ଏଇ ଭୋଗଲାଗି, ପୋଷାକ ପିନ୍ଧୁଛୁ ଏଇ ଭୋଗଲାଗି, ବିଦ୍ୟାଲାଭ କରିବାର ଆଡ଼ମ୍ବର କରୁଛୁ ହୁଏତ ଏଇ ଭୋଗଲାଗି । ଆଗେ ବିଦ୍ୟାଲାଭକୁ ଜୀବନର ଏକ ମହାର୍ଘ ସାଧନାରୂପେ ସ୍ୱୀକାର କରାଯାଉଥିଲା । ବିଦ୍ୟାର୍ଥୀ ବାଳକ ବା ବାଳିକାକୁ ସେହି ସାଧନାଲାଗି ସବୁ ପ୍ରକାରେ ପ୍ରସ୍ତୁତ ହେବାକୁ ପଡ଼ୁଥିଲା, ତେଣୁ ତା'ର ବିଦ୍ୟାଲାଭରେ ଯଥେଷ୍ଟ ମୂଲ୍ୟ ବା ମହତ୍ତ୍ୱ ଥିଲା । ଆମେ ଯେଉଁମାନେ ବିଦ୍ୟାର୍ଥୀର ମୁଖା ପିନ୍ଧି ଏଠି ପହଞ୍ଚିଛେ, ଆମର ସେ ସାଧନା ଏଠି କାହିଁ ? ଆମର ଜୀବନର ଜଳାଶୟରୁ କେବଳ ଆମେ ଶକ୍ତିର ନିଷ୍କାଶନ କରିହିଁ ଚାଲିଛେ, ସମୟର ନିଷ୍କାଶନହିଁ କରି ଚାଲିଛେ । କିନ୍ତୁ ଯେ କୌଣସି ପ୍ରକାରେ କୌଣସି ଗୋଟାଏ ଉତ୍ତେଜନାର ବଶବର୍ତ୍ତୀ ହୋଇ ଆପଣାର ଶକ୍ତି ବା ସମୟର ନିଷ୍କାଶନ କରିବାକୁ କେହି ସାଧନା ବୋଲି କହିବେ ନାହିଁ । ଆମେ ବି କହିବା ନାହିଁ । ଭୋଗୀର ମନ ନେଇ ଆମେ କୌଣସି ପ୍ରକାରର ବିଦ୍ୟାପୀଠରେ ପ୍ରବେଶହିଁ କରିପାରିବା ନାହିଁ । ଆମକୁ ଅର୍ଜନ କରିବାକୁ ହେବ, ସଂଚୟ କରିବାକୁ ହେବ, ସମୃଦ୍ଧ ଓ ବିକଶିତ ହେବାକୁ ହେବ । ଆତ୍ମବିଶୃଙ୍ଖଳା ଓ ଆତ୍ମନିର୍ମାଣ-ଦ୍ୱାରା ଆମେ ସତତ ଅର୍ଜନ କରିବା । ନାନା ସାଧନା ଭିତରେ ଆପଣାକୁ ସ୍ୱାଭାବିକ ଭାବରେ ଧରି ଦେଇ ଆମେ ସତତ ସଂଚୟ କରିବା,—ଆପଣାର ବାଟ ଆପେ ଖୋଜି ବାହାର କରିବାର ତପସ୍ୟାକୁ ଗ୍ରହଣ କରି ଆମେ ସମୃଦ୍ଧ ଓ ବିକଶିତ ହୋଇ ଉଠିବା । ଯେଉଁଠି ସତତ ଅର୍ଜନ ଓ ସଂଚୟ ଚାଲିଛି, ଯେଉଁଠି ନିତି ନାନା କ୍ଷେତ୍ରରେ ଫୁଟି ଉଠିବାର ପ୍ରଣାଳୀଟିକୁ ସ୍ୱଭାବଗତ କରି ନିଆ ଯାଇପାରିଛି ସେଇଠି ମଣିଷ ଯଥାର୍ଥ ବିଦ୍ୟାଲାଭ କରୁଛି । ଯେଉଁଠି ସବୁ ବିଦ୍ୟାଲାଭର ମୁଖା ତଳେ ଭୋଗୀ ମନ ଅଳସୁଆ ଶରୀରର ପଞ୍ଜୁରୀ ଭିତରେ ଜଡ଼ସଡ଼ ହୋଇ ପଡ଼ିଛି, ସେଠି ସହସ୍ର ଆଡ଼ମ୍ବର ସତ୍ତ୍ୱେ କୌଣସି ବିଦ୍ୟାର୍ଜନ

ହେଉ ନାହିଁ । ଆନନ୍ଦ ଲାଗି ସେଠି ସବୁ ଦୁଆର ବନ୍ଦ ହୋଇ ରହିଛି ; ବୁଦ୍ଧିବୃତ୍ତିର ନାନା ଆଇନ ଦ୍ୱାରା ହୃଦୟର ମୁହଁ କଳା ହୋଇ ପଡ଼ିଛି ।

ଏ ଜଙ୍ଗଲଟାକୁ ବିଦ୍ୟାଳୟ କହିବା ପୂର୍ବରୁ ଆଗ ଆମକୁ ବିଦ୍ୟାର୍ଥୀ ହେବାକୁ ପଡ଼ିବ । ପାଠ ପଢ଼ିବାର ମୁଖା ପିନ୍ଧି ନୁହେଁ, ସାଧନାମୂଳ ଜୀବନ-ବାଟକୁ ଆପଣାର ବାଟ ବୋଲି ବାଛିନେଇ ପାରିଲେ ଆମେ ବିଦ୍ୟାର୍ଥୀ ହେବାର ଯୋଗ୍ୟତା ଅର୍ଜନ କରି ପାରିବା । ଭୋଗ ବା ବାଣିଜ୍ୟକୁ ଛାଡ଼ି ଆନନ୍ଦକୁ ଆମର ଧ୍ୟେୟ ବୋଲି ଗ୍ରହଣ କରି ପାରିଲେ ଆମେ ଯଥାର୍ଥ ବିଦ୍ୟାର୍ଥୀ ବୋଲାଇ ପାରିବା । ମୂଲିଆ ଏ ଦେଶରେ ନିତି କାମ କରୁଛନ୍ତି; କିନ୍ତୁ ସେ କାମରେ ଆନନ୍ଦ ନାହିଁ । କାରଣ ସେମାନେ ବାଧ୍ୟ ହୋଇ କାମ କରୁଛନ୍ତି । କାମ ନ କଲେ ଉପାସ ରହିବାକୁ ପଡ଼ିବ ବୋଲି ସେମାନେ ମୂଲ ଲାଗୁଛନ୍ତି ମାତ୍ର । ଆମର କାମକୁ ମୂଲିଆର ମୂଲ ଲାଗିବା ସହିତ ତୁଳନା କଲେ ଆମେ ଘୋର ଭୁଲ କରିବା । କାମ ନ କଲେ ଉପାସରେ ରହିବାର ଭୟ ଆମର ନାହିଁ । ଆମ କାମ ଆମ ଶିକ୍ଷାର ଗୋଟିଏ ଅଙ୍ଗ । ଏହି କାମ ଜରିଆରେ ଆମେ ଜୀବନର ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା । ଆପଣା ହାତରେ ଆମ ସାଧନାର କିଛି ସୃଷ୍ଟି କରିବାର ନିର୍ମଳ ଅନୁଭୂତି ଆମର ହୋଇ ପାରିବ । ଆମ ଶରୀରକୁ ଆମେ ମନର ଅଧୀନ କରି ରଖିବା । ଶରୀରର ଅଳସୁଆମୀ ଆମର ମନ ଉପରେ କୌଣସି ପ୍ରକାର ଅଶୋଭନୀୟ ପ୍ରଭୁତ୍ୱ ଦେଖାଇ ପାରିବ ନାହିଁ; ଏଇଥିଲାଗି ଆମେ ଏଠି କାମ କରୁଛୁ । ଏଇଥିଲାଗି କାମ ଆମ ଶିକ୍ଷାକ୍ରମର ଅନ୍ତର୍ଗତ ହୋଇ ରହିଛି । ଏହି କାମ ଜରିଆରେ ବିଦ୍ୟାଳୟର ନିକଟତର ସମ୍ପର୍କକୁ ଆସି ବିଦ୍ୟାଳୟକୁ ନିଜର ବୋଲି ମନେ କରୁଛୁ । ତେଣୁ ଏଠି ସବୁ ମଣିଷ ମଧ୍ୟ ଆପଣାର ପରି ଲାଗୁଛନ୍ତି । ଏ ନିର୍ମଳ ଆକାଶ ଆଉ ପବନ ଭିତରେ ବଢ଼ି ଆମେ ମଣିଷକୁ ଆପଣାର ଶତ୍ରୁ ପରି ନୁହେଁ, ବନ୍ଧୁପରି ଦେଖି ଶିଖୁଛେ । ଏ ଛୋଟିଆ ସମାଜରେ ନାନା ଦାୟିତ୍ୱ ତୁଲାଇ ଆମେ ପରସ୍ପରର ଅତି ଆପଣାର ହୋଇ ଯାଉଛୁ । ସାରା ସଂସାର ଲାଗି ଆପଣା ଜୀବନକୁ ପ୍ରଶସ୍ତ କରି ରଖି ପାରିବାର ସାହସ ଓ ଶ୍ରଦ୍ଧା ଆମେ ଏହାରି ଦ୍ୱାରାହିଁ ଅର୍ଜନ କରୁଛେ । ଆମ ଦେଶରେ କାମକୁ ଘୃଣା କରି ମଣିଷ

ମଣିଷକୁ ଘୃଣା କରୁଛ । ଧନୀ ମଣିଷ ଦରିଦ୍ରଠାରୁ ଦୂରରେ ରହୁଛ । ପାଠୁଆ ଅପାଠୁଆକୁ ଅନାଦର କରୁଛ । ଆମେ କାମକୁ ଭଲପାଇ ମଣିଷକୁ ଭଲ ପାଇ ଶିଖିବା । ଆମ ଶିକ୍ଷାର ଗୌରବକୁ ସମାଜର ସବୁରି ସମ୍ପଦରେ ପରିଣତ କରି ଶିଖିବା । ମଣିଷ ସହିତ ନିଜକୁ ନାନା ଡୋରରେ ବାନ୍ଧି ଜୀବନକୁ ସରସ କରି ଶିଖିବା; କିନ୍ତୁ କାମକୁ ଯେତେଦିନଯାଏ ଆମେ ବେଠିପରି ମନେ କରୁଥିବା, ସେତେ ଦିନଯାଏ କାମରୁ ଆମେ କୌଣସି ରସ ପାଇ ପାରିବା ନାହିଁ; ଆମର ନିକୃଷ୍ଟ ଜୀବନ-ସ୍ତରକୁ ଆମେ କଦାପି ଉପରକୁ ଉଠାଇ ପାରିବା ନାହିଁ ।

କାମରେ ଯେମିତି, ପାଠରେ ମଧ୍ୟ ସେମିତି । ଆମ ପାଠ ଆମକୁ ଅଧିକରୁ ଅଧିକ ଆନନ୍ଦ ଦେଇଯାଉ । ଖୁସୀ ହୋଇ ଆମେ ପାଠ ପଢ଼ି ଶିଖେଁ । ପାଠ ପଢ଼ିବାର ପଛରେ ଆଉ କୌଣସି ପ୍ରୟୋଜନ ରହିବା ଉଚିତ ନୁହେଁ । ଆନନ୍ଦହିଁ ଏହାର ସର୍ବପ୍ରଧାନ ପ୍ରୟୋଜନ ହୋଇ ରହୁ । ଭୋଗ ବା ଅନ୍ୟ କୌଣସି ମନ୍ଦଲାଳସା ଆମ ପାଠ ପଢ଼ିବାର ପ୍ରବୃତ୍ତିକୁ ମାରି ନ ଦେଉ । କୌଣସି ପ୍ରକାର ମୁଖାର ଆଶ୍ରୟ ନେଇ ଆମେ ଯେପରି ବିଦ୍ୟାର୍ଜନର ଆନନ୍ଦରୁ ବଞ୍ଚିତ ନ ହେଉ । ଯୋଉଦିନ ଆନନ୍ଦକୁ ଆମେ ଆମ ବିଦ୍ୟାଳୟର ସରଣୀ ବୋଲି ମାନିନେବା, ସେହିଦିନ ଆମର ଜୀବନର ସକଳ ଦୃଷ୍ଟି ବଦଳିଯାଇ ପାରିବ । ସେଦିନ ଜୀବନର ଶତଦ୍ୱାର ଖୋଲିଯିବ । ସବୁ ଗଣ୍ଠି ସେଦିନ ଫିଟିଯିବ । ଏ ଗଛ, ପତ୍ର, ଆଲୁଅ ଆଉ ଆକାଶ ସେ ଦିନ ଅନ୍ୟ ପ୍ରକାର ଦେଖାଯିବ । ଏ ପବନର ପରଶ ସେଦିନ କେଉଁ ଅଦୃଶ୍ୟ ଶକ୍ତିର ଆଶ୍ୱାସନା ପରି ବୋଧ ହେବ । ଏ ସଂସାର ସେ ଦିନ ବିଧାତାର ଆଶୀର୍ବାଦ ପରି ମନେହେବ । ସେ ଦିନ ସବୁ ମଣିଷ ଆମକୁ ଭଲ ଲାଗିବେ । ସବୁ ମଣିଷ ଭିତରକୁ ସେଦିନ ଆମେ ସଂପ୍ରସାରିତ ହୋଇଯାଇ ପାରିବା । କାହାରିଠାରୁ ଡରି, ସଂକୋଚ କରି, ପଳାଇବାଲାଗି ଆଉ ଆମେ କୌଣସି ଅବକାଶ ପାଇବା ନାହିଁ । ସେହି ଦିନହିଁ ଆମର ବିଦ୍ୟାଳୟ ସାର୍ଥକ ହେବ । ଆମର ବିଦ୍ୟାର୍ଥୀ ମନକୁ ସମ୍ମାନ ରଖି ସେଦିନ ଏ ବିଦ୍ୟାଳୟ ଧନ୍ୟ ହେବ । ଆମେ ସମସ୍ତେ ଏହି ଆନନ୍ଦର ସାଧନାକୁ ଜୀବନର ସାଧନା ବୋଲି ଗ୍ରହଣ କରିନେବା । ତା'ହେଲେ ଏ ଜୀବନଟା ଆଉ ବୋଝପରି ଲାଗିବ ନାହିଁ । ଏ ପାଠ ଆଉ ବୋଝପରି ଲାଗିବ

ନାହିଁ, କି ଏ କାମ ଆଉ ବୋଝପରି ଲାଗିବ ନାହିଁ । ଆମର ନବଜନ୍ମର ଅନୁପ୍ରେରଣାରେ ଏ ବିଦ୍ୟାଳୟର ବି ନୂଆ କଳେବର ହୋଇଯିବ ।

୨୧ । ୮ । ୫୭

ତାନ୍ତ୍ରିକ ଯୋଗୀମାନଙ୍କର ସାଧନାରେ ଶବ-ସାଧନାକୁ ଗୋଟିଏ ମାର୍ଗ ବୋଲି ଧରାଯାଇଛି । ବର୍ତ୍ତମାନ ଅବଶ୍ୟ ଏଇ ଶବ-ସାଧନାକୁ ନେଇ ଅନେକେ ଅନେକ ପ୍ରକାରର କ୍ଲିଷ୍ଟ ଅର୍ଥ କରନ୍ତି । ଅନେକ ତଥାକଥିତ ସାଧକ ଏହାକୁ ଆକ୍ଷରିକ ଅର୍ଥରେ ଗ୍ରହଣ କରି ଧର୍ମ-ମାର୍ଗରେ ଅନେକ ଭ୍ରଷ୍ଟତା ପୂରାଇ ଦେଇଛନ୍ତି । ଶବ ଅର୍ଥାତ୍ ମଲାଦେହ ଉପରେ ବସି ସାଧନା ନ କଲେ ଶକ୍ତି ପ୍ରସନ୍ନ ହେବେ ନାହିଁ; ତେଣୁ ଆମ ଦେଶରେ ଅନେକ ସାଧକ ଶବ ଖୋଜିବାକୁ ମଶାଣିକୁ ଯାଆନ୍ତି । ଧର୍ମକୁ ଆକ୍ଷରିକ ଅର୍ଥରେ ଗ୍ରହଣ କରି ଯୁଗେ ଯୁଗେ ଯେଉଁ ବ୍ୟଭିଚାର ଓ ଶକ୍ତିର-ଅପଚୟ ଘଟିଛି, ଏ କ୍ଷେତ୍ରରେ ମଧ୍ୟ ତାହାହିଁ ହୋଇଛି । ବାଚ୍ୟାର୍ଥ ପଛରେ ଲୁଚି ରହିଥିବା ବ୍ୟଞ୍ଜନାର୍ଥ ଖୋଜିବାର ସଦ୍‌ବୃତ୍ତି ଆମର ଥିଲେ ଧର୍ମ ହରାଇବାର ହରବରରେ ଆମେ ଆଦୌ ପଡ଼ୁ ନ ଥାନ୍ତେ ।

ଶବର ସାଧନା ଅର୍ଥାତ୍ ପୁରାତନର ସାଧନା; ପୁରୁଣାର ସମର୍ପଣ-ବେଦୀ ଉପରେ ନୂଆକୁ ଅର୍ଜନ କରିବାର ସାଧନା । ଆମର ସଂସ୍କାର, ଆମର ଇତିହାସ, ଆମର ବଳିବଣ୍ଟର—ଏସବୁ ହେଉଛି ଆମର ପୁରାତନ । ଏହି ପୁରାତନକୁ ଯିଏ ଗଣ୍ଠି କରି ରଖିବ, ପୁରାତନର ଅର୍ଜନକୁ ଲୋଭରେ ଯିଏ କାନିରେ ବାନ୍ଧି ରଖିବ, ତା'ର ବିକାଶ ସେଇଠି ବନ୍ଦ ହୋଇଯିବ, ସେଇଠି ସିଏ ଅଟକିଯିବ । ଖାଲି ପୁରାତନକୁ ଅବୋରି ଧରି କେହି ଶକ୍ତିମାନ୍ ହୋଇ ପାରିବ ନାହିଁ । ଆପଣାର ଅର୍ଜନକୁ ଅଧିକ ଉଚ୍ଚତର ଅର୍ଜନ ଲାଭ କରିବାର ସାଧନାରେ ଲଗାଇବାକୁ ହେବ । ଆପଣାର ସଂସ୍କାରକୁ ସଂସ୍କାରମୁକ୍ତ ହେବାର ସାଧନାରେ ଲଗାଇବାକୁ ହେବ । ଆପଣାର ବିଦ୍ୟାକୁ ଉଚ୍ଚତର ବିଦ୍ୟାର ସାଧନାରେ

ଲଗାଇବାକୁ ହେବ । ପୁରାତନକୁ ଯିଏ ବର୍ତ୍ତମାନର ଜୀବନ-ସାଧନାରେ ପରିପୂର୍ଣ୍ଣ କରି ଲଗାଇ ପାରିବ, ତାହାରି ହିଁ ଉତ୍ତରୋତ୍ତର ବଢ଼ି ଚାଲିବ । ନିତି ସେ ନୂତନ ଓ ନିର୍ମଳ ହୋଇ ଚାଲିଥିବ । ତାହାର ଜୀବନହିଁ ଉଜ୍ଜ୍ୱଳ ହେବ । କାଲିର ସଞ୍ଚୟକୁ ମୁଁ ଆଜିର ଅର୍ଜନ ଲାଗି ଲଗାଇ ଶିଖିବି, ଆଜିର ଅର୍ଜନ ପୁଣି କାଲିର ସଞ୍ଚୟ ହୋଇ ମୋତେ ନୂତନ ଅର୍ଜନ ଲାଗି ପ୍ରେରିତ କରିବ । ମୋର ଜ୍ଞାନକୁ ମୁଁ ସିନ୍ଦୁକରେ ବନ୍ଦ କରି ରଖିବି ନାହିଁ । ସବୁ କ୍ଷେତ୍ରରେ ତାକୁ ମୁଁ ଅଧିକ ଜ୍ଞାନ ହାସଲ କରିବାରେ ଯେପରି ଲଗାଇପାରେ, ସେଥିଲାଗି ତତ୍ପର ରହିବି । ମୋର ବିଦ୍ୟା ବା ବିତ୍ତର ଚାରିପାଖରେ ବନ୍ଧ ଦେଇ ମୁଁ ଆପଣାକୁ ଜଳାଶୟ କରି ପକାଇବି ନାହିଁ । ମୋର ବିଦ୍ୟା ଓ ବିତ୍ତ ମୋତେ ଅଧିକତର ବିଦ୍ୟା ଓ ବିତ୍ତରମୟ ଜୀବନରେ ପ୍ରବୃତ୍ତ କରାଇ ପାରିବ । ଏହିପରି ଦେଖିଲେ ସାଧନାକୁ କେବଳ ଅନନ୍ତ ବୋଲି କୁହାଯାଇ ପାରିବ । ଏହାର ଶେଷ ନାହିଁ । ଆଜିର ସାଧନା ଯାହା ମତେ ଆଣିଦେଲା, ତାକୁ ମୁଁ ପାଥେୟ କରି କାଲିର ସାଧନାରେ ବାହାରିବି । ତେବେ ଯାଇ ମୋର ସାଧନା ମୋତେ ଶକ୍ତିମାନ୍ କରିପାରିବ । ତା'ହେଲେ ମୋର ବିତ୍ତର ଏକ କୁତ୍ସିତ ପଞ୍ଜାର ହୋଇ ମୋତେ ବାନ୍ଧି ରଖିପାରିବ ନାହିଁ । ଯୋଉ ସାଧନା ମଣିଷକୁ ନିତି ସମୃଦ୍ଧ କରାଏ, ନିତି ତାକୁ ନବ ନବ ପଥରେ ଯିବାର ଅଦମ୍ୟ ଉତ୍ସାହ ଦେଇଯାଏ, ସେହି ହେଉଛି ଯଥାର୍ଥ ସାଧନା । ଆପଣାକୁ, ଅର୍ଥାତ୍ ଆପଣାର ସମସ୍ତ ସଂଗ୍ରହ ଓ ଅର୍ଜନକୁ ଶବରୂପେ ସଜାଇ ଦେଇପାରିଲେ ଯାଇ ମଣିଷ ସତତ ଆଗେଇ ଯାଇପାରିବ । ଶବ-ସାଧନାର ଏହି ତାତ୍ପର୍ଯ୍ୟଟି ଆମେ କଦାପି ଭୁଲିଯିବା ନାହିଁ ।'

ଏଠିକାର ବିଦ୍ୟାର୍ଥୀ ଏହି ଶବ-ସାଧନାକୁ ଆପଣା ସାଧନାର ଅଙ୍ଗରୂପେ ଗ୍ରହଣ କରୁ । ଆମ ବିଦ୍ୟାଳୟର ଦ୍ୱିତୀୟ ଜନ୍ମଦିନ ଅବସରରେ ଖରୁ ଖରୁ କାଲି ହଠାତ୍ ମୋ' ମନରେ ଏହି କଥା ଉଠିଲା । ଶବ-ସାଧନା ଅଦୌ ସହଜ ସାଧନା ନୁହେଁ । ଏଥିଲାଗି ପ୍ରସ୍ତୁତ ହେବାକୁ ହେଲେ ଆମକୁ କେତେକ ଶୃଙ୍ଖଳାକୁ ସ୍ୱୀକାର କରିବାକୁହିଁ ପଡ଼ିବ । ମୁଁ କାଲି ଯାହା ଥିଲି, ଆଜି ସେପରି ରହିବି ନାହିଁ; ବିକାଶର ବହୁମୁଖୀ ପଥରେ ମୁଁ ଅବଶ୍ୟ ଆଗକୁ ଯିବି—ଏହିପରି

ଏକ ମନ୍ତ୍ରର ମନନ ଆମକୁ କରିବାକୁ ପଡ଼ିବ । ନିଜକୁ ସାଧାରଣଙ୍କ ଭିତରେ ଜଣେ ବୋଲି ଧରିନେଇ ଆମେ ଗୋଟାଏ ପ୍ରକାର ସାନ୍ତ୍ୱନା ପାଉ, ଆପଣାର ଦୁର୍ବଳତାକୁ ଘୋଡ଼ାଇ ରଖୁ । ଏକାଦିନକେ କଣ ମୁଁ ବଦଳି ପାରିବି, ମୁଁ କଣ ସଂସାରରୁ ବାହାରି; ଏହିପରି ନାନା କଥା ଆମ ପାଟିରୁ ବାହାରି ଉଠେ । ପରିବର୍ତ୍ତନ ଲାଗି ଯେତେବେଳେ ଆମର ସ୍ପୃହା କମିଯାଏ, ଯେତେବେଳେ ପରିଚିତର ଆଶ୍ରୟ ଛାଡ଼ିଯିବାକୁ ଆମକୁ ଭୟ ଲାଗେ, ସେତିକିବେଳେ ଆମେ ଏ କଥା କହୁ, ସଂସାରରେ ଗତଶ୍ରାନ୍ତ ହୋଇ ପଡ଼ିରହିଥିବା ଆଉ ହଜାରଙ୍କର ମେଳରେ ଆପଣାକୁ ନେଇ ମିଶାଇ ଦେଉ । ତାହାର ଫଳରେ ଆମେ ଆମର ଦୁଆର ନିଜେ ବନ୍ଦ କରିଦେଉ, ଆପଣା ବାଟ ମୁହଁରେ ଆମେ ନିଜେ ପଥର ପକାଇ ଦେଉ ।

କେବଳ ସବଳ ହୋଇ ପାରିଲେହିଁ ଆମେ ଶବ-ସାଧନାର ଯୋଗ୍ୟ ହୋଇ ପାରିବା । 'ନାୟମାତ୍ମା ବଳହୀନେନ ଲଭ୍ୟଃ'—ଦୁର୍ବଳ ଭାଗ୍ୟରେ କେବଳ ଆପଣାକୁ ହରାଇ ବସିବାର ଦୁର୍ଭାଗ୍ୟ ! ବିବାଦ ହୋଇ ରହିଛି । ଏ ବିଦ୍ୟାଳୟର ବିଦ୍ୟାଲାଭ ଆମର ଦୁର୍ବଳତା ହରଣ କରିନେଉ, ଆମକୁ ପ୍ରତ୍ୟେକ ଦିନ ଓ ପ୍ରତ୍ୟେକ କ୍ଷେତ୍ରର ସାଧନାଲାଗି ଶକ୍ତିଶାଳୀ କରି ସଜାଇ ଦେଉ । ମୋର ପୁରୁଣା ବସ୍ତ୍ର, ପୁରୁଣା ମନ ଓ ପୁରୁଣା ସଂସ୍କାରକୁ ମୁଁ ନୂଆକୁ ପାଇବାର ସାଧନା ର ଶବ କରି ସଜାଇଦିଏ, ପୁରୁଣାକୁ ଆବୋରି ଧରିବାର ଜଳାଶୟକୁ ଜଳସ୍ରୋତ ବୋଲି ଭ୍ରମ କରିବାର ଦୁର୍ବୁଦ୍ଧି ଯେପରି ମୋର କୌଣସି ଦିନ ନ ହୁଏ—ଏହିପରି ବିଶ୍ୱାସ ଯିଏ ରଖିପାରିବ, ଏହିପରି ସଂକଳ୍ପ ଯିଏ କରିପାରିବ, ସାଧାରଣ ମଣିଷଙ୍କପରି ଏକା ରକ୍ତମାଂସ ହାଡ଼ରେ ଗଢ଼ାହେଲେ ମଧ୍ୟ ସେ ତାର ଆପଣା ଜୀବନର ସାଧନାକୁ ଅସାଧାରଣ କରିପାରିବ; ତା'ର ଆପଣା ଜୀବନର ପରିପୂର୍ଣ୍ଣତାର ପରିଚୟ ସେ ପାଇ-ଯାଇବ ।

ଯିଏ ପୁରୁଣାକୁ ଜାବୁଡ଼ିଧରି ପଡ଼ିଥାଏ, ପୁରୁଣା ଆଳସ୍ୟ ଓ ପୁରୁଣା ଭ୍ରମକୁ ଯିଏ ଯୁକ୍ତି ଦେଇ ପୁଷ୍ଟ କରିବାର ଫନ୍ଦି ପାଞ୍ଚେ, ତା'ର ବୁଦ୍ଧିକୁ ସେ

ଏକ ଅସ୍ୱାଭାବିକ ଫାନ୍ଦରେ ପକାଇ ଦିଏ; ଅନେକ ଜଟିଳତାରେ ସେ ଆପଣାର ସ୍ପଷ୍ଟ ପଥକୁ ଆକୀର୍ଣ୍ଣ କରିଦିଏ । ଅମେ ଏ ବାଟରେ ଯିବା ନାହିଁ । ସଂସାରରେ ଅନେକ ଯାଗାରେ ଅନେକଙ୍କୁ ଏହି ପୁରୁଣା ସଂସାରକୁ ଧରି ପଡ଼ି ରହିବାର ମୋହ ଘାରି ରଖିଛି । ପୁରୁଣା ସଂସ୍କାରରେ ମଣିଷକୁ ମରି କରାଇବାକୁ ଅନେକ ପୁରାତନବାଦୀ ପଣ୍ଡିତ ଉଚିତ ଶିକ୍ଷା ବୋଲି କହୁଚନ୍ତି । ବିକଶିତ ହେବାର କୁହୁକ ସ୍ପର୍ଶ ସେମାନେ ପାଇନାହାନ୍ତି । ସେଥିଲାଗି ଆପଣାର ସବୁ ସଂସ୍କାରକୁ ଶବରୂପେ ସଜାଇ ଦେଇ ନୂଆ ହେବାର ସାଧନା କରିବାକୁ ସେମାନଙ୍କୁ ଏତେ ଭୟ ଲାଗୁଚି । ଆମେ ଭୟ କରିବା ନାହିଁ, ଆମର ସଂସ୍କାରକୁ ଆମେ ଆମକୁ ଛନ୍ଦି ରଖିବାକୁ ଦେବା ନାହିଁ । ଏ ଜୀବନର ଅନ୍ତ ନାହିଁ । ଏ ସାଧନାର ଅନ୍ତ ନାହିଁ, ତେଣୁ ଏ ବିଦ୍ୟାର ଅନ୍ତ ନାହିଁ । ଏଠି ଆମେ ଚୁରିବରିଷ ରହିବା; କିନ୍ତୁ ଏଠିକାର ସାଧନା ଯେପରି ଚୁରି ବରଷରେ ଖତମ ହୋଇ ନ ଯାଏ । ନୂଆ ଗଛ ବଢ଼ି ପୁରୁଣା ହୁଏ । ପୁଣି ସେ ବୀଜ ହୋଇ ନୂଆ ଅନେକ ଗଛର ସୃଷ୍ଟି କରେ । ଆମର ବିଦ୍ୟା ସେହିପରି ଆମ ଜୀବନର ନାନା କ୍ଷେତ୍ରରେ ବୀଜବପନ କରି ଚାଲିଥାଉ । ଆମର ଅର୍ଜନ ଶବ ହୋଇ କାଲିର ସୃଷ୍ଟି ଲାଗି ପ୍ରାର୍ଥନା କରୁ । ଆମର ମଙ୍ଗଳ ହେଉ ।

୨୨।୮।୫୭

କାଲି ଶବ ହେବାର ସାଧନା କରିବା ବିଷୟରେ ଲେଖିଥିଲି । ଆଜି ଶିବ ହେବାର ସାଧନା କଥା ମନେ ପଡ଼ୁଚି । ଶବ ଉପରେ ଶକ୍ତିର ସଞ୍ଚାର ହେଲେ ତାହା ଶିବରେ ପରିଣତ ହୁଏ—ଶଙ୍କରାଚାର୍ଯ୍ୟ ଏହି କଥା କହିଚନ୍ତି । ଶିବ କହିଲେ ସାଧାରଣତଃ ଅମେ ମହାଦେବଙ୍କୁ ବୁଝୁ । ସାହିତ୍ୟର ଭାଷାରେ ମଙ୍ଗଳକୁ ଶିବ କୁହାଯାଏ । ଶିବଙ୍କର ସାଧନା କହିଲେ ହୁଏତ ମହାଦେବଙ୍କର ବିଭୂତି-ଭୂଷଣ ରୂପ ଆମର ମନେ ପଡ଼ିଯାଏ । ଦେହସାରା ବିଭୂତି ବୋଳା ହୋଇଚି । ପରିଧାନ ବୋଲି କେଣ୍ଟେ ମାତ୍ର ବାଘଚମ, ମୁଣ୍ଡ ଉପରେ ଅସଂବୃତ ଜଟାଜୁଟ ଦୁଲୁଚ୍ଚର ତରଙ୍ଗପରି ଉଡ଼ୁଚି । ବିଦ୍ୟାର୍ଥୀ ପୁଣି ଶିବ-ସାଧନା କଣ କରିବ ?

ଶିବ-ସାଧନା ଶବ-ସାଧନାର ପରିପୂରକ ସାଧନା । ଶିବ-ସାଧନା ସବୁ ବାଧା ଭାଙ୍ଗି ଜୀବନ-ବାଟର ନିର୍ଦ୍ଦେଶ ଦିଏ । ଶିବ-ସାଧନା ଏହି ଜୀବନର ବାଟ ଚାଲିବାକୁ ଗୋଟାଏ ସାର୍ଥକ ଓ **Positive** ରୂପ ଦେଇଯାଏ । ଏ ଜୀବନରେ ଯାହା କିଛି ପୁରୁଣା ହୋଇଛି, ଯାହା କିଛି ସଂସ୍କାର ଆମେ ସାଇତି ରଖିଛୁ, ସେଗୁଡ଼ିକୁ ଅର୍ଘ୍ୟ ଓ ନୈବେଦ୍ୟ କରି ସଜାଡ଼ି ଦେବାକୁ ପଡ଼ିବ । ସବୁ ଅହଙ୍କାର ଓ ଅଭିମାନ ସେଇ ନୈବେଦ୍ୟରେ ଧୂପ ହେବ । ଆପଣାକୁ ବଡ଼ କରିବାର ସବୁ ଲାଳସା ସେଠି ଦୀପଶିଖା ହୋଇ ଜଳି ଉଠିବ । ତେବେ ଯାଇ ଜୀବନର ଅଭ୍ୟୁଦୟ ହେବ । ନୂତନ ଜୀବନର ପତ୍ତନ ପଡ଼ିବ । ଆପଣା ଜୀବନଲାଗି ନିଜସ୍ୱ ବାଟର ସନ୍ଧାନ ମିଳିବ । ସେଇଠି ଶିବ-ସାଧନାର ଆରମ୍ଭ ହେବ । ଏ ଜୀବନରେ ଅର୍ଜନ କରି ରଖିଥିବା ଏତେ ଶକ୍ତି ଆମେ କାହାକୁ ଦେବା ? ଆମର ଶରୀରଶକ୍ତି, ମନଃଶକ୍ତି ଓ ଜ୍ଞାନଶକ୍ତି ଆମେ କାହା ଉଦ୍ଦେଶ୍ୟରେ ଅର୍ପଣ କରିଦେବା ? ପୁରାକାଳର ଋଷିମାନେ ଉପନିଷଦରେ ଆପଣାକୁ ଠିକ୍ ଏଇ ପ୍ରଶ୍ନ ପଚାରିଥିଲେ—'କସ୍ମୈ ଦେବାୟ ହବିଷା ବିଧେମ' —କେଉଁ ଦେବତାର ଉଦ୍ଦେଶ୍ୟରେ ଆମର ହବି ଓ ଅର୍ଘ୍ୟ ଉତ୍ସୃଷ୍ଟ ହେବ ।

ଜୀବନର ଯଜ୍ଞରେ ଆମର ଅର୍ଜିତ ଶକ୍ତି ହେଉଛି ଆମର ହବି । ଏହି ଶକ୍ତିକୁହିଁ ଅର୍ଘ୍ୟରେ ପରିଣତ କରି ଆମର ଈପ୍ସିତ ଦେବତାକୁ ଆମକୁ ଟେକି ଦେବାକୁ ହେବ । ଆମ ଶରୀରରେ ବଳ ରହିଛି, ସ୍ୱାସ୍ଥ୍ୟ ରହିଛି, ଆମର ହୃଦୟ ଭିତରେ ଅନୁଭବ କରିବାର ଏକ ଅପୂର୍ବ ପରାକ୍ରମ ରହିଛି, ନାନାଦି ଶାସ୍ତ୍ରଜ୍ଞାନ ଓ ବୁଦ୍ଧିସମ୍ପଦରେ ଆମର ମନ ପରିପକ୍ୱ ହୋଇ ଚାଲିଛି; ଆମେ ଏ ଶରୀର, ଏ ହୃଦୟ ଓ ଏ ମନକୁ କାହାକୁ ଦେବା ? ନିତି ଖାଦ୍ୟ ଖାଇ ଆମେ ଶରୀରକୁ ପୁଷ୍ଟ କରୁଛୁ । ବିଦ୍ୟା ଲାଭ କରି ନିତି ଆମେ ଆମର ମନକୁ ପୁଷ୍ଟ କରୁଛୁ, ସ୍ନେହ ପାଇ ଓ ସ୍ନେହ ଦେଇ ଆମ ହୃଦୟକୁ ପୁଷ୍ଟ କରୁଛୁ । ଏସବୁ କାହାକୁ ଦେବାଲାଗି ଆମେ କରୁଛୁ ? ଏ ଶରୀର, ଏ ମନ, ଏ ହୃଦୟ, ଏ ସବୁକୁ କେନ୍ଦ୍ରକରି ଆମର ଜୀବନଯାତ୍ରା ଚାଲିଛି । ତଥାପି ଏ ସବୁ ଆମର ନୁହେଁ । ଏ ସବୁକୁ ପୁଷ୍ଟ କରିବା ଓ ବିକଶିତ କରିବାର ଦାୟିତ୍ୱ ଆମର— ଆମେ ଆମର ସାଧନାଦ୍ୱାରା ଏ ସବୁର ଯଥାର୍ଥ ବିକାଶ କରାଇବୁ । କିନ୍ତୁ

ତା’ପରେ ଏ ସବୁକୁ ସମର୍ପଣ କରି ଦେବାରେ ହିଁ ଏ ସବୁର ସାର୍ଥକତା । ମାଳୀ ଏତେ ଯତ୍ନକରି ଗଛଟିରେ ଫୁଲ ଫୁଟାଉଛି; କିନ୍ତୁ ଫୁଲ ଫୁଟାଇ ସାରିବା ପରେ ଫୁଲ ଆଉ ତା’ର ହୋଇ ରହୁନାହିଁ—ଦେବତାର ଚରଣରେ ଅର୍ଘ୍ୟ ହୋଇ ଫୁଲ ଧନ୍ୟ ହେଉଛି । ଏହି ସମର୍ପଣରେହିଁ ମାଳୀର ସାଧନା ସାର୍ଥକ ହେଉଛି । ଆମ ଜୀବନ-ଉଦ୍ୟାନର ମାଳୀ ଆମେ ପ୍ରତ୍ୟେକେ; କିନ୍ତୁ ଆମ ଜୀବନ-ଫୁଲର ମାଲିକ ଆମେ ନୋହୁ । ଆମ ସାଧନାର ଫୁଲଟି ଆମର ନୁହେଁ, ଏହା ଦେବତାର । କେଉଁ ଦେବତାର ଚରଣ ତଳେ ଆମେ ଆମ ଫୁଲଟିକୁ ସମର୍ପି ଦେବାକୁ ବାହାରିଛୁ ? ଆମର ବିଦ୍ୟା, ଆମର ଜ୍ଞାନକୁ କାହାକୁ ସମର୍ପି ଦେଇ ପରିପୂର୍ଣ୍ଣ ହେବୁ ବୋଲି ଆମେ ବିଚାର କରିଛୁ ?

ଏ ଯୁଗରେ ମଣିଷର ଜୀବନ ବଡ଼ ଶସ୍ତା ହୋଇଗଲାଣି । ନାନାପ୍ରକାର ଉତ୍ତେଜକ ମତବାଦ, ଜାତି ଓ ଦେଶର ଦୁହାଇ ଦେଇ ଆଜି ମଣିଷଜୀବନକୁ ସମର୍ପି ଦିଆଯାଉଛି । ନାନା ଖଣ୍ଡ ଆଦର୍ଶର ବଳି ବେଦୀ ଉପରେ ଅନ୍ଧ ମୁଗ୍ଧ ମଣିଷ-ଜୀବନର ଅଜସ୍ର ବଳି ପଡ଼ୁଛି । ଗୋଟାଏ ଗୋଟାଏ ଯୁଦ୍ଧରେ ଶହ ଶହ ମଣିଷଙ୍କୁ ସ୍ୱାହା କରି ଦିଆଯାଉଛି । ଆମ ଦେଶରେ ଚାକିରି ଓ ଟଙ୍କା କମେଇବାର ଅପଦେବତା ଆଗରେ ବିଦ୍ୟାର ବଳି ପଡ଼ୁଛି । ଚାଉଳ ମୁଠାଏ ଓ କନା ଖଣ୍ଡେ ସଂଗ୍ରହ କରି ପାରିବାର ସନ୍ତାପିତ ଚେଷ୍ଟାରେ ଏ ଦେଶର ସହସ୍ର ସହସ୍ର ପାଠୁଆ ଆପଣା ପାଠକୁ ସମର୍ପି ଦେଉଛନ୍ତି । ଏ ଶସ୍ତା ସମର୍ପଣର ହାଟରେ ଆମ ବିଦ୍ୟାକୁ ଆମେ କାହା ଉଦ୍ଦେଶ୍ୟରେ ସମର୍ପଣ କରିବା ? ଆମର ବିଦ୍ୟା ଶିବ ଲାଗି ସମର୍ପିତ ହେଉ, ଆମର ଫୁଲଟି ଶିବ ଲାଗି ଉଦ୍ଦିଷ୍ଟ ହୋଇ ରହୁ । ଏହାକୁହିଁ ମୁଁ ଶିବ-ସାଧନା ବୋଲି କହୁଛି । ସଂସାରରେ ଯାହାହିଁ ଶିବ, ଯାହାହିଁ କଲ୍ୟାଣକର, ତାହାରି ଉଦ୍ଦେଶ୍ୟରେ ଆମେ ଜୀବନଯଜ୍ଞରେ ହବି ଉତ୍ସର୍ଗ କରିଦେବା ।

ଆମର ବିଦ୍ୟାଲାଭ ଦ୍ୱାରା ଯଦି ଜଗତର କଲ୍ୟାଣ ନ ହେଲା, ତେବେ ଆମର ବିଦ୍ୟାକୁ ବିଦ୍ୟା ବୋଲି କୁହାଯାଇ ପାରିବ ନାହିଁ । ଶରୀରକୁ ବଞ୍ଚାଇ ରଖିବାର କୌଶଳଟାଏ ଶିଖିବାକୁ ଆମେ ବିଦ୍ୟା କହିପାରିବା ନାହିଁ ।

ପଶୁ ବି ଶରୀରକୁ ବଞ୍ଚାଇ ରଖିବାକୁ ନାନା ପ୍ରକାର କୌଶଳ ଆୟତ୍ତ କରିଥାଏ । ତା' ବୋଲି ପଶୁକୁ ଆମେ କଦାପି ବିଦ୍ୱାନ୍ କହିବା ନାହିଁ । ସଂସାରରେ ଆଜି ପଶୁବୃତ୍ତିକୁହିଁ ମଣିଷବୃତ୍ତି କହିବାର ହାଓଆ ବହୁଛି । ହାଟ ବଜାରରେ ମଣିଷ ଆଜି ପଶୁପରି କିଣାବିକା ହେଉଛି । ଶରୀରକୁ ଭୋଗବୃତ୍ତି ଦ୍ୱାରା ବଞ୍ଚାଇ ରଖିବାର କୌଶଳକୁ ହିଁ ବିଦ୍ୟା ବୋଲି କୁହାଯାଉଛି । ଯିଏ ଏହି କୌଶଳଟା ଆୟତ୍ତ କରିନେଉଛି, ସେଇ ଏ ସଂସାରରେ ସବୁରି ସ୍ୱୀକାର ପାଉଛି । ଅପରର ସ୍ୱୀକାର ପାଇବାକୁ ଆମେ ବିଦ୍ୟାଲାଭ କହିବା ନାହିଁ । ଶିବର ସାଧନାଲାଗି ଆମେ ବିଦ୍ୟାଲାଭ କରିବା । ଜଗତଯାକରେ ଆଜି ନାନା ଅଶିବର ଭିଡ଼ ଲାଗିଛି । ତାହାରି ଫଳରେ ନାନା ପ୍ରକାର ଦାରିଦ୍ର୍ୟ ମଣିଷକୁ ଆଜି ବଡ଼ ବିକଳ କରି ରଖିଛି । ନାନାପ୍ରକାର ବିକାର ମଣିଷର ସଂସାରକୁ ନାନା ପ୍ରକାରେ ଆଚ୍ଛନ୍ନ କରିପକାଇଛି । ମଣିଷ ଏ ପର୍ଯ୍ୟନ୍ତ ଆପଣାର ବିରାଟ ରୂପର ପରିଚୟ ପାଇନାହିଁ । ସେଥିଲାଗି ନାନାମତେ କ୍ଷୁଦ୍ର ହୋଇ ବସିବାର ବିକଟରୂପ ସେ ଧାରଣ କରିଛି । ଏ ଦୁଃଖୀ ସଂସାରରେ ବିଦ୍ୟାର୍ଥୀର ଦାୟିତ୍ୱ ଅନେକ ବେଶୀ । ତାହାରି ହାତରେ ଆରୋଗ୍ୟର ଚାବି ରହିଛି । ତାହାରି ମନକୁ ସେ ତାହାରି ବିଦ୍ୟାପରି ବଡ଼ କରି ପାରିଲେ ଜଗତକୁ ଅନେକ ପରିମାଣରେ ରୋଗମୁକ୍ତ କରିପାରିବ ; କିନ୍ତୁ ଡରିଡରି ହୋଇ ହାଟ ଭିତରେ ଆପଣାକୁ ବିକି ବାହାରିଲେ, ଆମେ ଏ ଦାୟିତ୍ୱ ତୁଲାଇ ପାରିବା ନାହିଁ । ଆମର ଅନୁଷ୍ଠାନର ଜନ୍ମଦିନ ପାଖେଇ ଆସୁଛି । ଏହି ଉପଲକ୍ଷରେ ଆପଣାକୁ ନେଇ ନାନା ବିଚାର ଆମ ମନ ଭିତରେ ଆସୁଥିବ । ନାନା ପ୍ରକାର ଶୁଦ୍ଧି ଓ ସଂକଳ୍ପର କଳ୍ପନା ଆମ ଭିତରେ ଶକ୍ତି ଭରାଇ ଦେଇ ଯାଉଥିବ ଏତିକି ବେଳେ ଶିବ-ସାଧନାର ବିଚାର ଆମେ କରିବା । ଆମର ବିଦ୍ୟା ଜଗତ ଲାଗି କେବଳ କଲ୍ୟାଣକର ହେଉ, ଜୀବନ ଲାଗି କେବଳ କଲ୍ୟାଣକର ହେଉ, ମଣିଷ ଲାଗି କେବଳ କଲ୍ୟାଣକର ହେଉ ! ଆମର ଜୀବନ ସାଧନା ଅମର ; କିନ୍ତୁ ଅର୍ଜିତ ବିଦ୍ୟା ଆମର ନୁହେଁ । ତାହା ସବୁ-ମଣିଷର ମଙ୍ଗଳ ଲାଗି ଉଦ୍ଦିଷ୍ଟ ହୋଇପାରିଲେ ହିଁ ଆମ ବିଦ୍ୟା ସାର୍ଥକ ହେବ । ଆଜି-ସବୁ ଅହଙ୍କାର ଓ ପ୍ରଲୋଭନର ବାଧା ଅପସାରି ଦେଇ ଶିବ-ସାଧନାର ସଂକଳ୍ପ ଆମକୁ ସଂଚାଳିତ କରି ନେଉ ।

୨୪।୮।୫୭

ଅଉ ଦୁଇ ଦିନ ଗଲେ ଆମ ବିଦ୍ୟାଳୟର ଦୁଇ ବରଷ ପୂରିଯିବ । ସେଥିଲାଗି ଆମେ ସମସ୍ତେ ଖୁସିରେ ଆୟୋଜନ ଲଗାଇ ଦେଲେଣି । ବାହାରର ଏ ଆୟୋଜନ ସଙ୍ଗତି ଭିତରେ ଆମର କେତେ ଦୂର ଆୟୋଜନ ଚାଲିଚି, ସେକଥା ଅବଶ୍ୟ ମୁଁ କହିପାରିବି ନାହିଁ । ତଥାପି ଭିତରେ ଯେ ଆୟୋଜନ ଚାଲିଚି, ବାହାରୁ ମଧ୍ୟ ତା'ର ସୂଚନା ମିଳିଲାଣି । ଏ ଉତ୍ସବ ପାଳନ କରିବାର ଆଦେଶ ଆମକୁ କେହି ଦେଇନାହିଁ । କାହାରି ଫରମାସରେ ଆମେ ସଜାସଜର ନାନା କାମରେ ମାତି ନାହୁଁ । ଏ ଦୁର୍ଭାଗ୍ୟ ଦେଶରେ ଆନନ୍ଦଟା ବି ଫରମାସ ଅନୁସାରେ ହୁଏ । ଉପର ହାକିମ ତଳ ହାକିମକୁ ଫରମାସ ଦିଏ । ଶିକ୍ଷାବିଭାଗର ଅଫିସର ନିଶ୍ଚିହ୍ନ ଇସ୍କୁଲ ମାଷ୍ଟରଙ୍କୁ ଫରମାସ ଦିଏଁ । ଆମ ଏ ଦେଶର ଅଧିକା ଶ ମେଳା, ମଉଚ୍ଛବ, ପର୍ବପର୍ବାଣୀ ପ୍ରଧାନତଃ ଫରମାସ ଅନୁସାରେ ହେଉଚି; କୌଣସି ହାକିମଙ୍କର ଆଦେଶ ବା କୌଣସି ମନ୍ତ୍ରୀଙ୍କର ଖିଆଲ ମାନି ହେଉଚି । ତେଣୁ ଫରମାସର ତାଡ଼ନାରେ ଆନନ୍ଦ ମରିଯାଉଚି, ଆଜ୍ଞାପାଳନର ନୀରସ ରୁଟିନ୍‌ଟା ରହୁଚି । ବୃକ୍ଷରୋପଣ କରିବାର ଏକ ସରଳ ଅଥଚ ମହାନ୍ କାର୍ଯ୍ୟକ୍ରମରୁ ମଧ୍ୟ ରୁଟିନର ମରୁଭୂମି ପୂରାଇ ଆମେ ସବୁ ଆନନ୍ଦ କାଢ଼ି ନେଇଚୁ । ସେଥିଲାଗି ମହାଡ଼ମ୍ବରରେ ସବୁ ହେଉଚି, ଅଥଚ ଗଛଟିଏ ଲଗାଇବାର ସରଳ ଆନନ୍ଦ କେହି ପାଇପାରୁ ନାହାନ୍ତି । ସ୍ୱାଧୀନତା ଦିବସର ଦଶା ମଧ୍ୟ ସେଇଆ । ମହାପୁରୁଷମାନଙ୍କର ଜନ୍ମତିଥି ବା ଶ୍ରାଦ୍ଧଦିନ ପାଳନ କଲାବେଳକୁ ମଧ୍ୟ ସେଇଆ ।

ଆମର ଗୌରବ ଯେ ଏଠି କୌଣସି ଫରମାସ ତୁଲାଇବାକୁ ଆମେ କଷ୍ଟ କରୁନାହୁଁ । କାହାରି ଇଚ୍ଛା ପୂରଣ ତାମସା ଆମର ଏଠି ଚାଲିନାହିଁ । ଆମର ଖୁସିରେ ଆମେ ବିଦ୍ୟାଳୟର ଜନ୍ମଦିନ ପାଳନ କରିବାକୁ ଯାଉଚୁ । ଜଙ୍ଗଲର ତାଳପତ୍ର ଓ ଫୁଲରେ ଆମର ଘର ସଜାଉଚୁ । ଆମ ସୃଷ୍ଟିକାମୀ ମନର ପରଶ ଦେଇ ଏ ବନଭୂଇଁକୁ ସେଦିନ ଲାଗି ମନୋମତ ସଜାଇ ପାରିବାର ଆୟୋଜନ ଆମେ ଲଗାଇ ଦେଇଚୁ । କ୍ଷୁଦ୍ରଇଥିଲାଗି

ମୋର ବିଶ୍ୱାସ ହେଉଛି, ଛବିଶ ତାରିଖ ଗତ ହୋଇ ଗଲେ ମଧ୍ୟ ସେଇ ଗୋଟାଏ ଦିନରେ ଆମର ଖୁସି ସରିଯିବ ନାହିଁ । ଯୋଉଟି ଫରମାସ ପାଇ କାମ ହେଉଥାଏ, ସେଟି ଫରମାସର ଉପଲକ୍ଷଟି ଗତ ହୋଇଗଲେ ଖୁସିଟି ମଧ୍ୟ ଗତ ହୋଇଯାଏ । ପୁରୁଣା ମଣିଷ ତା'ର ପୁରୁଣା ଚରିତ୍ରଗତତାକୁ ନେଇ ପୁଣି ତାର ଜଂଜାଳ ଭିତରେ ଛନ୍ଦି ହୋଇଯାଏ । ଆମର ଆନନ୍ଦ ଗୋଟିଏ ଦିନରେ ସରିଗଲେ, ତାହା ଆମର ବଡ଼ ଦୁର୍ଭାଗ୍ୟ ହେଉଅଛି । ବିଦ୍ୟାର୍ଥୀ ପକ୍ଷରେ ଏ ଆନନ୍ଦକୁ ସ୍ୱାଭାବିକ ଆନନ୍ଦ କୁହାଯାଇ ପାରନ୍ତା ନାହିଁ । ନା—ଏ ଆନନ୍ଦ ସବୁଦିନର ହୋଇ ରହିବା ଦରକାର । ବିଦ୍ୟାଲାଭ ଓ ଜୀବନ-ବିକାଶର ଯେଉଁ ଧାରା ଏଠି ବର୍ଷଯାକ ଚାଲିଛି, ଛବିଶ ତାରିଖ ସେଇ ଧାରାର ଏକ ଅଂଶ ହୋଇ ରହିବା ଦରକାର । ବରଷ ସାରାର ଆନନ୍ଦକୁ ଆମେ ଗୋଟିଏ ଦିନର ଉତ୍ସବରେ କେବଳ ସୂଚେଇ ଦେବାକୁ ଯାଉଛେ । ଆମ ଉତ୍ସବ ପାଳନର ରୀତି ଏହିପରି ହେବା ଉଚିତ ।

ଅନୁଷ୍ଠାନର ପୁଣି ଜନ୍ମଦିନ କ'ଣ ? ଅନୁଷ୍ଠାନ କ'ଣ ମଣିଷ ହୋଇଛି ? ଅନୁଷ୍ଠାନ କହିଲେ ଅନେକେ ଘରବାଡ଼ି ଓ ସାଧନ-ସାମଗ୍ରୀକୁ ବୁଝନ୍ତି । ବିଦ୍ୟାଳୟ କହିଲେ ଭୁଲରେ ଆମେ ବିଦ୍ୟାଳୟର ବହିପତ୍ର ଓ କୋଠରୀ ଗୁଡ଼ାକୁ ବୁଝାଇଥାଉ । ବିଦ୍ୟାଳୟ କହିଲେ ମୁଁ କିନ୍ତୁ ବିଦ୍ୟାର୍ଥୀ-ପରିବାର ବ୍ୟତୀତ ଆଉ କିଛି ବୁଝିପାରେ ନାହିଁ । ଛାତ୍ର ଓ ଶିକ୍ଷକ ଉଭୟଙ୍କୁ ମୁଁ ବିଦ୍ୟାର୍ଥୀ ବୋଲି ଗଣନା କରେ । ତେଣୁ ବିଦ୍ୟାଳୟର ଜନ୍ମଦିନ ଅର୍ଥ ଆମ ସମସ୍ତଙ୍କର ଜନ୍ମଦିନ - ସମସ୍ତଙ୍କ ସାଧନାର ଜନ୍ମଦିନ—ଜୀବନ-ବିକାଶର ଜନ୍ମଦିନ । ସେହି ମର୍ମରେ ଆମେ ଛବିଶି ତାରିଖକୁ ଗ୍ରହଣ କରିବା; ସେହି କଥା ମନନ କରୁ କରୁ ଆମେ ପ୍ରତ୍ୟେକ କାର୍ଯ୍ୟକ୍ରମରେ ସେଦିନ ଭାଗ ନେବା; ସେ ଦିନର ହସଖୁସିରେ ଏତିକ ବିଶ୍ୱର ଆମେ ମିଶାଇ ରଖିବା । ତା'ହେଲେ ଆମର 'ହସଖୁସି' ସାରା ବରଷ ସ୍ଥାୟୀ ହୋଇ ପାରିବ; ସାରା ବରଷ ଆମେ ସତେଜ ରହିପାରିବା । ପରିବାରରେ ଯେଉଁ ଦିନ ଯାହାର ଜନ୍ମଦିନ ପାଳନ କରାଯାଏ, ସେଦିନ ତାହାକୁ କେନ୍ଦ୍ର କରି କେତେ ଆନନ୍ଦ ଓ ଉତ୍ସବର

ଉପଗ୍ରହ ରହିଯାଏ । ତାକୁ ଯେଉଁମାନେ ଭଲପାଆନ୍ତି, ସେମାନେ ସମସ୍ତେ ତାକୁ ଆଶୀର୍ବାଦ କରନ୍ତି; ସମସ୍ତେ ତାହାର ମଙ୍ଗଳ କାମନା କରନ୍ତି । ଆମ ପ୍ରିୟ ବିଦ୍ୟାଳୟକୁ କେନ୍ଦ୍ର କରି ଆମେ ତାର ଜନ୍ମଦିନ ପାଳନ କରିବାକୁ ଯାଉଛେ । କିନ୍ତୁ କାହାର ଆମେ ମଙ୍ଗଳ ମନାସିବା ? ଏଠି କାହାକୁ ଆମେ ଭଲପାଉ ? ଆରବର୍ଷ ଏଠି ଖାଲି ଗୁଡ଼ାଏ ଘର ଥିଲା । ଏ ବର୍ଷ କେତେ ବଖରା ପକାଘର ହେଲାଣି; ତେଣୁ ଏ ବର୍ଷ ହଇରାଣ କମ ହେବାକୁ ପଡ଼ିବ । ଏଇଥିପାଇଁ କ'ଣ ଆମେ ବିଦ୍ୟାଳୟକୁ ଭଲପାଉଛୁ ? ନା ଆମକୁ ନେଇ ଏ ବିଦ୍ୟାଳୟ । ତେଣୁ ଆମେ ଆମକୁ ଯଥାର୍ଥଭାବରେ ଭଲ ପାଇପାରିଲେ ଯାଇ ଏ ବିଦ୍ୟାଳୟ ପ୍ରତି ଆମର ଶ୍ରଦ୍ଧା ସାର୍ଥକ ହେବ; ଆମ ସହିତ ଲାଗିଥିବା ବିଦ୍ୟାଳୟର ଡୋରଟି ଆହୁରି ଦୃଢ଼ ହେବ; ଆମେ ଆମର ଜୀବନକୁ ଭଲପାଇବା; ଆମର ଆଦର୍ଶକୁ ଭଲପାଇବା । ଆଦର୍ଶ ଉଦ୍ଦେଶ୍ୟରେ ଆମର ବାଟ ଚାଲିବାକୁ ଭଲ ପାଇବା; ଆମର ବାସନା, ସାଧନା ଓ ସ୍ୱପ୍ନକୁ ଆମେ ଭଲ ପାଇବା—ତେବେ ଯାଇ ଏ ବିଦ୍ୟାଳୟକୁ ଆମେ ଭଲପାଇ ଶିଖିବା । ଆମକୁ ନେଇହିଁ ଏ ବିଦ୍ୟାଳୟର ମଙ୍ଗଳ ହେବ । ତେଣୁ ଆଜିଭଳି ତାରିଖ ଦିନ ଆମେ ଆମର ମଙ୍ଗଳ କାମନା କରିବା—ଆମର ଜୀବନ, ଆମର ସାଧନାକୁ ଆମର ବିଦ୍ୟା ଆହୁରି ନିର୍ମଳ ଓ ଉଦାର କରିବାକୁ ଆମେ ସେଦିନ ଭଗବାନଙ୍କଠାରେ ପ୍ରାର୍ଥନା କରିବା । ଆମର ହୃଦୟର ଦୁଆର ଖୋଲିବା ସଙ୍ଗେ ସଙ୍ଗେ ଏ ବିଦ୍ୟାଳୟର ଦୁଆର ଖୋଲିବ । ଆମର ମନର ବଳ ବଢ଼ିବା ସଙ୍ଗେ ସଙ୍ଗେ ଏ ବିଦ୍ୟାଳୟର ବଳ ବଢ଼ିବ । ଆମେ ଆମର ଜୀବନରେ ଜୟଲାଭ କରି ପାରିଲେ ଏ ବିଦ୍ୟାଳୟ ମଧ୍ୟ ଦିନେ ଜଗତରେ ଜୟଲାଭ କରି ପାରିବ । ଏହାର ବାଟରୁ ଯାବତୀୟ ବାଧା ଅପସରି ଯିବ ।

ସେତିକି ଆମର ଭୁଲ ରହିଯାଉଛି ବୋଲି ମୁଁ ଭାବୁଛି । ଆମେ କେହି ଏ ବିଦ୍ୟାଳୟକୁ ଯଥାର୍ଥ ଆପଣାର ବୋଲି ଭାବୁନାହୁଁ । ଶିକ୍ଷକ ଏହାକୁ ଅତିରିକ୍ତଭାବରେ ନିଜର ସମ୍ପତ୍ତି କରି ପକାଉଛନ୍ତି ! ଆଉ ଛାତ୍ର ଏଠି ବିଦେଶୀ ପରି ରହିଯାଉଛନ୍ତି । ଫଳରେ କ୍ଷମତାର ଅଙ୍କୁଶରେ ଜୋର କରି

ଧନ ରଖିବାର ଲୋଭରେ ପଡ଼ି ଶିକ୍ଷକ ପ୍ରମତ୍ତ ହୋଇ ପଡ଼ୁଚନ୍ତି, ବାଟ ଭୁଲୁଚନ୍ତି । ଆପଣାର ଧନକୁ ଚିହ୍ନି ନ ପାରି ଛାତ୍ରଗଣ ମଧ୍ୟ ଏଠି ଉଦାସ ହୋଇ ରହି ଯାଉଚନ୍ତି । ସେମାନେ ମଧ୍ୟ ବାଟ ଭୁଲୁଚନ୍ତି । ଏ ବିଦ୍ୟାଳୟ ଶିକ୍ଷକ ଓ ଶିକ୍ଷାର୍ଥୀ ଉଭୟଙ୍କର । ଉଭୟଙ୍କର ଏହାର ଭାଗ୍ୟନିର୍ମାଣରେ ସମାନ ଭାଗ ରହିଚି । ଦୁଇ ଦିନ ପରେ ଏତେ ଖୁସିର ପର୍ବ ଉପଲକ୍ଷରେ ନେଇ ଯେଉଁ ବିଦ୍ୟାଳୟର ଜନ୍ମତିଥି ପାଳିବାକୁ ଆମେ ବାହାରିଚେ, ସେହି ବିଦ୍ୟାଳୟର ଜଣେ ବିଦ୍ୟାର୍ଥୀ ହିସାବରେ ମୁଁ ଅତି ବିନୟରେ ସମସ୍ତଙ୍କୁ କହିବି—ଆମେ ଏ ସ୍ଥାନକୁ ଆଉ ଚାରି ବରଷର ଗୋଟିଏ ଧର୍ମଶାଳା ବୋଲି ଭାବିବା ନାହିଁ । ଆମେ ଏହାକୁ ଭଲ ପାଇବା; ଆପଣାର ଘର ବୋଲି ମନେ କରିବା । ତା'ହେଲେ ଏଠିକାର ଖରାପ ଜଳବାୟୁ ଓ ଏଠିକାର ଅନ୍ୟାନ୍ୟ ନାନା ଅସୁବିଧାକୁ ଆମେ ପାର ହୋଇ ଚାଲିଯିବା । ଏ ବିଦ୍ୟାଳୟ ସହିତ ଆମେ ଡୋରି ବାନ୍ଧିଦେବା, ଏ ବିଦ୍ୟାଳୟର ଆଦର ଓ ଯତ୍ନ ପାଖରେ ଆମେ ଖୁସି ହୋଇ ଆସି ଧରା ଦେବା; ଏଠିକାର କାର୍ଯ୍ୟକ୍ରମକୁ ସରସ ଓ ପ୍ରାଣବନ୍ତ କରି ରଖିବା । ସଭ୍ୟ ମଣିଷ ଆଜି ନାନା ପ୍ରକାରେ ବିକାରଗ୍ରସ୍ତ ହୋଇ ଟିକିଏ ଆନନ୍ଦ ପାଇବାଲାଗି ଘର ଛାଡ଼ି ନାନା ସ୍ଥାନରେ ଉପଭୋଗ ଖୋଜି ବୁଲୁଚି । ଘରକୁ ଆସିବାର ଡରରୁ ରକ୍ଷା ପାଇବାକୁ ସେ ସର୍କସ, ସିନେମା ଓ କାଫେ (cafe)ରେ ବସି ସମୟ କାଟିଦେଉଚି । ଏ ଘର ଛାଡ଼ି ଯିବାର ନିର୍ବୋଧତା ଯେପରି ଆମର କେବେ ନ ହୁଏ । ଅନ୍ୟ ଅନୁରକ୍ତି ବା ଉପଭୋଗ-ଲାଳସାରେ ପଡ଼ି କେବେ ଯେପରି ଆମେ ଏ ଘରର ହତାଦର ନ କରୁ; ଏ ବର୍ଷର ଜନ୍ମଦିନରେ ବାରବାର ଏହି ପ୍ରାର୍ଥନା ମୁଁ ଭଗବାନଙ୍କୁ ଜଣାଉଚି । ଏଠି ପକ୍କା ଘରର ସଂଖ୍ୟା ନ ବଢ଼ୁ ପଛକେ, ଆମେ ସମସ୍ତେ ଏହି ବିଦ୍ୟାଳୟକୁ ଆପଣାର ଘର ବୋଲି ଗ୍ରହଣ କରିବା । ଆପଣା ଘରେ ରହିଲାପରି ଏଠି ମଧ୍ୟ ଆମେ ନିର୍ଭୟ ଓ ମୁକ୍ତ ହୋଇ ରହିବା ।

———

୨୫।୮।୫୭

'ଆମରା ପାଖେର ଜାତ,
ହେଁଟେ ଚଲାର ଖୁଓ ଜାନନା ଉଡ଼େ ଚଲାର ଜାତ ।'

ବଙ୍ଗଳାର ବାଉଲମାନଙ୍କର ଏହି ଗୀତ ପଦଟିରେ ଆଜି ମନ ମଜ୍ଜି-ଯାଇଛି । କାଲି ଏ ବିଦ୍ୟାଳୟର ଜନ୍ମ-ଉତ୍ସବର କୋଲାହଳ ଭିତରେ ଆମେ ଯେପରି ଛନ୍ଦ ହୋଇ ରହି ନ ଯାଉଁ । ବିଦ୍ୟାର୍ଥୀଙ୍କୁ ଏକ ଆକାଶଗାମୀ ପକ୍ଷୀ ହିସାବରେ ବେଶ୍ କଳ୍ପନା କରାଯାଇ ପାରିବ । ଉଡ଼ିବାହିଁ ବିଦ୍ୟାର୍ଥୀର ପରମ ଧର୍ମ । ମନର ଡ଼ାଆରେ ବସି ଜ୍ଞାନ, କର୍ମ ଓ ଭକ୍ତିର ଆକାଶମାର୍ଗରେ ଆତ୍ମ-ଆବିଷ୍କାର କରିପିବାରେ ହିଁ ବିଦ୍ୟାର୍ଥୀ ଅପାର ଆନନ୍ଦ ପାଇବ । ତାର ଆକାଙ୍କ୍ଷା ତାକୁ ଏକ ସ୍ୱର୍ଗୀୟ ଅନୁଭୂତିର ଆଲୋଡ଼ନରେ ଆଗକୁ ଆଗକୁ ଉଡ଼ାଇ ନେବ । ବାଉଲମାନେ ଆପଣାକୁ ଏହି ବିସ୍ତୃତ ଉଡ଼ିଯାଉଥିବା ପକ୍ଷୀ-ଜାତିର ବୋଲି କହନ୍ତି । ଆକାଶର ଅଶେଷ ପଥଭ୍ରମଣରେହିଁ ସେମାନେ ଜୀବନର ଶ୍ରେଷ୍ଠ ଆନନ୍ଦ ପାଆନ୍ତି । ଅଜ୍ଞାତ ଭବିଷ୍ୟତ ଓ ଅପରିଚିତ ପଥ ସେମାନଙ୍କୁ ଭୟ ଦେଖାଇପାରେ ନାହିଁ, ବରଂ ସେମାନଙ୍କୁ ଆହୁରି ଆକୃଷ୍ଟ କରି ନେଇଯାଏ ।

ଭୋଗ ମଣିଷକୁ ବସାଇଦିଏ । ମଣିଷ ଭିତରେ ରହି ଉଡ଼ି ବୁଲିବାର ସ୍ୱପ୍ନ ଦେଖୁଥିବା ଚଢ଼େଇର ଡେଣା ସେ କାଟିଦିଏ । ତେଣୁ ଆଦର୍ଶ ମଣିଷ ଆଗ ଭୋଗକୁ କାଟି ଗୁଳିପିବାକୁ ଆପଣାର ବ୍ରତ ବୋଲି ଗ୍ରହଣ କରେ । ଦୁଇହଜାର ବର୍ଷ ତଳେ ଏହିପରି ଉଡ଼ିପିବାକୁ ବାଞ୍ଛା ହୋଇ ରାଜକୁମାର ଗୌତମ ଭୋଗର ସବୁ ବନ୍ଧନ କାଟି ଯାଇଥିଲେ । ଯୁଗେ ଯୁଗେ ଏମିତି କେତେ ମହାପୁରୁଷ ଭୋଗକୁ କାଟି ଉଡ଼ି ପଳାଇଛନ୍ତି; କେତେ ନିଜ ଭିତରର ଚଢ଼େଇଟି ଲାଗି ବାଟ ଦେଖାଇ କରିଛନ୍ତି; ଅନ୍ଧ-ଅନ୍ଧାରରେ ପଥରେ ବାହାରି ପଡ଼ିଛନ୍ତି । ସାରା ସଂସାରର ସମସ୍ତ ବନ୍ଧନ କାଟି ଖାଲି ଏହି ଏକାକୀ ଉଡ଼ିପିବା ଉପରେ ସେମାନେ ଅଟଳ ବିଶ୍ୱାସ ରଖିଛନ୍ତି । ଅମର

ଚେତଣା ଉପରେ ଆମେ ବିଶ୍ୱାସ ରଖିବା ତ ଦୂରର କଥା, ଆମ ଭିତରେ ଏପରି ଗୋଟାଏ ଚଢ଼େଇ ଅଛି ବୋଲି ହୁଏତ ଆମେ ଏପର୍ଯ୍ୟନ୍ତ ଅନୁଭବ କରି-ନାହୁଁ । ଆମ ଭିତରେ ଏତେ ବାସନା ଓ ଆକାଙ୍କ୍ଷା ଡେଣାଟିଏ ହୋଇ ଆମର ଆଦେଶକୁ ଅପେକ୍ଷା କରି ରହିଛି ବୋଲି ଆମେ ହୁଏତ ବୁଝିହିଁ ପାରିନାହୁଁ । ଆମ ଶରୀରଟା ଆମର ସମସ୍ତ ଜୀବନ ଆବୋରି ବସିଛି । ଭୋଗ ଆମର ମନକୁ ବେଶ୍ ବଜ୍ରକବାଟ ଦେଇ କିଲି ରଖିଛି । ସେଥିଲାଗି ଉଡ଼ି-ଯିବାର ବିଶ୍ୱାସ ଓ ଶକ୍ତି ଥାଇ ମଧ୍ୟ ଆମେ ଶୋଇ ରହିବାର ଅଭିନୟ କରୁଛୁ । ଆପଣାର ଅସଲ ପରିଚୟକୁ ଆମେ ନାନାପ୍ରକାର ନିର୍ବୋଧତା ଦ୍ୱାରା ଘୋଡ଼ାଇ ପକାଉଛୁ ।

'ମାନୁଷ ଜବ ଉଡ଼ିଚଲତେ କହତେ ମାରଗମାହିଁ, ଦାଦୁ ପହୁଞ୍ଚେ ପଥଚଲ କହେଁ ସୋ ମାରଗ ନାହିଁ'—ସନ୍ଥ ଦାଦୁ ତାଙ୍କର ଗୋଟିଏ ପଦରେ କହିଛନ୍ତି;— ଯେତେବେଳେ ମଣିଷ ଉଡ଼ିଚାଲେ, ସେତେବେଳେ ସେ କହେ ମୁଁ ରାସ୍ତାରେ ଯାଉଛି; ଅର୍ଥ—ବାଟଭୋଇ ହୋଇ ସାଧନା-ମାର୍ଗରେ ଚାଲିଛି । ଯିଏ କହେ ମୁଁ ପହଞ୍ଚିଗଲିଣି, ମୋରି ବାଟରେ ଅନ୍ୟମାନେ ବି ଚାଲିଆସ, ସେ ନିଜେ ବି କେବେ ରାସ୍ତା ଦେଖିନାହିଁ । ଯିଏ ଉଡ଼ିଚାଲିଛି, ଯିଏ ପହଞ୍ଚି ନାହିଁ, ଅଥଚ ପହଞ୍ଚିବାର ବ୍ୟାକୁଳତା ଯାହାକୁ ସତତ ଆଗେଇ ନେଇଯାଉଛି, ସେଇହିଁ ଯଥାର୍ଥରେ ଚାଲିଛି । ତା'ର ଫୁଲଟି ଦିନକୁ ଦିନ ପାଖୁଡ଼ା ପାଖୁଡ଼ା କରି ଫୁଟି ଚାଲୁଛି; ତା'ର ଜୀବନର ଦ୍ୱାର ପ୍ରତ୍ୟେକ ଦିନ ଖୋଲୁଛି; ପ୍ରତ୍ୟେକ ଦିନ ସେ ବଞ୍ଚିବାର ନୂଆ ନୂଆ ଅର୍ଥ ପାଉଛି; ନୂଆ ନୂଆ ରସ ଚାଖୁଛି । ବିଦ୍ୟାର୍ଥୀର ବାଟ ଠିକ ଏମିତି ହେବା ଉଚିତ । ତା'ର ଜୀବନରେ ଆବିଷ୍କାରର ଅନ୍ତ ନାହିଁ, କି ଅନୁସନ୍ଧାନର ଅନ୍ତ ନାହିଁ; ପାଇଲିଣି ବୋଲି କହି ବସିଯିବାର ଭ୍ରମ ନାହିଁ, କି ବାଟ ସରିଲା ବୋଲି କହି ବିଶ୍ରାମ ନେବାର ଭ୍ରମ ନାହିଁ । ଜ୍ଞାନ ମଣିଷକୁ ଏହିପରି ମତ୍ତ କରି ରଖିବା ଉଚିତ; ଜୀବନ ମଣିଷକୁ ଏହିପରି ଅନୁରକ୍ତ କରି ରଖିବା ଉଚିତ । ଆମର ଜଗତରେ ବିଦ୍ୟାର୍ଥୀ କୋଟିକେ ଜଣେ ଅଛନ୍ତି; କିନ୍ତୁ ବିଦ୍ୟା ହାସଲ ହୋଇଗଲା ବୋଲି ଦମ୍ଭ କରିବାର ଭଣ୍ଡ ଅନେକ ଅଛନ୍ତି । ସେମାନେ କିଣ

ପାଇଥାନ୍ତି, କେତେ ବାଟ ଗୁଲିଥାନ୍ତି, ସେକଥା କେବଳ ସେହିମାନେ ଜାଣନ୍ତି; କିନ୍ତୁ ବାଟ ସରିଗଲା ବୋଲି କହି ସେମାନେ ଭାରି ଗୌରବ କରନ୍ତି । ଅନ୍ୟମାନଙ୍କୁ ରାସ୍ତା ଦେଖାଇବାର ଏକ ଅସ୍ୱାଭାବିକ ଆଗ୍ରହ ନେଇ ସେମାନେ ସଂସାରଟାକୁ ବ୍ୟସ୍ତ କରି ରଖନ୍ତି । ଅନ୍ୟଙ୍କୁ ତାରିବାର ଉତ୍ତେଜନାରେ ସେମାନେ ସଂସାରଟାକୁ ସନ୍ତପ୍ତ କରିପକାନ୍ତି । କିନ୍ତୁ ହାୟ, ସଂସାର ସେମାନଙ୍କ ଦ୍ୱାରା ଆଦୌ ଉପକୃତ ହୋଇପାରେ ନାହିଁ । ଆପଣାର ବାଟ ଚାଲିବାରେ ମଣିଷ ସେମାନଙ୍କଠାରୁ କୌଣସି ସାହାଯ୍ୟ ପାଏ ନାହିଁ । ଯେଉଁ ଶିକ୍ଷକ ଶୁଭଚନ୍ଦ୍ରକର ଭେଳା ଧରି ଅଗାଧ ଅଜ୍ଞାନସାଗରରୁ ଶିକ୍ଷାର୍ଥୀମାନଙ୍କୁ କେବଳ ଉଦ୍ଧାର କରିନେବାର ଭ୍ରମ କରି ଶିକ୍ଷାଳୟକୁ ଆସେ, ସେ କେବଳ ଅମଙ୍ଗଳହିଁ କରେ । ତାର ଅଭାଗା ଛାତ୍ରମାନଙ୍କୁ ସେ ଗୋଟିଏ ହୋଲି କଣ୍ଟା ମାଡ଼ିବାକୁ ଦିଏ ନାହିଁ; ବିନ୍ଦୁଏ ହେଲେ ଲୁହ ଗଡ଼ାଇବାକୁ ଦିଏ ନାହିଁ । ଆପଣାର ଦେଖା ପଥରେ ସେ ସମସ୍ତଙ୍କୁ ଅଡ଼ାଇ ନେବାର ଦୁର୍ବୁଦ୍ଧି ଦେଖାଏ । କିନ୍ତୁ ସେ ବାଟ ବାଟ ନୁହେଁ—ଆତ୍ମ-ଆବିଷ୍କାରର ବାଟ ହିଁ ହେଉଛି ପ୍ରକୃତ ବାଟ । ଯିଏ ଏପର୍ଯ୍ୟନ୍ତ ଆକାଶମାର୍ଗରେ ଉଡ଼ିବୁଲୁଛି, ଆପଣାର ସନ୍ଧାନରେ ବାହାରି ଏପର୍ଯ୍ୟନ୍ତ ଯିଏ କ୍ଳାନ୍ତ ହୋଇ ପଡ଼ିନାହିଁ, କାତଗ୍ରନ୍ଥ ହୋଇ ପଡ଼ିନାହିଁ, ସେହି ଏ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ର ହୋଇ ଆସୁ । ସେହି ଏ ବିଦ୍ୟାଳୟର ସବୁଠାରୁ ଅଧିକ ମଙ୍ଗଳ କରିବ । ସଂସାରରେ ଆଜି ସବୁଠାରେ ମଣିଷର ଡେଣା କାଟିଦେବାର ତାମସା ଲାଗିଛି । ସବୁଠି ନାନାପ୍ରକାର ଶାରୀରିକ ଓ ମାନସିକ ଚର୍ବ୍ୟ ଚୋଷ୍ୟରେ ମଣିଷକୁ ପୋଷି ମନାଇବାର ଦୁରାଗ୍ରହ ଲାଗିଛି । ରୁଷିଆ, ଆମେରିକାଠୁଁ ଆରମ୍ଭ କରି ଏ କାଙ୍ଗାଳ ଭାରତବର୍ଷରେ ମଧ୍ୟ ଅହଙ୍କାରୀ ପଣ୍ଡିତ ଆପଣାର ପାଠକୁ ସଭିଙ୍କର ମୁହଁ ଦେଇ ମୁଖସ୍ଥ କରି ରଖିବାର ଷଡ଼ଯନ୍ତ୍ର ଲଗାଇ ଦେଇଛି । ନାନା ନୂଆ ଲେବଲ ଓ ନୂଆ ଦାଗ ଦେଇ ସେ ସେହି ପୁରୁଣା ଔଷଧଟାକୁ ସମସ୍ତଙ୍କୁ ଖୁଆଇବାର ସୁଆଙ୍ଗ ଲଗାଇଛି । ଆମେ ସେ ସୁଆଙ୍ଗରେ ଭଳିଯିବା ନାହିଁ । ଆମେ ଆପଣାର ଦ୍ରୋହୀ ହେବାଲାଗି ପଣ୍ଡିତର ଏ ସହଜ ବଟୀକୁ ଗିଳିବା ନାହିଁ ।

ଆମ ଜଙ୍ଗଲରୁ ଆମେ ଏହି ଶିକ୍ଷା ଶିଖିରଖିବା । ଜଙ୍ଗଲରେ କେହି କାହାରି ପର ହେବାର ଅପଚେଷ୍ଟା କରୁ ନାହିଁ । ମାଳୀର କରୁଣା ଏଠି କାହାର ଶାଖାପ୍ରଶାଖା କାଟି ଦେଉ ନାହିଁ । ମାଟିରୁ ରସ ନେଇ ଆଲୁଅ ଓ ପବନର ସୋହାଗ ଭିତରେ ଠିକ୍ ଆପଣା ପରି ବିକଶିତ ହେବାର ସୁଯୋଗ ଏଠି ସମସ୍ତେ ପାଉଛନ୍ତି । ଆମ ବନ-ବିଦ୍ୟାଳୟରେ ଆମେ ସେହି ଗୀତ ଚଳାଇବା । ଆମେ କେହି କାହାରି ସମାନ ହେବାଲାଗି ଚେଷ୍ଟା କରିବା ନାହିଁ; କାହାରିକୁ ଆପଣାର ବାଟରେ ଚଳାଇ ନେବାର ଦମ୍ଭ କରିବା ନାହିଁ । କୌଣସି ନିର୍ଦ୍ଦିଷ୍ଟ ଗୁଣରେ ଢାଳ ହେବାର ଭୟ ଏଠି କାହାରିକୁ କୌଣସି ପ୍ରକାରେ ସଙ୍କୁଚିତ କରିଦେବ ନାହିଁ । କୌଣସି ଗୋଟାଏ ମାର୍ଗକୁ ସବୁରି ପରମଗତି ବୋଲି ପ୍ରଚାର କରିବାର ଦୁର୍ଗତି ଏଠି କାହାରି ହେବ ନାହିଁ । ଆମର ଧର୍ମପକ୍ଷୀର ଧର୍ମ ହେବ ଏହି ରକ୍ତମାଂସର ଉଷ୍ମ ପେଶୀତଳେ ନିରତ ଆକୁଳ ହୋଇ ରହିବା; ଆମ ଡେଣାକୁ ଆମେ ଚିହ୍ନି ରଖିବା; ଆମର ଆକାଂକ୍ଷା ଓ ଅଭିଳାଷକୁ ଆମେ ଚିହ୍ନିବା; ଆପଣାର ବାଟ ଆମେ ଆପେ ଫିଟାଇବା । ଏଠି ଆମେ ସମସ୍ତେ ବାଟୋଇ ବନିଯିବା । କଥାରେ ବଳାତ୍କାର କରି ଆମେ କେହି ଆମ ତଥାକଥିତ ଆଦର୍ଶକୁ ପ୍ରଚାର କରିବାର ଭୁଲ କରିବା ନାହିଁ । ଆମର ଜୀବନ ଆମ ଆଦର୍ଶର ପ୍ରଚାର କରିବ । ଯେତିକି ଆମେ ନିର୍ଭୟ ହେବା, ଯେତିକି ଆମେ ଶୁଦ୍ଧ ହୋଇ ନିଜର କର୍ତ୍ତବ୍ୟ କରିଯିବା, ସେତିକି ଆମେ ଅନ୍ୟ ଲାଗି ବାଟ ଚାଲିବାର ପ୍ରେରଣା ଯୋଗାଇପାରିବା । ଏକ ବାଟୋଇର ଧର୍ମରେ ଏଠି ଶିକ୍ଷକ ଓ ଛାତ୍ର ଉଭୟେ ଏକତ୍ର ହେବେ । ପରିପୂର୍ଣ୍ଣତାର ପଥିକ ହେବାର ସାଧନାହିଁ ଏଠିକାର ବିଦ୍ୟା-ସାଧନାର ପ୍ରଥମ ମନ୍ତ୍ର ହୋଇ ରହିବ ।

ଆଜି ଆମ ଦେଶରେ ଯୁବକକୁ ବୁଢ଼ା କରିଦେବାର ବହୁ ପ୍ରଲୋଭନ ଦେଖାଯାଉଚି । କେଉଁଠି ଅତିରିକ୍ତ ଉପଭୋଗରେ ଯୁବକ ବୁଢ଼ା ହୋଇ-ଯାଉଚି; କେଉଁଠି କେଉଁ ଖଣ୍ଡ ଆଦର୍ଶର ସାନ୍ତ୍ୱନାରେ ଯୁବକ ବୁଢ଼ା-ହୋଇଯାଉଚି; କେଉଁଠି ଭେକ, ବାନା ଆଉ ବକ୍ତୃତାର ନୂଆ ବାଣମାନ

ମରି ହୋଇ ଯୁବକକୁ ବୁଢ଼ା କରିଦେବାର ଅପଚେଷ୍ଟା ହେଉଛି । ଆମେ ବୁଢ଼ା ହେବାକୁ ନାସ୍ତି କରିଦେବା । ଆମର ଆପଣା ବାଟରେ ଆମେ ଝୁଣ୍ଟି ପଡ଼ି ମରିବା • ପଛକେ, ବୁଢ଼ା ହେବାର ପ୍ରମାଦ ଭିତରକୁ କଦାପି ଯିବା ନାହିଁ । ଆମର ବିଶ୍ୱାସ ଓ ବିଦ୍ୟା ଏ ସଂସାରର ବୁଢ଼ାକୁ ମଧ୍ୟ ଯୁବକ ହେବାର ପ୍ରେରଣା ଦେବ ।

---

କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କଦ୍ୱାରା ମୁଦ୍ରିତ । ୧୯୬୧